# ଗଳ୍ପ ସମୁଦ୍ର

( ପ୍ରଥମ ଭାଗ )

ସମ୍ପାଦନା -

ଡ଼ଃ ଉପେନ୍ଦ୍ର ପ୍ରସାଦ ନାୟକ

ଶତାବ୍ଦୀ ପ୍ରକାଶନୀ

ଭୁବନେଶ୍ୱର

ଗଳ୍ପ ସମୁଦ୍ର

( ପ୍ରଥମ ଭାଗ )

ସମ୍ପାଦନା :

ଡ଼ାଃ ଉପେନ୍ଦ୍ର ପ୍ରସାଦ୍ ନାୟକ

ପ୍ରକାଶକ :

ଶତଦ୍ରୁ ପ୍ରକାଶନୀ

ୟୁନିଟ୍-୯ ଫ୍ଲାଟ୍, ଭୁବନେଶ୍ୱର

ପ୍ରଥମ ପ୍ରକାଶ :

୧୯୮୫

ପ୍ରଚ୍ଛଦ :

ଉଦୟ ଜେନା

ମୁଦ୍ରଣ :

ପ୍ରକାଶ ପ୍ରିଣ୍ଟିଙ୍ଗ୍ ୱାର୍କସ୍

ଭୁବନେଶ୍ୱର-୫

ମୂଲ୍ୟ : ତିରିଶି ଟଙ୍କା ମାତ୍ର

**GALPA SAMUDRA**

( First Part )

Edited by :

**Dr. Upendra Prasad Nayak.**

Published by :

**Satadru Prakashani**

**Unit-IX Flat,**

**Bhubaneswar**

First Edition

**1985**

Cover Artist

**Udaya Jena**

Printing

Prakash Printing Works

Bhubaneswar-5

Price

**Rupees Thirty only**

# ଉପୋଦ୍‌ଘାତ

ସାହିତ୍ୟର ସମାରୋହରେ ଗଳ୍ପର ସ୍ଥିତି ଯେପରି ଚମତ୍କାର ସେହିପରି ଚେତନଶୀଳ । ସମ୍ବେଦନର ତୀକ୍ଷ୍ଣ ଓ ସ୍ୱଳ୍ପ ପରିସର ମଧ୍ୟରେ ବିଶାଳତାର ଅବଧାରଣା ଗଳ୍ପର ବିଷୟଗତ ବୈଶିଷ୍ଟ୍ୟ । ଅବଧାରିତ ବିନ୍ଦୁରେ ସମଗ୍ର ବୃତ୍ତ ପରି ମୌଳିକ ଭିତ୍ତିରେ ବିସ୍ତୃତିର ଅବଧାରଣ ଗଳ୍ପର ସ୍ୱାତନ୍ତ୍ର୍ୟ । ଭିତ୍ତିର ନିର୍ଦ୍ଦେଶନରେ, ସାହିତ୍ୟର ଅନ୍ୟାନ୍ୟ ବିଭବ ପରି, ଗଳ୍ପର ପ୍ରସାରଣ ମଧ୍ୟ ଅନ୍ତିମ ଅନୁରଣନ । ଏ ସମସ୍ତ ବିବେଚନାରେ ଗଳ୍ପର ମୁହୂର୍ତ୍ତମାନ ମହାକାଳର ହୃତ୍‌ସ୍ପନ୍ଦନ ଭଳି ପ୍ରତିଟି କ୍ରମ, ଅନୁକ୍ରମ ସୃଷ୍ଟି କରେ ଓ ସେ ସବୁକୁ ସଞ୍ଚାଳିତ କରେ । ପ୍ରାରମ୍ଭଠାରୁ ପରିସମାପ୍ତି ପର୍ଯ୍ୟନ୍ତ ଏହି ସଞ୍ଚାଳନ ଅବ୍ୟାହତ ରହିଲେ ସୃଷ୍ଟି ସାର୍ଥକ ହୁଏ ।

ଅବ୍ୟାହତ ଗତିର ଧାରା ସୃଷ୍ଟି କରିବାର ସାମର୍ଥ୍ୟ ସାଧନାସାପେକ୍ଷ । ଚିନ୍ତା, ଚେତନାର ପ୍ରସାରଣ ଓ ପରିକ୍ରମଣ ସମ୍ବନ୍ଧରେ ସ୍ରଷ୍ଟାର ବୋଧ ସ୍ପଷ୍ଟ ନ ହେଲେ ଘଟଣାର ଉପାଦାନ ପରିବେଶ ସମ୍ପୃକ୍ତ ହୁଏ ନାହିଁ । ତେଣୁ ଘଟଣାକୁ ଗତିଶୀଳ କରିବା କିମ୍ବା ଗତିର କ୍ରମ ଓ ଅନୁକ୍ରମ ରକ୍ଷା କରିବା ମଧ୍ୟ ଯଥାର୍ଥ ହୁଏ ନାହିଁ । ସେହି କାରଣରୁ ବହୁ ସ୍ଥଳରେ ଘଟଣାଗତ ଚରିତ୍ର ବା ବୈଚିତ୍ର୍ୟ ଘଟଣାର ବିନ୍ୟାସ ସଫଳ ଭାବେ ପ୍ରତିପାଦିତ ହୋଇପାରେ ନାହିଁ । ଅନେକ କ୍ଷେତ୍ରରେ ଅଗଭୀର ଚିନ୍ତା ଓ ସହିତତାହୀନ ଅନୁରଣନରୁ ଉଦ୍‌ଭଟ କଳ୍ପନା ପ୍ରକାଶ ପାଏ । ମାତ୍ର ଏ ସବୁ ଅତ୍ୟନ୍ତ କ୍ଷୀଣସ୍ଥାୟୀ ଏବଂ ପ୍ରତ୍ୟୟହୀନ ।

ବହୁ ପ୍ରକାର ସ୍ୱାଦର ଗଳ୍ପ କଥା ସାହିତ୍ୟ ପରିସରକୁ ସମୃଦ୍ଧ କରିଛି । ବହୁ ଭାଷା ବିଭିନ୍ନ ସଂସ୍କୃତିକୁ ସ୍ୱୀକାର କରି ମାନବୀୟ ବିଶ୍ୱର ସ୍ଥିତି ବିସ୍ତୃତ ହୋଇଛି । ଭାଷା ଏବଂ ସଂସ୍କୃତି ମଧ୍ୟ ଦେଇ ସୃଷ୍ଟି ହେଉଥିବା ରୁଚି ହିଁ ଚଳଣୀର ମୌଳିକ ବିସ୍ତାରକୁ ପ୍ରଭାବିତ କରିଛି । ତେବେ ଏ ବିସ୍ତାର ଜୀବନର ସାମଗ୍ରିକ ଦୃଷ୍ଟିରୁ ଉଦ୍‌ଭାବିତ ହେଲେ ଯଥାର୍ଥ ହୁଏ । ଜୀବନକୁ ଦେଖିବାରେ ପରିଚ୍ଛନ୍ନ ଦୃଷ୍ଟି, ଅନୁଭବ କରିବାରେ ଅନାବିଳ ହୃଦୟ, ମନନ କ୍ରମରେ ଅନାହତ ମାନସ ପାଇଁ ଯେ ଦର୍ଶନ ଉପାଦାନ ସ୍ୱୀକୃତ ହେଉଛି ସାହିତ୍ୟ ଏବଂ ଗଳ୍ପ ତାହାର ଏକ ଶାଖା ଭାବେ ସେ ସମସ୍ତର ସୃଜନାତ୍ମକ ପ୍ରକାଶ । ସ୍ୱୀକାର କରିବାକୁ ହେବ, ଏହାର ସ୍ଥିତିଗତ ସମ୍ପ୍ରତି ଜୀବନ ବୋଧୀ ଭାରତୀୟ ସାହିତ୍ୟରେ ଅନ୍ୟ ଭାଷାର ଗଳ୍ପ ବୈଚିତ୍ର

କଦ୍ବର୍ଯ୍ୟକୋଟୀଲୁ ଉନ୍ନୀତ ହୋଇଛନ୍ତି ଓଡ଼ିଆରେ ବହୁ ଗଳ୍ପ ଯେ ବିଶ୍ୱର ସର୍ବଶ୍ରେଷ୍ଠ ସମକକ୍ଷ ।

ଫକୀରମୋହନଙ୍କ ଠାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ବହୁ ଲବ୍ଧ ପ୍ରତିଷ୍ଠ ଗାଳ୍ପିକଙ୍କର ରଚନା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ପ୍ରବୀଣମାନଙ୍କ ପୃଷ୍ଠଭାଗରେ ଯେଉଁ ଯୁବସ୍ରଷ୍ଟାମାନେ ପଦଗ୍ରହଣ କରୁଛନ୍ତି ସେମାନେ ସାଧନାନିଷ୍ଠ ହେଲେ ଅଗମ୍ୟ ଅତିକ୍ରମ କରିବା ପାଇଁ ଯେ ପଥାନ୍ୱେଷୀ ହେବେ ଏ ପ୍ରତ୍ୟୟ ପ୍ରତ୍ୟେକ ସୃଜନଶୀଳ ସାହିତ୍ୟିକର ରହିବା ସ୍ୱାଭାବିକ । ସେହି ପ୍ରତ୍ୟୟରେ ପ୍ରଣୋଦିତ ହୋଇ ମୁଁ ଏହି ସଂକଳନ ପାଇଁ ପଦକ୍ଷେପ ନେଲି । ଏଥିରେ ପ୍ରତିଷ୍ଠିତ ପ୍ରବୀଣମାନଙ୍କର ସୃଷ୍ଟି ସହିତ କେତେକ ଯୁବ ଗାଳ୍ପିକଙ୍କର ରଚନାର ସମାବେଶ ହୋଇଛି । ପ୍ରକାର, ରୁଚି, ଦୃଷ୍ଟିକୋଣର ଭିନ୍ନତା ପାଠକମାନଙ୍କ ପାଇଁ ଚିନ୍ତାର ଉପାଦାନ ଯୋଗାଇବାରେ ଏ ସଂକଳନ କେତେକ ପରିମାଣରେ ଯେ ସଫଳ ହେବ ଏଥିରେ ସନ୍ଦେହ ନାହିଁ ।

ପରନ୍ତୁ ଉକ୍ତ ସଂକଳନରେ ବୟସ କ୍ରମରେ ଅଥବା ପ୍ରତିଷ୍ଠିତ/ଅର୍ଦ୍ଧ-ପ୍ରତିଷ୍ଠିତ ବା ଅପ୍ରତିଷ୍ଠିତ କ୍ରମରେ ସଂଯୋଜିତ କରିବାର ପଦକ୍ଷେପ ନେଇନାହିଁ । ବରଂ ତରୁଣମାନଙ୍କୁ ସାରସ୍ୱତ ସାଧନାରେ ଅଧିକ ଉତ୍ସାହିତ କରିବା ପାଇଁ ଏକା ମଞ୍ଚରେ ପାଖାପାଖି ଛିଡ଼ା କରିଦେବାକୁ ଆଦୌ କୁଣ୍ଠା ପ୍ରକାଶ କରିନାହିଁ । ସମୁଦ୍ରରେ ଶ୍ରେଷ୍ଠ ବଡ଼ ସବୁ ନଈ ମିଶି ଏକାକାର ହୋଇଗଲା ପରି ଏ 'ଗଳ୍ପ ସମୁଦ୍ର'ରେ ପ୍ରବୀଣ ତରୁଣ ନିର୍ବିଶେଷରେ ସମସ୍ତଙ୍କର ଗଳ୍ପ ସନ୍ନିବେଶିତ ହୋଇ ପାରିଛି ଏବଂ ଏ ସଂକଳନ ଯେଉଁ ସ୍ରଷ୍ଟାମାନଙ୍କ ସୃଷ୍ଟିରେ ସମୃଦ୍ଧ ସେମାନଙ୍କୁ ସର୍ବପ୍ରଥମେ ମୋର ଅନ୍ତରର କୃତଜ୍ଞତା ଜ୍ଞାପନ କରୁଛି ।

ଏତଦ୍‌ବ୍ୟତୀତ ଏ ସଂକଳନ ପ୍ରକାଶ ଦିଗରେ ମୋର ପ୍ରିୟତମ ସାହିତ୍ୟିକ ବନ୍ଧୁମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ସାତକଡ଼ି ହୋତା, ଦୁର୍ଗା ଚରଣ କୁଅଁର, ବିନୋଦ ବିହାରୀ ପଲାଇ ଓ ବିପିନ ବିହାରୀ ଖମାରୀ ଆଦିଙ୍କର ଅକୁଣ୍ଠ ସାହାଯ୍ୟ-ସହଯୋଗ ତଥା ନିଷ୍ପୃହ ଜୀବନରେ ଭୁଲିବାର ନୁହେଁ । ଆଜିର ଏ ସଂକଳନ ପ୍ରକାଶ ଅବସରରେ ସେମାନଙ୍କୁ ମୋର ଅନ୍ତରର ସାଧୁବାଦ ଜଣାଉଛି ।

ଏ ସଂକଳନ ଓଡ଼ିଆ କଥା ସାହିତ୍ୟ ଭଣ୍ଡାରକୁ ଅଣୁମାତ୍ର ଯୋଗ ଦେଇଛି ବୋଲି ବିବେଚିତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

**ଉପେନ୍ଦ୍ର ପ୍ରସାଦ ନାୟକ**

ତା ୩୧-୧୦-୮୪

# ଯାହାଙ୍କ ସୃଷ୍ଟିରେ ଏ ସଂକଳନର ପୃଷ୍ଠା ସମୃଦ୍ଧ



## ପ୍ରଥମ ଭାଗର ଦ୍ୱିତୀୟ ପାହାଚ

●

# ଭିନେ ଲୋକ



## ଗୋପୀନାଥ ମହାନ୍ତି

ଗୋଟି ଗୋଟି ଘର, ଧାଡ଼ି ଧାଡ଼ି ଘର, ମେଞ୍ଚା ମେଞ୍ଚା ଘର । ସେ-ବାଟେ ଯାଉ ଯାଉ କେତେ ଦିନେ ଭାବିଥିଲି, ସତେ ଅବା ପ୍ରତି ଘର ଗୋଟିଏ ଗୋଟିଏ ମଣିଷ । ବୁଲି ବାହାରିଲେ ଏମିତି ଗୋଟିଏ ଲେଖାଁ ଚିନ୍ତା ଖଣ୍ଡେ ବାଟ ପେଲି ନିଏ । ନହେଲେ ଖାଲି ମନ ହାଲୁ ହାଲୁ କରେ, ଆସେ ଆଉ କିଛି ଚିନ୍ତା, ବେଶିଥର ବ୍ୟକ୍ତିଗତ, ସେଇ ନୁହେଁ ସାଫଲ୍ୟର କି ଅନ୍ୟ କେଉଁ ସୁଖର । ତେଣୁ ବୋଧହୁଏ ମୋ ମୁହଁରେ ଖର ଧାସ ପଡ଼େ ନାହିଁ । ଖାଲି ଗ୍ରଇଚଳିଆ ଗଣ୍ଡ, ତଳେ କେତେ ଚଳେ ଫଳର ଦହଲ । ଆଉ, ମୁଁ ଭାବେଁ । ତେଣୁ ବୋଧହୁଏ କେହି ମୋ ସଙ୍ଗେ ଗପିବାକୁ ଆଗ୍ରହ ଦେଖାନ୍ତି ନାହିଁ, କାହା ନିମନ୍ତ୍ରଣରେ ଗଲେବି ଦେଖିଛି ମୋ ·ଦିପାଖେ ଚୌକି ଖାଲି ହୋଇଯାଏ, ସେମାନେ ଉଠି ଚାଲିଯାନ୍ତି ଆଉ କାହା ସଙ୍ଗେ ଗପିବେ ବୋଲି । ବୃତ୍ତିଟିଏ ମୋର ଅଛି, ଛକ ଉପରେ ମଝଲା ହୋଟେଲ୍‌ଟିଏ, ଲୋକ ଅଛନ୍ତି ଚଳାନ୍ତି, ମୋ ବଖରାରେ ମୁଁ । ବସିଥାଏଁ ।

ଏତେଟିକୁ ମୁଁ ବୁଲିଯାଏଁ । ଏସବୁ ଘର ଭିତରୁ ଗୋଟାଏ ଖାଁ ଖାଁ ଜଳାଭୂଇଁ, ପାଣି, କାଦୁଅ, ଖରଧାସ, ଆଁଖିପାଏ ନାହିଁ ଲମ୍ବି ରହିଛି ଦିଗନ୍ତକୁ । ଏପଟକୁ କାହା ଗତାଗତ ଦେଖେ ନାହିଁ । ଆଉ ମୁଁ ଭାବୁଥାଏ, ଏ ପ୍ରତି ଘର ସତେ ଯେପରି ଜଣେ ଲେଖାଁ ମଣିଷ ।

କିନ୍ତୁ ମତେ କପରି ଜାଣିଲା ପରି ଲାଗୁଛି, କି ଶୁଣିଲାପରି ? ସେ ଏକା ଘରେ ଏକା ମଣିଷ ସବୁଦିନେ ନଥାଏ, ଥାଏ ଭିନେ ମଣିଷ । କାହିଁକି

ଲାଗୁଛି ? କିଏ କହିଲା ? ପ୍ରତି ଘର ଫାଟକରେ ଗୋଟିଏ ଲେଖାଁ ନାଁ ଫଳକ, ପଢ଼ୁଛି । ଲକ୍ଷ୍ୟ କରିଛି ବଦଳ ନାହିଁ । ବୋଧହୁଏ ନାଁ ସଙ୍ଗେ ଘରର କି ବାସିନ୍ଦାର କୌଣସି ସମ୍ବନ୍ଧ ନାହିଁ । କିନ୍ତୁ ସେପରି ବା କାହିଁକି ଭାବୁଛି ? ମୁଁ ତ ପଗ୍ଭରି ନାହିଁ । ପଗ୍ଭରିବାକୁ ଲାଜ ମାଡ଼େ । ମୁଁ ବି କାହାରିକି ଚିହ୍ନେ ନାହିଁ । ସତେ କଣ ଏଠି ଏକା ଘରେ ଆଉ ଜଣେ ଅନ୍ୟ କେବେ ଆଉ ଜଣେ ବାସିନ୍ଦା ? ଯେମିତି କେଉଁ ଅବାନ୍ତର ପ୍ରଶ୍ନ ହଠାତ୍ ଭାରି ଜରୁରୀ ଲାଗେ ଓ ମନକୁ ଯାବୁଡ଼ି ଧରେ, ଉତ୍ତର ନପାଇଲେ ଆଉ ଛାଡ଼େ ନାହିଁ । ସେମିତି ଥରେ ଏ ପ୍ରଶ୍ନ ମତେ ଘୋଟିଗଲା । ମୁଁ ଉତ୍ତର ଖୋଜିଲି । ସକାଳେ ସଞ୍ଜରେ ବେଳ ପାଇଲେ ସେ ବସ୍ତି ଆଡ଼େ ବୁଲିଗଲି, ଘର ଗୁଡ଼ିକୁ ଅନାଇଁ ଅନାଇଁ ତା ଆଗ ସଡ଼କରେ ବୁଲିଲି, କିନ୍ତୁ ଭିତରୁ କବାଟ ବନ୍ଦ, ଝରକା ବନ୍ଦ, କେହି ବାହାରନ୍ତି ନାହିଁ । ବାହାରିଲେବି ମତେ ଉତ୍ତର ଦେବ କିଏ ? ହୁଏତ ସେମାନେ ମୋ ଭାଷା ବୁଝି ପାରିବେ ନାହିଁ ଏ ସହରରେ ସେପରି ମୁଁ କେତେଥର ଅନୁଭବ କଲିଣି ।

ତଥାପି ମୁଁ ବୁଲୁଥାଏଁ । ଦିନେ ଉପରଓଳି, ୫ ନମ୍ବର ଘର ଆଗରେ ମୁଁ ଠିଆ ହେଲି, ଭିତରୁ କେହି ପୁରୁଷ ଗୀତ ଗାଉଥାନ୍ତି, ବୁଝି-ପାରୁ ନଥାଏଁ କିନ୍ତୁ ଭାରି ଭଲ ଶୁଭୁଥାଏ । ଅଳ୍ପ କେତେ ମିନଟ୍‌ରେ ସରିଲା । ତଥାପି ମୁଁ ଠିଆ ହୋଇଛି । ହସ ଶୁଭିଲା, ଆଉ ମନ ଖୁସିର ଆଉ କେତୋଟି ଶବ୍ଦ । ତାପରେ ଦୁମ୍ ଦୁମ୍ ଚାଲି । ହସି ହସି ହୃଷ୍ଟପୁଷ୍ଟ ଶ୍ୟାମଳ ଯୁବକ ଜଣେ ବାହାରିଲେ । ମୋ ଆଡ଼କୁ ଏଭଳି ମିଠା ମୁହଁ କରି ଅନାଇଁ ଦେଇଗଲେ ଯେ ତାଙ୍କ ଠାଣୀ ତାଙ୍କ ମୁହଁର ଭାବ ତାଙ୍କର ସେ ସ୍ନିଗ୍ଧ ଚାହାଣି ମୋର ଚେତନା ପଟରେ ସତେ ଅବା ଅନନ୍ତ ମୋହର ଛାପାମାରି ଦେଇଗଲା । ସେ ବାହାରି ଗଲେ । ମୁଁ ବିହ୍ୱଳ ହୋଇ ଠିଆ ହୋଇ ରହିଲି । ଯେପରି ମୁଁ ଗୋଟିଏ ଅଲୌକିକ ଦର୍ଶନ ପାଇଛି । ଯୌବନ, ଆଶା, ଉତ୍ସାହ, ଆନନ୍ଦ, ବିଶ୍ୱାସ, ଓ ସ୍ନେହ ସବୁ ଏକାଠି ହୋଇ ମୂର୍ତ୍ତିମାନ୍ ହୁଅନ୍ତେ ତେବେ ସେ ରୂପ ବୋଧହୁଏ ଏହିପରି ଦିଶନ୍ତା । ମୁଁ ଭାବିଲି । ତା ପରେ କେତେଥର ସେ ମୁହଁର ଛବି ମୋର ମନେ ପଡ଼ିଯାଇଛି, ଓ ମୋ ମନ ଭିତରେ ଲହଡ଼ି ଖେଳିଛି ଆନନ୍ଦର ପୁଲକ ।

ଆଜି କେତେଥର ସେହି ୫ ନମ୍ବର ଘର ସାମ୍ନାକୁ ଯାଇଛି । କାହାକୁ ଦେଖି ନାହିଁ ।

ମନର ସେ ଖିଆଲ୍ ପାଶୋରି ଯାଇଥିଲି । କେତେ ବର୍ଷ ପରେ ମନେ ପଡ଼ିଲା ଆଜି ଦିନେ । ଜଳାଭୂଇଁ ସେତେବେଳେ ବି ସେମିତି ଥାଏ । ଆଜି ସେ ଘର ଗୁଡ଼ିକ । ମତେ ଲାଗୁଥାଏ ସେମିତି ଥାଏ, ମୋ ହଷ୍ଟେଲ୍ ବି ସେମିତି, ମୁଁ ବି ସେମିତି । ହଷ୍ଟେଲ୍‌ର ଓ ମୋର କଣ ପରିବର୍ତ୍ତନ ହୋଇଥିବ ପରା, କିନ୍ତୁ ଯେଉଁ ଭୂଇଁରୁ ସବୁ ଉପୁଡ଼ି ପଡ଼ିବାହିଁ ସାଧାରଣ ପ୍ରବଣତା, ସେଠି ଏତେ କ୍ରିୟା ପ୍ରତିକ୍ରିୟା ଭିତରେ ମୁଁ ନ ଉପୁଡ଼ି ରହିଛି, ଘଟଣାର ସମତା ଚେତାଇବାକୁ ମୋ ପାଇଁ ଏତିକି ଯଥେଷ୍ଟ ବୋଲି ମୁଁ ଭାବୁଥାଏଁ ।

ସେହି ଅପରାହ୍ନ । ପାଞ୍ଚ ନମ୍ବର ଘର ଦୁଆର ମୁହଁ କବାଟ ଠିଆ ମେଲାଥାଏ । ସଡ଼କ ଧାଡ଼ରେ ଠିଆ ହୋଇଥାନ୍ତି ଜଣେ । ଦୂରରୁ ଲାଗିଲା ସେ ବୃଦ୍ଧ ବୋଧେ । ତାପରେ ଲାଗିଲା, ନା ତାଙ୍କ ଅଜା, ନା! ତାଙ୍କ ବାପା, ନା ତାଙ୍କର ଖୁବ୍ ବଡ଼ ଭାଇ କେହି ହୋଇଥିବେ, ତାପରେ ଲାଗିଲା, ସେ ସାଦୃଶ୍ୟ ବି ନାହିଁ, ଭିନେ ଲୋକ । ଜରା-ଜୀର୍ଣ୍ଣ କରୁଣ ବିକଳ ମୁହଁଟିଏ, ଆଖିରେ ଦୁଃଖଠୁଁ ବଳି, ନୈରାଶ୍ୟ, ନିଃସହାୟତା, ହାହାକାର, ସେ ଆଖି ମେଲା ଅଛି କିନ୍ତୁ ବାହାରର କିଛି ଦେଖୁନାହିଁ ପରା, ମତେ ଦେଖୁନାହିଁ । ସେ ମୁହଁକୁ ଥରେ ଚାହିଁ ଦେଲାକ୍ଷଣି ଛାତି ଭିତରେ ପଞ୍ଜରା ହାଡ଼ ଭିତରେ ହେମାଳ ପଶିଗଲା । ମୋ ତଣ୍ଟିକୁ କିଏ ଯାବୁଡ଼ି ଧରିଲା, ଦେହ ଉପରେ ଥରି ଉଠିଲା । ଲାଗିଲା ସତ, ସତ, ମୋ ନିଜ ଭିତର ବଦଳିଯାଇ ସେଇଠୁ ଉଠି ଆସୁଛି ମୂର୍ତ୍ତିମନ୍ତ ନିଷ୍ଠୁର ସତ । ସେ ଲୋକଟି ସତେ ଅବା ମୋ ଭିତରୁ ବାହାରୁଛି ।

"ନା କଦାପି ନୁହେଁ," ପଳେଇ ଯାଉ ଯାଉ ନିଜକୁ ନିଜେ ଟାଣି କରି କହିଲି, "ଘର ଏକା, ମଣିଷ ଭିନେ, ଏ ଘରେ ଭିନେ ଭିନେ ଲୋକ ରହନ୍ତି କିଏ କେତେବେଳେ," ଅସ୍ୱୀକାର ସାହସ ଦେଲା, ଚାଲିଲି ଖାଁ ଖାଁ ଝିଲ ଆଡ଼କୁ ।

---



# ମିଛୁ ଅବଧାନ
# ଦର୍ପଦଳନ ବିସମ୍ବାଦ

**ମହାପାତ୍ର ନୀଳମଣି ସାହୁ**

ବାଲ୍ୟକାଳରୁ ଆଜପର୍ଯ୍ୟନ୍ତ ମୋର ଏହି ଅଙ୍କ ବା ଗଣିତ ପାଠଟି ପ୍ରତି ମନ ଭିତରେ ମହାଆତଙ୍କ ଆଉ ଭୟ ରହି ଆସିଛି । ସଂଖ୍ୟା ବା ସେମାନଙ୍କ ଭିତରେ ଯୋଉ ସବୁ ଆଦାନପ୍ରଦାନ ଓ କାଣ୍ଡକାରଖାନା ମାନ ଚାଲେ, ମୋର ସାମାନ୍ୟ ମୁଣ୍ଡ ସେଥିରେ ଆଦୌ ପ୍ରବେଶ କରିପାରେ ନାହିଁ । ଏବଂ ଯଦିଓ ମୁଁ ଭଲଭାବେ ବୁଝି ସାରିଲଣି ଯେ ଏ ପୃଥିବୀ ଓ ଏ ଜୀବନ, ଯେତେ ପରିମାଣରେ କବିତା, ଗଳ୍ପ, ଦର୍ଶନ, କଳା, ସଂଗୀତ ବା ଧର୍ମରେ ନ ଚାଲୁଛି ତା'ଠାରୁ ଲକ୍ଷେ ଲକ୍ଷେ ଗୁଣରେ ଏହି ସାଂଖ୍ୟ ବା ଅଙ୍କ କଷାକଷରେ ଚାଲିଛି । ଏବଂ ଶତକଡା ଶହେ ଲୋକଙ୍କ ଜୀବନଧାରା ଏହି ଗାଣିତିକ ସାଧ ସାଧନା ଉପରେ ହିଁ ନିର୍ଭର କରୁଛି । ମୋର ନିଜ ଜୀବନ ମଧ୍ୟ ସେଥିରୁ ବହିର୍ଭୂତ ନୁହେଁ । ଖାଲି ସେତିକି ନୁହେଁ— ଆଧୁନିକ ଜ୍ଞାନ ବିଜ୍ଞାନର ସବୁ ବିଭାଗକୁ ବର୍ତ୍ତମାନ ଅଙ୍କ ହିଁ ଅଧିକାର କରି ସାରିଲଣି । ବର୍ତ୍ତମାନର ଦର୍ଶନ, ବ୍ୟାକରଣ, ଅର୍ଥନୀତି, ଶିଳ୍ପକଳା, ଏପରିକି ସଙ୍ଗୀତ, ସବୁ ବିଭାଗରେ ଅଙ୍କ ନ ହେଲେ ଚଳୁ ନାହିଁ । ପରିମାପ ଓ ପରି ସଂଖ୍ୟାନ ବିଦ୍ୟାରୂପେ ମଧ୍ୟ ଏହି ସାମ୍ରାଜ୍ୟବାଦୀ ଫାସିଷ୍ଟ ଗଣିତ ଶାସ୍ତ୍ର ଆମ ଜୀବନର ସବୁ ତତ୍ତ୍ୱ ଓ ତଥ୍ୟର ସୀମାଞ୍ଚଳକୁ ଅଧିକାର କରି ବସିଅଛି । କିନ୍ତୁ ମୋର ଦୁର୍ଭାଗ୍ୟକୁ ସେଇ ବାଲ୍ୟକାଳରୁହିଁ ମୁଁ ଏହି ମହାନ୍ ବିଦ୍ୟାଟି ପ୍ରତି ମନୋଯୋଗ ଦେଇ ପାରିଲି ନାହିଁ । କେବଳ ସାହିତ୍ୟ, ଧର୍ମ, ଦର୍ଶନ, ସଙ୍ଗୀତ ଇତ୍ୟାଦିକୁ ନେଇ ମାତିଲି । ଅବଶ୍ୟ ଅଙ୍କ ପ୍ରତି ମୋର ଏହି ଆତଙ୍କ ବା ବିରାଗ ପାଇଁ କେବଳ

ମୁଁ ଯେ ଦାୟୀ, ତାହା ଆଦୌ ନୁହେଁ । ମୋତେ ବାଲ୍ୟ କାଳରେ ପାଠ ପଢ଼ାଇଥିବା କେତେକ ନଷ୍ଟୁରଚିତ୍ତ ଅହଙ୍କାରୀ ପଣ୍ଡିତମନ୍ୟ ବେତଧାରୀ ଗଣିତ ଶିକ୍ଷକଙ୍କୁ ସେଥିପାଇଁ ନିଶ୍ଚୟ ବେଶୀ ଦାୟୀ । ସେମାନେ ଯେତେବେଳେ ମୋତେ ଏକ ଦୁଇ ଅଙ୍କ ଶିଖାଇଲେ, ତାହା ମୁଁ ଆରାମରେ ତଞ୍ଚଳ ଶିଖିଗଲି । ଏବଂ ସେମାନେ ଯେତେବେଳେ ମତେ କେବଳ ସଂଖ୍ୟା ଗୁଡ଼ିକର ମିଶାଣ ଶିଖାଇଲେ ତାହା ମଧ୍ୟ ମୁଁ ଚଟାପଟ ଶିଖିଗଲି । ମୋର ମନେ ଅଛି—ଉପରତଳ ହୋଇ ସଜ୍ଜିତ ରହିଥିବା ଚାରିଅଙ୍କ ବିଶିଷ୍ଟ ଏକ ଲମ୍ବ ଛଅସ୍ତରିଆ ମିଶାଣକୁ ମୁଁ ପ୍ରାୟ ଗୋଟିଏ ମିନଟରେ ନିର୍ଭୁଲ ଭାବେ ମିଶାଇ ଦେଇ ପାରୁଥିଲି । ସେତେବେଳ ପର୍ଯ୍ୟନ୍ତ ମୋର ଗାଣିତିକ ବୁଦ୍ଧି ଉପରେ କାହାର ସନ୍ଦେହ ନଥିଲା । ମାତ୍ର ଅସୁବିଧାଟି ଆସିଲା-ଫେଡ଼ାଣ ଓ ହରଣ ବେଳକୁ । ଗୁଣନଟି ମଧ୍ୟ ମୁଁ ଖୁବ୍ ଆରାମରେ କଷି ଦେଇ ପାରୁଥିଲି-ତାହା ଯେତେ ବଡ଼ ଗୁଣନ ହେଉ । କିନ୍ତୁ ଅସୁବିଧାଟି ହେଲା ୯୫୩୪ ରୁ ୮୬୭୯ ସଂଖ୍ୟାଟିକୁ ଫେଡ଼ିଲା ବେଳେ । ଚାରିରୁ ନଅକୁ ଫେଡ଼ିଲା ବେଳେ ତା ପୂର୍ବ ସଂଖ୍ୟାମାନଙ୍କରୁ କୋଉଠୁ ଠାଏ ଦଶ ଆଣି, ତାକୁ ଚାରିରେ ମିଶାଇ, ପୁଣି ସେଥିରୁ ନଅକୁ ଫେଡ଼ି, ଫେଡ଼ାଣ ଫଳଟିକୁ ତଳେ ଲେଖି, ଫେର୍ ଉପର ସଂଖ୍ୟା ଗୁଡ଼ିକ ଆଡ଼କୁ ଚାହିଁ ଭାବିଲା ବେଳକୁ ମୋର ମୁଣ୍ଡ ଗୋଳ-ମାଳ ହୋଇଯାଏ ଓ ମୁଁ କୋଉଠୁ ସେହି ଦଶ ସଂଖ୍ୟାଟି ଧାର ଆଣି ମୋର କାର୍ଯ୍ୟ ଚଳାଇଥିଲି--ଏବଂ ବର୍ତ୍ତମାନ ସେ ଧାରଟିକୁ ମୁଁ କୋଉ ସଂଖ୍ୟାକୁ ସୁଝିବି—ଏବଂ ତା' ଫଳରେ ଅନ୍ୟ ସଂଖ୍ୟା ମାନଙ୍କର ଅବସ୍ଥା କଣ ହେବ-ତାହା ଜାଣି ନପାରି ମୁଁ ହଡ଼ ବଡ଼େଇ ଯାଉଥିଲି ବେଳେ, ମୋର ନଷ୍ଟୁର ଚିତ୍ତ ଅହଙ୍କାରୀ ଧୈର୍ଯ୍ୟହୀନ ପଣ୍ଡିତମନ୍ୟ ଗଣିତ ଶିକ୍ଷକଙ୍କ ବେତ ପାହାର ସପାତ୍ ସପାତ୍ ମୋ ପିଠିରେ ବସିଯାଏ ଓ ମୂର୍ଖ, ଗଧ, ନିର୍ବୁଦ୍ଧିଆ ବି ବିଶେଷଣମାନ ମଧ୍ୟ ମୋ ଉପରେ ନିର୍ବିଘ୍ନରେ ବର୍ଷିଯାଏ । ସେତେବେଳେ ପୁଣି ମୋର ବାଲ୍ୟ ପ୍ରେମିକା ଛଅବର୍ଷ ବୟସ୍କା ଚାରୁଲତା ମୋ ପାଖରେ ବସି ସେହି ଫେଡ଼ାଣଟି ଠିକ୍ କରି ଦେଇ ମୋର ମାଡ଼ ଓ ଭର୍ତ୍ସନା ଶୁଣି ହସୁଥାଏ । ଏବଂ ମୋର ମୁଣ୍ଡ ଭିତରେ ମୋର ଆଖିର ଲୁହ ଜମା ହୋଇ ଯାଇ ମୋର ସମାନ୍ୟତମ ବୁଦ୍ଧି ବୃତ୍ତି ସେଥିରେ କୁଆଡ଼େ ଭାସିଯାଏ । ଆଖିର, ମୁଁ ଫେଡ଼ାଣ ବ୍ୟାପାରଟିକୁ ସେଇ ଦିନରୁ ଆଜି ପର୍ଯ୍ୟନ୍ତ ଭଲ

ଘବେ ଶିଖିପାରି ନାହିଁ । ସେହିପରି ହରଣ ଶିଖିଲା ବେଳେ ମଧ୍ୟ ହାଇରାଣ ହେଲି—ଓ ମାଡ଼ ଭର୍ତ୍ସନାହି ଭୋଗିଲି । ୩୮୭୯ କୁ ୨୫ ସଂଖ୍ୟାରେ ହରିବା ଠାରୁ ଭଳି ବିପଦ ଆଉ କଷ୍ଟ ସାଧ୍ୟ ବ୍ୟାପାର କିଛି ନାହିଁ । ପ୍ରଥମଟା ବିଶେଷ କିଛି ଅସୁବିଧା ନାହିଁ । ୨୫ ଦୁଇଣ ୫୦ ଟିବନ । ତେଣୁ ୨୫ କେ ୨୫ ବସାଇ କୌଣସି ପ୍ରକାରେ ୩୮ରୁ ଫେଡ଼ ଦେଲେ ସରଳ ଭାବେ ୧୩ ରହିଲା । କିନ୍ତୁ ତା'ପରେ ଯୋଉ ସବୁ କାଣ୍ଡ କାରଖାନା ଆରମ୍ଭ ହୋଇଯାଏ ଓ ଉପରୁ ତଳକୁ ସଂଖ୍ୟାମାନଙ୍କୁ ଓହ୍ଲାଇ ତାକୁ ପୁଣି ପଚିଶିରେ ହରି ଭାଗଫଳ ଓ ଭାଗଶେଷାହି କାଢ଼ି—ଉଃ—ଉଃ—ବାପାରେ ! ବାପାରେ ! ମୁଣ୍ଡର ଶିରା ସବୁ ଫାଟିଯିବା ବେଳକୁ ସେହି ନିଷ୍ଠୁରଚିତ୍ତ ଧୈର୍ଯ୍ୟହୀନ ଚଣ୍ଡିଚରଣଙ୍କ ଗଣିତ ଶିକ୍ଷକଙ୍କ ସପାତ୍ ସପାତ୍ ବେତ୍ରାଘାତ ଓ ଗର୍ଦ୍ଦଭ, ମୂର୍ଖ ନିବୁଦ୍ଧିଆ ବା ଅପମାନକର ବିଶେଷଣାଦିର ଭର୍ତ୍ସନା ଏବଂ ମୋର ବାଲ୍ୟ ପ୍ରେମିକା ଛଅବର୍ଷ ବୟସ୍କା ଗଣିତ ବିଦୁଷୀ ଓ ଆମ କ୍ଲାସର ଲୀଳାବତୀ ଗୁରୁଲତାର ଗର୍ବ ମିଶ୍ରିତ ମନ୍ଦମନ୍ଦ ହସ । ଉଃ କି ଜ୍ୱାଳା ଯନ୍ତ୍ରଣା ମୟ ନଥିଲା ମୋର ସେଦିନର ଅଙ୍କ କ୍ଲାସ ଗୁଡ଼ିକ ।

ତା'ଛଡ଼ା ପୁଣି ମୋର ମନରେ କେତେକ ନିଜସ୍ୱ ସନ୍ଦେହ ମଧ୍ୟ ରହିଥିଲା—ଯାହାକୁ କି ସେତେବେଳେ କେହି ବୁଝାଇ ଦେଇ ନଥିଲେ । ଯଥା—୫ଟା କାଠି ସଙ୍ଗେ ସାତୁଟା ବାଲିଗରଡ଼ା ମିଶିଲେ କେତେ ହେଲା ? ମୁଁ ଭାବେ କେତେ କଣ ହେଲା ? କେତେ କେମିତି ହେବ ? ପାଞ୍ଚଟା କାଠି ସଙ୍ଗେ ପାଞ୍ଚଟା ବାଲିଗରଡ଼ା ପୁଣି ମିଶିବେ କେମିତି ? ପାଞ୍ଚଟା ଛେଳି ସଙ୍ଗେ ଅବା ସାତୁଟା ମେଣ୍ଢା ମିଶି ମାଣି ପଡ଼ିଆରେ ଚରିପାରନ୍ତି ମାତ୍ର କାଠି ଗୁଡ଼ାକ ସଙ୍ଗେ ବାଲିଗରଡ଼ାମାନେ ମିଶିବେ କେମିତି ? କିନ୍ତୁ ଅଙ୍କ ମାଷ୍ଟ୍ରେ ଏମିତି ଅଖାଡୁଆ ପ୍ରଶ୍ନ ସବୁ ପଚାରୁ ଥିଲେ । ସେମିତି ପଚିଶିଟା କଦଳୀକୁ ପାଞ୍ଚଜଣଙ୍କ ଭିତରେ ବାଣ୍ଟିଦେଲେ ଜଣକୁ କେତେ ପଡ଼ିଲା ? ଏମିତି ପ୍ରଶ୍ନ ହେବ—କିନ୍ତୁ କଦଳୀର ଦେଖା ନଥିବ କି ସତକୁ ସତ କେଉଁ ଭାଗ୍ୟବାନ ମାନଙ୍କୁ ସେଗୁଡ଼ିକୁ ବଣ୍ଟାଯିବ—ବା ସେହି ବଣ୍ଟନ ଦାୟିତ୍ୱରେ ସଠିକ ଭାବେ କାହାକୁ ରଖାଯିବ ଓ ସେହି ବଣ୍ଟନକାରୀ ନିଜେ ସେଥିରୁ କଦଳୀଟିଏ ଖାଇ ପାରିବ କି ନାହିଁ—ସେ ସମ୍ବନ୍ଧେ ମୋ ମୁଣ୍ଡରେ ପ୍ରଶ୍ନମାନ ଖେଳୁଥିଲେ ବି ଅଙ୍କ ମାଷ୍ଟ୍ରେ ସେ ବିଷୟରେ ସମାନ୍ୟତମ ମଧ୍ୟ ସୂଚନା ଦେବେ ନାହିଁ ।

ଯାହା ଫଳରେକ ପାଞ୍ଚ ପଞ୍ଚା ପଚାଶି ମୋତେ ଜଣାଥିଲେ ମଧ୍ୟ ମୋ ମୁଣ୍ଡରେ ସେଇସବୁ ସମସ୍ୟା ଖେଳୁଥିବାରୁ ମୁଁ "ପାଞ୍ଚ୍ ଟା ଲେଖା ପଡ଼ିଲ" ବୋଲି କହିପାରେ ନାହିଁ ଓ ଅଙ୍କ ମାଷ୍ଟ୍ରଙ୍କ ଦିବ୍ୟ ଦୃଷ୍ଟିକ ଅନ୍ୟମନସ୍କ କମ୍ବା ନବ୍ ଦ୍ଧିଆ ବୋଲି ପ୍ରଶ୍ନିତ ହେବାରୁ ପିଠିରେ କମ୍ବା ଗାଲରେ କିଛି ଉତ୍ତମ ମଧ୍ୟମ ପାଇଯାଏ । ସେହିପରି କ୍ରମଶଃ ସଂଖ୍ୟା ଗୁଡ଼ିକ ଯେତେବେଳେ ବ୍ୟକ୍ତି ବିଶେଷ ବା ପ୍ରାଣୀମାନଙ୍କ ସଙ୍ଗେ ମିଶି ଅଦ୍ଭୁତ ଅପୌକ୍ତିକର ଓ ଜଟିଳ ଗାଣିତିକ ସମସ୍ୟାମାନ ସୃଷ୍ଟି କରନ୍ତି ସେତେବେଳେ ମଧ୍ୟ ମୋର ମୁଣ୍ଡ ଗୋଳ-ମାଳ ଧରିଯାଏ । ଧରିଯାଉ—ଗୋଟିଏ ଅଙ୍କ ପ୍ରଶ୍ନ ହେଲ—ରାମ ଯୋଉକାମକୁ ୭ ଦିନରେ କରିପାରିବ ଶ୍ୟାମ ଓ ହରି ମିଶି ସେ କାମକୁ ଦୁଇ ଦିନରେ କରି ପାରିବେ । ତା'ହେଲେ ଶ୍ୟାମ ଏକୁଟିଆ ସେ କାମକୁ କେତେ ଦିନରେ କରି ପାରିବ ? ମୁଁ ଅବଶ୍ୟ ପିଲାଦିନେ ବର୍ତ୍ତମାନ ଭଳି ନବ୍ ଦ୍ଧିଆ ଥିଲି । କିନ୍ତୁ ସେହି ଅଙ୍କ ପ୍ରଶ୍ନଟି ମୋ ମୁଣ୍ଡରେ ବହୁ ବୌଦ୍ଧିକ ସମସ୍ୟା ସୃଷ୍ଟି କରୁଥିଲା । ଯଥା—ପ୍ରଶ୍ନରେ ଥିବା ସେହି "କାମ"ଟି ପ୍ରକୃତରେ କୋଉ ପ୍ରକାର କାମ ? ଶାଗ ତୋଳିବା ଗୋଟିଏ କାମ—ଆମ୍ବ ଗୋଟାଇବା ମଧ୍ୟ ଗୋଟିଏ କାମ—ହଳ ବୁଲାଇବା ମଧ୍ୟ ଗୋଟିଏ କାମ—ମାଟି ଚକଟିବା ମଧ୍ୟ ତଦ୍ରୂପ ଏକ କାମ । ଏବଂ ଅଙ୍କ କଷିବା ମଧ୍ୟ ଗୋଟିଏ କାମ ତଲେ ଗଣାଯିବକ ନାହିଁ, ତାହା ଅଙ୍କ ମାଷ୍ଟ୍ରେ ତାଙ୍କ ପ୍ରଶ୍ନରେ ଉଲ୍ଲେଖ କରନ୍ତି ନାହିଁ । ସେହିପରି ରାମ, ଶ୍ୟାମ ଓ ହରି ଆଦି ମହାନ୍ କର୍ମୀମାନେ କିଏ ଓ ସେମାନଙ୍କର ସାଧାରଣ ସ୍ୱାସ୍ଥ୍ୟ, ଶକ୍ତି ଓ କର୍ମ ଦକ୍ଷତା ସହିତ ସେମାନଙ୍କର ପାରିବାରିକ ଜଞ୍ଜାଳାଦିର ବିବରଣୀ ମଧ୍ୟ ସେ ପ୍ରଶ୍ନରୁ ମିଳୁନାହିଁ । ଏବଂ ସର୍ବୋପରି ରାମଶ୍ୟାମ ଦାମ ନାମରେ ସତକୁ ସତ କେହି ବ୍ୟକ୍ତି ଅଛନ୍ତି କି ? ଓ କୋଉଠି ସେମାନେ ଥାନ୍ତି—ସେମାନେ ଡେଙ୍ଗା ନା ଗେଡ଼ା-ମୋଟା ଯୋଟା ନା ପତଳା ଧେଡେଙ୍ଗା-ଗୋରା ନା କାଳିଆ ଏବଂ ସେମାନେ ସେହି ପ୍ରଶ୍ନସ୍ଥିତ କାମଟିକୁ କାହିଁକି କରନ୍ତି—ଓ କରିସାରି କଣ ପାନ୍ତି—ଏସବୁ ପ୍ରଶ୍ନ ମଧ୍ୟ ମୋ ମୁଣ୍ଡ ଭିତରେ ସେତେବେଳେ ଖେଳୁଥାଏ ଓ ତେଣୁ ମୁଁ ପ୍ରଶ୍ନଟିର ଉତ୍ତର ଦେଇ ନପାରି ମାଡ଼ ଗାଳିଖାଏ ।

ତା'ପରେ କ୍ରମେ ମୁଁ ଯେମିତି ଆଉ ଟିକିଏ ବଡ଼ ହେଲି ଓ ମୋ ପାଇଁ ବିଧିବଦ୍ଧ ଭାବେ ଗୋଟିଏ ଗଣିତ ବହି ଆସିଲି ସେ ବହିଟିକୁ

ଦେଖିବା ମାତ୍ରେ ମୋ ମୁଣ୍ଡ ବିଗିଡ଼ିଗଲା । ଆମେ ସେତେବେଳେ ପଢ଼ିଥିବା କୌଣସି ବହି—ସାହିତ୍ୟ, ଭୂଗୋଳ, ଇତିହାସ କି ପ୍ରକୃତି ପାଠ—ସେହି ଗଣିତ ବହିଟି ପରି ଏମିତି ଭୟଙ୍କର ଦେଖାଯାଉ ନଥିଲା । ସବୁ ବହିରେ ଉଣା ଅଧିକେ ନାନା ବିଚିତ୍ର ଛବିମାନ ଥିଲା । ବିରାଡ଼ି, କୁକୁର, ପୁଷି ଦେଉଳ, ସାପ, ନେଉଳ, ପାହାଡ଼, ଗଛ, ଚଢ଼େଇ, ମାଛ, ତାଜମହଲ, ଗଣେଶ, ଚନ୍ଦ୍ର ସୂର୍ଯ୍ୟ, ମେଘ, ବାବର ଆକବର ଦଶରଥ, ଋଷି, ଏପରିକି ଇନ୍ଦ୍ର ବାୟୁ ପ୍ରଭୃତି ଦେବଗଣଙ୍କର ଛବିମାନଙ୍କରେ ସେ ବହି ଅତ୍ୟନ୍ତ ଆକର୍ଷଣୀୟ ଥିଲା । ମାତ୍ର ଏଇ ରୁକ୍ଷ ଗଣିତ ବହିଟିରେ ମୂଳରୁ ଶେଷ ପର୍ଯ୍ୟନ୍ତ ଖାଲି ଅଙ୍କ ପ୍ରଶ୍ନଛଡ଼ା ଆଉ କିଛି ଆଖିଦୃଶିଆ ଛବି ନଥିଲା । ତେବେ ବହୁ କଷ୍ଟରେ ମୁଁ ସେଥିରେ ଗୋଟିଏ ଘଣ୍ଟାର ଛବି ଆବିଷ୍କାର କରିଥିଲି । ସେ ଛବିଟାର ଦେହ ମଧ୍ୟ କାଳି ମଞ୍ଜି ମିଞ୍ଜି ହୋଇ ଯାଇଥିଲା—ମାତ୍ର ତା' ଭିତରେ ତିନିଟା କଣ୍ଟା ସ୍ପଷ୍ଟ ଭାବେ ୧୦ାରୁ ୧୨ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ସଂଖ୍ୟା ମାନଙ୍କ ଭିତରୁ କାହାକୁ ନା କାହାକୁ ନିର୍ଦ୍ଦେଶ କରୁଥିଲା । ଏବଂ ତା' ତଳେ ଅତି କଷ୍ଟକର ପ୍ରଶ୍ନମାନ ଲେଖା ଯାଇଥିଲା । ଯଥା—ଘଣ୍ଟାକଣ୍ଟା ଯେତେ-ବେଳେ ଦଶ ଉପରେ ଏବଂ ମିନିଟ କଣ୍ଟା ଯେତେବେଳେ ଦୁଇ ଉପରେ, ସେତେବେଳେ ଦଶଟା ବାଜି କେତେ ମିନିଟ ହୋଇଛି ? ଅଥବା ସେତେ-ବେଳେ ଏଗାରଟା ବାଜିବାକୁ ଆଉ କେତେ ମିନିଟ ବାକି ଅଛି ?

ସ୍ଥିତନୁ—ସେ ବହିଟାକୁ ଦେଖି ମୁଁ ଖୁବ୍ ବିଗିଡ଼ିଗଲି । ସେ ଶ୍ରେଣୀ ଲେଖକ ବା ପ୍ରକାଶକ·ପୁଣି ବହିଟାର ମଲାଟ ଉପରେ ମଧ୍ୟ ଗୋଟାଏ ଭଲ ଛବି ଦେଇ ନଥିଲା । ସାଧା ମଲାଟର ବହିଟା ଗୋଟେ ପିଚାଶୁଣୀ ଭଳିଆ ମୋ ଆଖିକୁ ଦିଶୁଥିଲା । ଚଣ୍ଡାଳଟା ବହି ଉପରେ ଗୋଟିଏ ସାମାନ୍ୟ ଛବି ମଧ୍ୟ ଦେଇ ପାରିଥାନ୍ତା—ଯୋଉଥିରେକି ପିଲାଟିଏ ସ୍ଲେଟରେ ହରଣଟିଏ କରୁଛି—ଓ ଗୋଟିଏ ପୁଷି ବିରାଡ଼ୀ ତା ପାଖରେ ଗୁମ୍‌ସୁମ୍ ହୋଇ ବସିଛି ଓ ତାର ସ୍ଲେଟ ଭଉଣୀଟି କେତୋଟି କାଠି ସଙ୍ଗେ କେତୋଟି ବାଲିଗରଡ଼ା ମିଶାଉଛି ଏବଂ ମିଶାଇ ନପାରି କାନ୍ଦୁଛି ? ମନେ ମନେ ଚିଡ଼ିକରି ଭାବୁଥାଏ —ସ୍କୁଲ, ପାଠଟା ଯେମିତି ପିଚାଶୁଣୀଆ, ମାଷ୍ଟ୍ରେ ସେମିତି ପିଚାଶୁଣୀଆ ଆଉ ଏ ବହିଟା ବି ସେମିତି ପିଚାଶୁଣୀଆ ।

ଏବଂ ସେହି ବର୍ଷଠାରୁ ଅଙ୍କ ଶିଖିଲା ବେଳେ ମୋ ମୁଣ୍ଡଟା ସମ୍ପୂର୍ଣ୍ଣ ଭାବେ ବିଗିଡ଼ିଗଲା । ଅଙ୍କଟିଏ କଷିବାକୁ ପଡ଼ିଲେ, ବା ମାଷ୍ଟରଙ୍କଟିଏ କଏ ପଗ୍ରୁ ଦେଲେ, ସେହିଦିନୁଁ ମୋର ଆଖିକ ଘୋର ଅନ୍ଧାର ଘୋଟି ଆସେ । ବିଶେଷତଃ ଏହି ମାନସାଙ୍କ ବିଷୟଟି ସବୁଠାରୁ ବଡ଼ ବିପଦ ଜନକ । କ୍ରମଶଃ ଅଙ୍କ ପ୍ରତି ମୋର ବିମୁଖତା ସେତିକି ବଢ଼ି ଗ୍ଭଲିଲା—କ୍ଲାସ୍‌ରେ, ସ୍କୁଲରେ, ଘରେ, ଏପରିକି ଗାଁରେ ମଧ୍ୟ ମୋର ମୋଟା ବୁଦ୍ଧିଆ ବା ନିର୍ବୁଦ୍ଧିଆ ଅପବାଦ ସେତିକି ସେତିକି ମୁଖେ ମୁଖେ ପ୍ରଚରିତ ହେବାକୁ ଲଗିଲା । ଆମ କ୍ଲାସ୍‌ରେ କୋଡ଼ିଏ ଜଣ ଛାତ୍ର ଛାତ୍ରୀଙ୍କ ଭିତରୁ ଆମେ ତିନିଜଣ ଛାତ୍ର ଗର୍ଦ୍ଦଭ ଆଖ୍ୟା ଓ ଉପାଧି ସର୍ବସମ୍ମତି କ୍ରମେ ପ୍ରାପ୍ତ ହେଲୁ । ମୋ ଛଡ଼ା ଅନ୍ୟ ଦୁଇଜଣ ହେଲେ ମାଧିଆ ବାରିକ, ତାକୁ ଆମେ ମାଧା ବୋଲି ଡାକୁଥିଲୁ—ଏବଂ ତାର ମାଧା ବା ମାଧିଆ ନାମ ସଙ୍ଗେ ଗଧା ବା ଗଧିଆ ଉପାଧିଟି ବେଶ୍ ଖାପିଯାଏ ଓ ଭଲ ଶୁଭେ । ଯଥା ଗଧା ମାଧିଆ ବା ଗଧିଆ ମାଧା । ଏବଂ ସେଥି ପ୍ରତି ତାର ମଧ୍ୟ କୌଣସି ଲଜ୍ୟା ବା ଅପମାନ ବୋଧ ନଥାଏ । ତାକୁ ସେମିତି ଡାକିଲେ ବା ତା' ପିଠିରେ ଦୁଇବିଧା ଥୋଇ ତାକୁ ସେଇ ନାମରେ ଡାକିଲେ ସେ ବରଂ ହସି ହସି ଗଡ଼ିଯାଏ । "ଧ" ଅନୁପ୍ରାସଟି ତା' କାନକୁ ବଡ଼ କୁତୁକୁତିଆ ଲଗେ । ( ଆହା ! ଥାଉ ଥାଉ ତା' ବିଷୟରେ ଆଉ କିଛି କହିବି ନାହିଁ । ତାକୁ କୁଷ୍ଠରୋଗ ହେଲା ଓ ସେ ଘା' ଘାଉଜା ହୋଇ ଗାଙ୍କ ବାରି ବାରଣ୍ଡାରେ ଛିଣ୍ଡା ହେଁସ ଓ କନାରେ ଶୋଇ ଶୋଇ ମାଛି ଡାଆଁସ ମଶା କାମୁଡ଼ା ଖାଇ ଖାଇ, ଦିନେ ମରିଗଲା । ଏବଂ ତାକୁ ତା' ଭାଇମାନେ ଟିଣେ କିରାସିନରେ ପୋଡ଼ି ଦେଲେ । )

ଆଉ ଗର୍ଦ୍ଦଭଟିର ନାଁ ହେଉଛି ଯୋବନୀ ଶେଣ । ସେ ଟୋକାଟା କାନ୍ଥ ସକୁ ସତ ଏତେ ନିର୍ବୁଦ୍ଧିଆ ନୁହେଁ । ବାଟି ଆଉ ଡାଗର ପୁଆ ଖେଳରେ ମଜା ଓସ୍ତାଦ୍ । ଡାଳ ମାଙ୍କୁଡ଼ୀ ଖେଳରେ ତାକୁ ମାଙ୍କଡ଼ ବି ପାରିବେ ନାହିଁ । ତା'ଛଡ଼ା, ତା'ଠାରେ ଚୋରକଳା ମଧ୍ୟ ଥିଲା । ଏବଂ ମିଛ କହିବାରେ ତା' ପାଟିରେ ବାଟୁଳୀ ବାଜିବ ନାହିଁ । ବେଳେ ବେଳେ ମାଉ ଫଉଜଦାରୀ ମଧ୍ୟ କରେ । ହେଡ୍ ପଣ୍ଡିତଙ୍କ ଟ୍ରଙ୍କ୍ ଫିଟାଇ ଟଙ୍କା ଚୋରି କରିବା ଠାରୁ ଆରମ୍ଭ କରି ଗୋବିନ୍ଦ ସେନାପତି ବାରି ନଡ଼ିଆ ଗଛରେ ରାତିରେ ଚଢ଼ି ନଡ଼ିଆ ପାରି ଆଣିବା ଯାଏ ସବୁ ଅସାଧ୍ୟ ପାପ କର୍ମମାନ କରି

ମଧ୍ୟ ସେ ଆପଣାର ଜାଲିଆତି ବୁଦ୍ଧି ବଳରେ ସବୁଠୁଁ ନିର୍ଦ୍ଦୋଷରେ ଖସି ଆସେ । ଅଥଚ ଏଇ ଅଙ୍କ କଷିଲା ବେଳକୁ ତାର ସେ ବିଚକ୍ଷଣ ବୁଦ୍ଧି ଆଦୌ କୁଳାଏ ନାହିଁ । ଗଣିତ ସାର୍‌ଙ୍କ ଠାରୁ ଗଧ ଗାଳିତ ଶୁଣେ—ବେତ ମାଡ଼ ମଧ୍ୟ ଖାଏ । କିନ୍ତୁ ଆଶ୍ଚର୍ଯ୍ୟ କଥା—ସେଥିପାଇଁ ମଧ୍ୟ ତାର କୌଣସି ଶୋଚନା ନଥିଲା । ତାକୁ କେହି ବୁଦ୍ଧିମାନ ବା ବୁଦ୍ଧିହୀନ କହିବା ଉପରେ —ବା ଘୋଡ଼ା କି ଗଧ କହିବା ଉପରେ ତାର କିଛି ଗୁରୁତ୍ୱ ନଥିଲା । ସେ ତାର ସ୍ୱେଚ୍ଛା ଫଜଳଦାସ୍ତ ଓ ମିଛ କହିବାର କ୍ଷମତାକୁ ନେଇ ଆନନ୍ଦରେ ଥାଏ ।

କିନ୍ତୁ ସବୁତକ ଶୋଚନା ମୋର । ସବୁତକ ଦୁଃଖ ମଧ୍ୟ ମୋର । ମାଡ଼ ଖାଇବା ପ୍ରତି ମୋର ସେତେ ଆପତ୍ତି ନଥିଲା— ( କାରଣ, ଆମେ ସେତେବେଳେ ଗୋଟିଏ ନୀତିବାକ୍ୟ ବାରମ୍ବାର ଶୁଣୁଥିଲୁ ଯେ ମାଡ଼ ଖାଇଲେ ପାଠ ଆସେ । ) ଏଇ ନିର୍ବୁଦ୍ଧିଆ ଓ ଗଧ ଉପାଧିଟି ପ୍ରତି ମୋର ମୋର ଖୁବ୍ ବ୍ୟଥା ବେଦନା ବୋଧ ରହୁଥିଲା । ମୁଁ ନିଜକୁ ଖୁବ୍ ଆହତ ଏବଂ ଅପମାନିତ ମନେ କରୁଥିଲି । ଦିନେ ଆମ ସେକେଣ୍ଡ ପଣ୍ଡିତେ ଅଙ୍କ ସାରଙ୍କ ଅନୁପସ୍ଥିତିରେ ଆମ କ୍ଲାସକୁ ଆସି ଆମ ସାଙ୍ଗେ ନାନାଦି ମଜା ଗପ କଲେ । ଏବଂ ତାର ଭିତରେ ସେ ଗୋଟିଏ ମାନସାଙ୍କ ମଧ୍ୟ ଆମ ସମସ୍ତଙ୍କୁ ପଚାରିଲେ—ସେଇଟି ହେଉଛି—ଗୋଟିଏ ଗଛରେ ଶହେ ଛଅଟି ଚଢ଼େଇ ବସିଥିଲେ । ଗୋଟିଏ ବନ୍ଧୁକ ବାଲା ଆସି ବନ୍ଧୁକ ଲଚ୍ଛି ଦେବାରୁ ସେଥିରୁ ଛଅଟି ଚଢ଼େଇ ମରି ତଳକୁ ଖସି ପଡ଼ିଲେ । କହିଲ ଦେଖି—ଗଛରେ ଆଉ କେଇଟା ଚଢ଼େଇ ରହିଲେ ? ଆମ କ୍ଲାସର ପ୍ରଥମ ଗଧ ମାଧା ବାରିକ ମୂଳରୁ ପ୍ରଶ୍ନଟା ବୁଝି ପାରିଲା ନାହିଁ । ଚଢ଼େଇ ଓ ଗଛ କଥାଟା ବୁଝିଲା । ମାତ୍ର ବନ୍ଧୁକ ଶବ୍ଦଟା ଓ ଲଚ୍ଛିଦେବା କ୍ରିୟାଟି ତାକୁ ବଡ଼ ଅଡ଼ୁଆରେ ପକାଇ ଦେଲା । ସେ ଖାଲି ପ୍ରଶ୍ନଟି ଶୁଣି କୁରୁ କୁରୁ ହୋଇ ହସି ଲାଗିଲା । ତା'ପରେ, ଆମର ୨ୟ ଗର୍ଦ୍ଦଭ ସୋବନୀ ଶେଣ ମୂଳରୁ ସେ ପ୍ରଶ୍ନଟି ଶୁଣୁ ନଥିଲା । ସେ ଝରକା ବାଟେ ବାହାରକୁ ଚାହିଁ ବାରେଣ୍ଡାରେ ଉଙ୍କି ମାରୁଥିବା ଆଉ ଗୋଟାଏ ବଜାଡ଼ ଟୋକାକୁ ଆଖିମାରି କଣ ଇସାରା ଦେଉଥିଲା । ନିଶ୍ଚୟ ତା' ମୁଣ୍ଡରେ କୌଣସି ଦୁଷ୍ଟ ବୁଦ୍ଧି ଖେଳୁଥିଲା । ମୁଁ କିନ୍ତୁ ପ୍ରଶ୍ନଟିକୁ

ଭଲ କରି ଶୁଣି ତାର ଉତ୍ତର ଠିକ୍ କରି ନେଇଥିଲି ମନେ ମନେ । ଏବଂ ସାର୍ ଯେତେବେଳେ "କିଏ କହିପାରିବ ହାତ ଟେକ" ବୋଲି ଆଦେଶ ଦେଲେ, ସେତେବେଳେ ଅନ୍ୟ ବୁଦ୍ଧିମାନ ଗଣିତଜ୍ଞ ଛାତ୍ରମାନଙ୍କ ମଧ୍ୟରେ ମୁଁ ମଧ୍ୟ ହାତ ଟେକିଲି ! ମାତ୍ର ସାର୍ ମୋ ଭଳି ବହୁ ଆଖ୍ୟାତ ଗର୍ଦ୍ଦଭକୁ ନ ପଚାରି, ଜଣ ଜଣ କରି ବୁଦ୍ଧିମାନ ମାନଙ୍କୁ ପଚାରି ଗଲେ । ଏବଂ ସବୁ ଗଣିତ ପଣ୍ଡିତ ବୁଦ୍ଧିଆ ଛାତ୍ରମାନେ—ଏହି ପ୍ରଶ୍ନଟିକୁ ସାମାନ୍ୟ ଫେଡାଣ ମାତ୍ର ଭାବି ୧୦୬ ରୁ ୬ ସଂଖ୍ୟାଟି ଫେଡ଼ ଦେଇ "ଶହେ ଚଢେଇ—ଶହେ ଚଢେଇ" ହେଲେ । ମାତ୍ର ମୁଁ ହଠାତ୍ ବୁଦ୍ଧିମାନମାନଙ୍କ ପତନରେ ଅତ୍ୟନ୍ତ ଉତ୍ସାହିତ ହୋଇ ଠିଆ ହୋଇପଡ଼ି ଖୁବ୍ ବଡ ପାଟିରେ କହି ଉଠିଲି—ସାର୍ ! ଆଉ ଗୋଟିଏ ବି ଚଢ଼େଇ ଗଛରେ ରହିଲେ ନାହିଁ । ସାର୍ ମୋ ଠାରୁ ଏତେକ ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ମୋ ମୁହଁକୁ ? ଗଧାର ପୁଣି ଏତେ ମେଧା ! ଏବଂ ପରାଜିତ ବୁଦ୍ଧିମାନ ଅଙ୍କ କଷାଳୀମାନେ ମୋ ଉତ୍ତର ଶୁଣି ମୋର ଫେଡାଣ ଜ୍ଞାନର ଏହି ଶୋଚନୀୟ ପରିଣତି ଦେଖି ହସି ଉଠିଲେ । କିନ୍ତୁ ସାର୍ ଯେତେବେଳେ ମୋ ଉତ୍ତରଟିକୁ ଠିକ୍ ହେଲା—ଏବଂ କେମିତି ଠିକ୍ ହେଲା—ତାର କାରଣ ବୁଝାଇ ଦେଲେ—ସେତେବେଳେ ଯାଇ ସେମାନେ ବୁଝିପାରି ଲଜ୍ଜିତ ହେଲେ ଓ ମୋ ଉପରେ ପ୍ରଥମ ଥର ଲାଗି ଈର୍ଷାନ୍ୱିତ ହୋଇ ଗଲେ । -

ମୋ ଉତ୍ତରଟି ଠିକ୍ ହେବାର କାରଣ ହେଲା—ମୁଁ ଶହେ ଛଅ ଓ ଛଅ ସଂଖ୍ୟା ଦୁଇଟିର ହଠଚମକ କ୍ରିୟା ଆଡକୁ ମନ ନଦେଇ ବନ୍ଧୁକ ଶବ୍ଦ ଓ ପକ୍ଷୀମାନଙ୍କ ମନସ୍ତତ୍ତ୍ୱ ବା ସ୍ନାୟୁର ଗତିବିଧି ସମ୍ବନ୍ଧେ ବେଶ୍ ଜାଣିଥିଲି । କିନ୍ତୁ ଆମ କ୍ଲାସର ସେଇ ତଥାକଥିତ ବୁଦ୍ଧିମାନ ଅଙ୍କ କଷାଳି-ମାନେ ଶହେ ଛଅଟି ପକ୍ଷୀଙ୍କୁ କେବଳ ଶହେ ଛଅଟି ସଂଖ୍ୟା ବୋଲି ମନେ କରିଥିଲେ ।

ସେଦିନ ସେକେଣ୍ଡ ପଣ୍ଡିତ ଆଉ ଗୋଟିଏ କଜିଭୁକିଆ ମାନସାଙ୍କ ପ୍ରଶ୍ନ ପଚାରିଲେ—ତା' ହେଲା—

ଚାରିଶ ଅଶୀ—ଶୂନ ନେଇଗଲା ବୁଢୀ ମାଈଷୀ—ରହିଲା କେତେ ? ଗଲା କେତେ ?

ଆମ କ୍ଲାସର ବୁଦ୍ଧିମାନ ଗଣିତ-ବେତ୍ତାମାନେ ସାଙ୍ଗେ ସାଙ୍ଗେ ଗୃଣଣ ଅଣୀରୁ ମନେ ମନେ ଶୂନ୍ ଲଗାଇ ଦେଇ ୪୮ ରଖିଲେ ଓ ୪୮୦ ରୁ ପୁଣି ୪୮ ଫେଡ଼ ଦେଇ ସଙ୍ଗେ ସଙ୍ଗେ ଫେଡ଼ାଣ ଫଳ ବାହାର କରି ସମସ୍ୱରରେ କହି ଉଠିଲେ—୪୩୨ ସାର୍ ୪୩୨ । ଗଲା ୪୩୨—ରହିଲା ୪୮ ।

ସେତେବେଳେ ପଣ୍ଡିତେ ହସି ହସି ମୋ ମୁହଁକୁ ଚାହାନ୍ତେ, ମୁଁ ସାମାନ୍ୟ ଡରି ଡରି କହିଲି—କିଛି ସାର୍ ଗଲା ନାହିଁ । ଯାହା ଥିଲା ସେଇଆ ରହିଲା—ସେଇ ୪୮୦ ।

ଏଥରକ ମଧ୍ୟ ସେତେବେଳେ ପଣ୍ଡିତେ ମୋ ମୁହଁକୁ ବିସ୍ମୟରେ ଚାହିଁ ରହିଲେ ଓ ମୋ ସମ୍ବନ୍ଧେ ମତ ପରିବର୍ତ୍ତନ କରିବାକୁ ସ୍ଥିର କରି—ଅନ୍ୟ ପିଲାମାନଙ୍କୁ "ଶୂନ" ଶବ୍ଦଟିର ସାଂଖ୍ୟ ଅର୍ଥ ବ୍ୟତୀତ, ତାର ଅନ୍ୟ ତାତ୍ପର୍ଯ୍ୟ ବୁଝାଇ ମୋ ଉତ୍ତରଟିର ସଠିକତା ପ୍ରମାଣ କଲେ । ଏବଂ ଏଥର ମଧ୍ୟ ଅନ୍ୟ ବୁଦ୍ଧିମାନ ପିଲାମାନେ ମୋ ଆଡ଼କୁ ବିସ୍ମୟ, ସଂଶୟ ଓ ଈର୍ଷା ମିଶ୍ରିତ ଚାହାଣୀରେ ଅନାଇ ରହିଲେ । ଏମିତି ଏମିତି ସେଦିନ ସେତେବେଳେ ପଣ୍ଡିତେ ଆଉ ଚାରି ପାଞ୍ଚୋଟି କୌତୁକ ପ୍ରଶ୍ନ ପଚାରିଲେ—ଏବଂ ଅନ୍ୟମାନଙ୍କ ଉତ୍ତର ଭୁଲ ହେଲା ଓ ମୋ ଉତ୍ତର ଠିକ୍ ହେଲା ।

ସେଇ ଦିନଟି ଥିଲା ଜାଣ ମୋ ଜୀବନରେ ସୌଭାଗ୍ୟତମ ଦିନ । କାରଣ ମୁଁ ମନେ ମନେ ସେଦିନ ନିଜକୁ ବୁଦ୍ଧିମାନ ବୋଲି ଭାବି ପାରିଲି । ଏବଂ ଅଙ୍କ ନ ଆସୁଥିବାରୁ ଯେଉଁ ନିର୍ବୁଦ୍ଧିଆ ଏଣ୍ଡା ଗଧ ଉପାଧି ପାଇଥିଲି, ତାକୁ ମନେ ମନେ ଉପେକ୍ଷା କରିବାକୁ ଲାଗିଲି । ଏବଂ ଅଙ୍କ ପଢାଉଥିବା ଶିକ୍ଷକ ମାନଙ୍କ ପ୍ରତି ମୋର ଘୃଣା ଓ ବିଦ୍ୱେଷ ମଧ୍ୟ ବଢିବାକୁ ଲାଗିଲା ।

ମୋର ଆଉ ଗୋଟିଏ ଗୁଣଥିଲା । ତା' ହେଲା ମୁଁ ପଦ ମିଳାଇ ପଦ୍ୟ ରଚନା କରି ପାରୁଥିଲି । ମୋର ସେ କାଳ ରଚିତ କେତୋଟି ପଦ୍ୟର କେତେକ ଧାଡ଼ି ମନେ ପଡ଼ୁଛି । ଯଥା—

କଜଳ ପାତିଟି ଗାଉଛୁ
କେଡେ ମଧୁର ଗୀତ
କଳା ବୋଲି ତାକୁ କମାଇଁ
ଗାଳି ଦେଉଛମିତ ?

ଜମ୍ବା—

ଟପ୍‌ଟପ୍ ପଡ଼େ ବରଷା
ଆକାଶ ନ ଦିଶେ ଫରସା ।
ଘଡ଼୍ ଘଡ଼୍ ହୁଏ ଘଡ଼ଘଡ଼
ଚଡ଼୍ ଚଡ଼୍ ମାରେ ଚଡ଼ଚଡ଼
ଗୁଇଁ ଗୁଇଁ ମାରେ ବିଜୁଳି
ଗଛରେ ପାଚିଛି ପିଜୁଳି ।
କେଁ କେଁ କେଁ କଟର
ବେଙ୍ଗ ପଢ଼ୁଅଛି ମନ୍ତର ।
ଫଚ ଫଚ ହୁଏ କାଦୁଅ
ମାଷ୍ଟରର ନାମ ଭେଦୁଅ
ଗମ୍ଭୀର ସେପଟୁ ବରଷା
ମାଡ଼ି ଆସୁଅଛି ସହସା ।
ଦିନରେ ଘୋଟଇ ଅନ୍ଧାର
ଘରୁ କେହି ନୁହେଁ ବାହାର ।

ଏମିତି ଏମିତି ପଦ ମିଳାଇ ବହୁ ପଦ୍ୟ ମୁଁ ଲେଖୁଥିଲି । ଲେଖିବାକୁ ବସିଲେ ଗୁଏଁ ଗୁଏଁ ଶବ୍ଦମାନ ଜୁଟି ଯାଉଥିଲେ ଓ ପଦ ମଧ୍ୟ ମିଳି ଯାଉଥିଲା ଖଗ ସାଙ୍ଗରେ ଚଗ—କଳ ସାଙ୍ଗରେ ବଳ—ମନ ସାଙ୍ଗରେ ଧନ କିମ୍ବା ଗୀତ ସାଙ୍ଗେ ମିତ ମିଳାଇ ପଦ୍ୟ ଲେଖିବାରେ ମୁଁ ଭାରି ଆତ୍ମପ୍ରସାଦ ଅନୁଭବ କରୁଥିଲି । କିନ୍ତୁ ଅଳ୍ପ କେତେକ ଅନ୍ତରଙ୍ଗ ସାଙ୍ଗଙ୍କ ବ୍ୟତୀତ ତାହା ମୁଁ ଆଉ କାହାକୁ ଦେଖାଉ ନଥିଲି । ବିଶେଷତଃ ମୋର ସବୁଠାରୁ ପ୍ରିୟ ସାଙ୍ଗ ମାଘୁଧର ଷଡ଼ଙ୍ଗୀକୁ ସେ ସବୁ ପଢ଼ି ଶୁଣାଉଥିଲି । ଏବଂ ମାଘୁଧର ତାହା ଶୁଣି ଖୁବ୍ ଖୁସି ହୋଇ ଯାଉଥିଲା । ଏବଂ ଭବିଷ୍ୟତରେ ମୁଁ ଜଣେ ବଡ଼କବି ହେବି ବୋଲି ନିଶ୍ଚିନ୍ତରେ ଭବିଷ୍ୟବାଣୀ କରୁଥିଲା । ଅବଶ୍ୟ "କବି" କାହାକୁ କହନ୍ତି ଓ କବି ହେବା ଖୁବ୍ ଭଲ ବା ବଡ଼କଥା କି ନୁହଁ, ତାହା ମଧ୍ୟ ମତେ ଜଣା ନଥିଲା । କିନ୍ତୁ ମାଘୁଧରର ଏକଥା ଶୁଣି ମତେ ଖୁବ୍ ଆନନ୍ଦ ଓ ଗର୍ବ ବୋଧ ହେଉଥିଲା । ମାଘୁଧର ମୋ ଠିକ କ୍ଲାସରେ

ଲ କଅଁଳ ତୋର ଟିକି ଦେହଟି
କେଉଁ ଶିଳ୍ପୀ ତୋତେ ଗଢ଼ି ଅଛି ?
ସବୁଜ ଘାସର ଗାଲିଚା ଉପରେ
ଖେଳୁଅଛୁ ତୁହ କେଉଁ ମନ୍ତ୍ରରେ ।
ସାଧବ ଝିଅଲୋ ସାଧବ ବୋହୂ
ଶୋଭାରେ ତୋହର ଜଗତ ମୋହୁ ।

ଏହି କବିତାଟିକୁ ସେ ମୋ ହାତରୁ ଝିଙ୍କି ନେଇ ନିଜର ପକେଟରେ ରଖିଲା । ମୁଁ ମଧ୍ୟ ତାକୁ ସେଇଟି ଆଉ ମାଗିଲି ନାହିଁ । ତା' ପରଦିନ ସ୍କୁଲରେ ସେ ଆମ କ୍ଲାସକୁ ଆସିଲା । ଏବଂ ସେ ପିରିଅଡ୍‌ରେ ଶିକ୍ଷକ ନଥିବାରୁ ସେ ପଦ୍ୟଟିକୁ ସେ ପାଟିକରି ପଢ଼ି ଆମ କ୍ଲାସ ପିଲାଙ୍କୁ ଶୁଣାଇଲା । ଆମ କ୍ଲାସର ବୁଦ୍ଧିଆ ଅଙ୍କ କଷା ପିଲା କେତେଜଣ ମାୟାଧର ମୁହଁରୁ କବିତାଟି ଶୁଣି ଖୁବ୍ ଖୁସି ହେଲେ । ଏବଂ ପଚାରିଲେ—ଏ କବିତା କିଏ ଲେଖିଛି ? ସେତେବେଳେ ମାୟାଧର ମୋ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଖୁବ୍ ନାଟକୀୟ ଭଙ୍ଗୀରେ କହିଲା— ଏହି ଯେ ସେଠି ବସିଛନ୍ତି କବି ଶ୍ରୀ ନୀଳମଣି ସାହୁ । ମୁଁ ସେତେବେଳେ ଖୁବ୍ ଗର୍ବିତ ବୋଧ କରୁଥାଏ । କିନ୍ତୁ ସେଇ ପିଲାମାନେ ହଠାତ୍ ହସି ଉଠିଲେ । ତାଙ୍କ ଭିତରୁ ଜଣେ ମୋତେ ବୁଦ୍ଧି ଟୁସ୍କଲାଇ କରି କହିଲା—ଯାହାକୁ ସାମାନ୍ୟ ଫେଡାଣ ହରଣ ଆସୁନାହିଁ—ସେମିତିଆ ଟୋକା କେବେ ଏମିତି କବିତା ଲେଖି ପାରିବ ନାହିଁ । ଅସମ୍ଭବ ।

ପ୍ରକାଶ ଥାଉ କି, ଆମେ ସେତେବେଳେ ସପ୍ତମ ଶ୍ରେଣୀରେ ଉତ୍କଳମଣି ମଧୁସୂଦନ ରାଓଙ୍କ "ସାହିତ୍ୟ ପ୍ରସଙ୍ଗ" ବହି ପଢ଼ୁଥିଲୁ ଏବଂ ସେ କାଳର ଜଣେ ଭର୍ଣ୍ଣାକ୍ୟୁଲର ପଣ୍ଡିତ ୰ ବଳଭଦ୍ର ନାୟକ ଆମକୁ ତାହା ପଢ଼ାଉଥିଲେ । ମୁଁ ମୋ ଜୀବନରେ ଏପରି ସାହିତ୍ୟ ଶିକ୍ଷକ ଆଉ ଦେଖି ନାହିଁ । ତାଙ୍କୁ ସେତେବେଳେ ବୃକଶ ବର୍ଷ ବୟସ ଏବଂ ଅତି ମଧୁର ଗଳାରେ ଚମତ୍କାର ବ୍ୟାଖ୍ୟା ବିଭୁସ ସହ ସେ "ଜୀବନ ଚିନ୍ତା" ଭଳି ବୈରାଗ୍ୟଭାବ ସମ୍ବଳିତ ସେହି ପ୍ରସିଦ୍ଧ କବିତାଟି ପଢ଼ାଇବା ପରେ ମୋର ମନ ସେତେ-

ବେଳେ ଏତେ ବୈରାଗ୍ୟପୂର୍ଣ୍ଣ ହୋଇଗଲି ଯେ, ମୁଁ କାଷ୍ଠବଦନ ଧରି ବଡ଼ ଶକ୍ତ ଓ ବରକ୍ତ ମନେ କଲି । ଏବଂ ମାୟାଧର ସଙ୍ଗେ ଘର ଛାଡ଼ି ସନ୍ନ୍ୟାସୀ ହୋଇ କୁଆଡ଼େ ଚାଲିଯିବାକୁ ମସୁଧା କରୁଥିଲି । ଆମର ମଧ୍ୟ ଥରେ ଘର ଛାଡ଼ି ଚାଲିଯିବାର ଦିନ ଧାର୍ଯ୍ୟ ହୋଇ ଯାଇଥିଲା । କିନ୍ତୁ ମୁଁ ସେତେବେଳେ ହଠାତ୍ ଆମ ସ୍କୁଲର ପଞ୍ଚମ ଶ୍ରେଣୀରେ ପଢ଼ୁଥିବା ଜଣେ ଛାତ୍ରୀ କୁମାରୀ ମଞ୍ଜୁଲତାର ପ୍ରେମରେ ମୋର ଆଉ ଏକ ପାଖିଆ ପଡ଼ିଯିବାରୁ ଏବଂ ବାଲ୍ୟକାଳରୁ ମା'ଛେଉଣ୍ଡ ସାନଭାଇ ଓ ଭଉଣୀଙ୍କ ଦୁରବସ୍ଥା କଥା ଭାବି ମାୟାଧରର ମନ ଭ୍ରାତୃପ୍ରେମରେ ହଠାତ୍ ବିଚଳିତ ହୋଇଯିବାରୁ ଆମର ଘର ଛାଡ଼ି ସନ୍ନ୍ୟାସୀ ହେବା ପ୍ରସ୍ତାବ ସେଥରକ ଲାଗି କାଟ ଖାଇଗଲା । ଏବଂ ଆଜି ପର୍ଯ୍ୟନ୍ତ ବି ସେ ଚିନ୍ତା ଆଉ ଥରେ ହେଲେ ବି ମନକୁ ଜୁଟି ନାହିଁ । ଅବଶ୍ୟ ମନ ଭିତରେ ମୃତ୍ୟୁ ଚିନ୍ତା ପଶିଗଲାଣି ।

ସାହିତ୍ୟରେ ତେଣୁ ଆମ କ୍ଲାସର ପିଲାମାନଙ୍କର ଖୁବ୍ ଭଲ ପ୍ରବେଶ ଥିଲା । ସେଥିଲାଗି ସେମାନେ ମୋ ଲିଖିତ କବିତାଟିକୁ ବେଶ୍ ପସନ୍ଦ କଲେ ମଧ୍ୟ, ମୋର କବିତ୍ୱ ପ୍ରତିଭାକୁ ବିଶ୍ୱାସ କଲେ ନାହିଁ । ସେମାନେ ବାରମ୍ବାର କହୁଥାନ୍ତି ଯେ ମୋ ଭଳି ଗଧ ସେମିତି କବିତା କେବେ ଲେଖି ପାରିବ ନାହିଁ । ମାତ୍ର ମୋର ପରମ ବନ୍ଧୁ ମାୟାଧର ସେମାନଙ୍କୁ ଛାଡ଼ୁ ନ ଥାଏ । ସେ ବାରବାର ଜିଦ୍ କରି କହୁଥାଏ ଯେ ମୁଁ ଜଣେ ଭବିଷ୍ୟତରେ ବଡ଼ କବି ହେବି ଏବଂ ଏ କବିତାଟି ମୁଁ ଲେଖିଥିବା ସେ ନିଜ ଆଖିରେ ଦେଖିଛି । ମାୟାଧରର ଏତେଦୂର ଜିଦ ଦେଖି—ମୋ କ୍ଲାସର ଜଣେ ପିଲା ମୋତେ ଚାହିଁ କହିଲା—

ତା' ହେଲେ ସେ କୋଉ କବିଙ୍କ ଲେଖାରୁ କପି କରିଥିବ ।

ଏ କଥା ଶୁଣି ମୋ ମୁଣ୍ଡରେ ବଜ୍ର ପଡ଼ିଗଲା । ମୁଁ ଅତ୍ୟନ୍ତ ଅପମାନିତ ମନେ କରି ଭିତରେ ଭିତରେ କାନ୍ଦୁଣି ମାନ୍ଦୁଣି ହେଲି । କିନ୍ତୁ ମାୟାଧର ତଥାପି ସେମାନଙ୍କୁ ଛାଡ଼ୁ ନ ଥାଏ । ସେ ମୋର ଅନ୍ୟାନ୍ୟ କବିତା କଥା ମଧ୍ୟ ଉଲ୍ଲେଖ କଲା । ସେଇଠୁ ଦି'ଜଣ ପିଲା ମାୟାଧରକୁ ଧରି ସେହି କବିତାଟିକୁ ଆମ ସାହିତ୍ୟ ସାର୍‌ଙ୍କୁ ଦେଖାଇବା ଲାଗି ଅଫିସକୁ ଗଲେ । ମୁଁ

ମଧ୍ଯ ତାଙ୍କ ପଛେ ପଛେ ଗଲି । ଅଫିସରେ ସାହିତ୍ୟ ସାର୍ ନଥିଲେ ।କିନ୍ତୁ ଗଣିତ ସାର୍ ମୁହଁଟାକୁ ଭ୍ରୁକୁଣ୍ଡା କରି ବସିଥିଲେ ଓ ତାଙ୍କ ଆଗରେ ଟେବୁଲ ଉପରେ ତାଙ୍କର ବେତଟି ମଧ୍ଯ ଥୁଆ ହୋଇଥିଲା । ପିଲାମାନେ ମୋତେ ଅପମାନ ଦେବା ଲାଗି ଏତେ ଉତ୍ତେଜିତ ହୋଇଥିଲେ ଯେ ସେଇ କବିତାଟିକୁ ଅଙ୍କ ସାର୍‌ଙ୍କୁ ଦେଖେଇ କହିଲେ—ସାର୍ ! ଏ କବିତାଟିକୁ ପଢ଼ନ୍ତୁ । ଯିଏକୁ କୁଆଡ଼େ ନୀଳମଣି ଲେଖିଛି ! ଗଣିତ ସାର୍ କବିତାଟିକୁ ନେଇ ଅଙ୍କ ବହିରେ ମୁହଁ ମାଡ଼ ପ୍ରଶ୍ନ ଗୃହକୁ ଦେଖିଲା ପରି ମନେ ମନେ କବିତାଟି ପଢ଼ିଲେ । ତା'ପରେ କଣ ଭାବି ବେତଟିକୁ ଧରିଲେ ଓ ସେଇ ବେତଟା ମୋ ଆଡକୁ ନୁଆଁଇ ମତେ ତାଙ୍କ ପାଖକୁ ଡାକିଲେ—ହେଇ ! ଟୋକା ! ଏଠିକି ଆ ।

ମୁଁ ଡରି ଡରି ତାଙ୍କ ପାଖକୁ ଗଲି । ହାତ ଯୋଡ଼ିଲା ଭଳି କରି ଠିଆ ହେଲି । ସେ ମୋ ମୁଣ୍ଡରେ ବେତଟି ଛୁଆଁଇ ଧମକିଲା ଭଳି ପଚାରିଲେ—

ଏ ପଦ୍ୟ ତୁ ଲେଖିଛୁ ? ସତ କହ । ନ ହେଲେ ତୋ' ପିଠି ଫଟେଇ ଦେବି ରେ ତିନି ନମ୍ବର ଗଧା !

ମୁଁ ଡରି ଡରି କାନ୍ଦ କାନ୍ଦ ହୋଇ କହିଲି—ହଁ ସାର୍! ମୁଁ ଲେଖିଛି !

ଗଣିତ ସାର୍ ଫେର୍ ନାଲି ଆଖି କରି ମତେ ଧମକେଇଲେ—

ଷ୍ଟୁପିଡ୍ ଗଧା ! ଫେର୍ ମିଛ କହୁଛୁ ? ତୁ ଯିଏକୁ କପି କରିନୁ ?

ମୁଁ ଏଥର ଜୋର୍‌ରେ କାନ୍ଦି ଉଠି କହିଲି—ନା, ସାର୍ । ମୁଁ କୋଉଠୁ କପି କରିନି । ନିଜ ବୁଦ୍ଧିରୁ ଲେଖିଛି । (ହଠାତ୍ "ମନରୁ" ଶବ୍ଦଟି ଜାଗାରେ "ବୁଦ୍ଧି"ରୁ ଶବ୍ଦଟି କାହିଁକି ମୋ ତୁଣ୍ଡରୁ ବାହାରି ପଡ଼ିଲା କେଜାଣି ! )

ଗଣିତ ସାର୍ ସେଇ ବେତରେ ମତେ ପାହାରେ ପକାଇ ତାଚ୍ଛଲ୍ୟ କରି କହିଲେ—

ବୁଦ୍ଧିରୁ ଲେଖିଛୁ ? ତୋର ପୁଣି ବୁଦ୍ଧି ? ସ୍ୱାଃପ—ଫେଲ୍ଡ଼ାଣ ଆୟୁନ ସପ୍ତମ ଶ୍ରେଣୀରେ ପଢ଼ୁଛୁ ! ବାର କାହାଣ ପନ୍ଦର ପଣ କୋଉଠି ଅଛି କହିଲୁ !

“ତେଇଶି ନୁଆଁ ଦୁଇଶ ସାତ ପଣ ବାର କାହାଣ ପନ୍ଦର ପଣ”— ଏହା ମୁଁ ଜାଣିଥିଲେ ବି, ସେତେବେଳେ ସେହି ଘୋର ଦୁଃଖ ଆଉ କ୍ରୋଧ ବେଳାରେ ମୋର ସେତକ ମନେ ପଡ଼ିଲା ନାହିଁ । ମୁଁ କେବଳ ପାପୁଲିରେ ଆଖି ବୁଜି କାନ୍ଦିବାକୁ ଲାଗିଲି ।

ଗଣିତ ସାର୍ ମୋ ପିଠିରେ ଆଉ ଚାହାରେ ପକାଇ କହିଲେ—

ଯାଃ ପଳା । ସ୍ୱାଃପ ଗଧ କାହାଁକା ।

ମୁଁ ସେଠାରୁ ପଳାଇ ଆସି ବଂଚିଲି । ମୋର କ୍ଲାସ ପିଲାମାନେ ମହା ଆନନ୍ଦରେ ଗଡ଼ ଜିତିଲା ପରି କୋଳାହଳ କରି କରି କ୍ଲାସକୁ ଗଲେ ! ମାୟାଧର କିନ୍ତୁ ଘୋର ନୈରାଶ୍ୟ ଓ ଦୁଃଖରେ ମୋ ସାଙ୍ଗେ ସାଙ୍ଗେ ଆସିଲା ଏବଂ ଆମେ ଦୁହେଁ ଆଉ କ୍ଲାସକୁ ନ ଯାଇ ସ୍କୁଲ ଛାଡ଼ି ପଳାଇଗଲୁ । ମାତ୍ର ଘରକୁ ଗଲୁ ନାହିଁ । ନଈ କୂଳଆଡ଼େ ଗଲୁ । ନଈ କୂଳରେ ଯୋଉଠି ଗୋଟାଏ ବାଲିକୁଦ ଅଛି—ଏବଂ ତାର ସାମାନ୍ୟ ତଳକୁ ଯୋଉଠି ଗୁଡ଼ାଏ ତାଳ ଗଛ ଅଛି—ସେଇଠି ଗୋଟିଏ ଜାଗାରେ ଯାଇ ଆମେ ବସିଲୁ । ଦୁଇ ବନ୍ଧୁ ଚୁପ୍ ଚାପ୍ ହୋଇ ଥାଉ । କେହି କାହାକୁ କିଛି କଥା କହୁ ନ ଥାଉଁ । ଅଳ୍ପ କ୍ଷଣ ପରେ ମାୟାଧର ପାଟି ଖୋଲିଲା । କହିଲା—ଏ ସ୍କୁଲରୁ ଧର୍ମ ଛାଡ଼ିଗଲାଣି । କିନ୍ତୁ ମୁଁ ସେ କବିତାଟି ନିଶ୍ଚୟ ସାହିତ୍ୟ ସାର୍‌ଙ୍କୁ ଦେଖେଇବି । ଏ ଗଣିତ ସାର୍ ଗୋଟେ କି ମଣିଷ ? ଅଙ୍କ କଷି କଷି ତା' ଦିନ ଯାଉଛି । ସାହିତ୍ୟ ସାର୍ ନିଶ୍ଚୟ ସବୁ କଥା ଜାଣି ପାରିବେ ।

ମୁଁ ମାୟାଧର ଆଡ଼କୁ ବଡ଼ ବିଷର୍ଣ୍ଣ ଆଖିରେ ଚାହିଁଲି ଏବଂ କରୁଣ ସ୍ୱରରେ କହିଲି—ନାଃ ! ଆଉ କାହାକୁ ସେ କବିତା ଦେଖେଇବା ଦରକାର ନାହିଁ । ସେମାନେ କେହି ବିଶ୍ୱାସ କରିବେ ନାହିଁ ଯେ ମୁଁ ସେଇଟି ଲେଖିଛି । ସାହିତ୍ୟ ସାର୍ ମଧ୍ୟ ଅଙ୍କ ସାର୍‌ଙ୍କ ଭଳି ମତେ ସନ୍ଦେହ କରିବେ । କିନ୍ତୁ ମାୟାଧର ! ମୁଁ ଆମ ଭୁତାମଚଣ୍ଡୀଙ୍କ ରାଣ ପକାଇ କହୁଛି—ମୁଁ ଯାହାସବୁ ଲେଖିଛି, କୋଉଠୁ କପି କରି ନାହିଁ ।

ମାଧ୍ୟାଧର ମୋର କଥାଶୁଣି କିଛି ଉତ୍ତର ଦେଲା ନାହିଁ । କେବଳ ମୋର ହାତକୁ ଟାଣି ନେଇ ତାର କୋଳରେ ରଖି ଚୁପ୍ ଚାପ୍ ବସିଲା । ସେଇଠି ମୁଁ କହିଲି—ବୁଝିଲୁ ମାଧ୍ୟାଧର ! ମୁଁ ଭାବୁଛି—ମୁଁ ଯେବେ ବଡ଼ ହୋଇ ଆହୁରି ବହୁତ ବଡ଼ ବଡ଼ ପଦ୍ୟ ଲେଖିବି, ସେତିକିବେଳେ ଏହି ପାଜିମାନେ ଜାଣିବେ ଯେ ମୁଁ କାହାଠାରୁ କପି ନ କରି ନିଜ ବୁଦ୍ଧିରୁ ସବୁ ଲେଖିଛି ।

ମାଧ୍ୟାଧର ମତେ ସାନ୍ତ୍ୱନା ଦେଇ କହିଲା—ଠିକ୍ କହିଛୁ । କିନ୍ତୁ ସେ ଗଣିତ ସାର୍ ଙ୍କୁ ଗୋଟେ ଶିକ୍ଷା ଦେବାକୁ ହେବ ।

ମୁଁ କହିଲି—ଛାଡ଼ ସେ କଥା । ଆ ଘରକୁ ପଳାଇବା ।

ଆମେ ଦୁହେଁ ଘରକୁ ଫେରିଲୁ । କିନ୍ତୁ ସେଦିନ ମୋ ମନ ଖୁବ୍ ଦବି ଯାଇଥାଏ । ମୋର ହୃଦୟ ବିଦାରି ହୋଇ ଯାଉଥାଏ । ସେଦିନ ସ୍କୁଲରେ ମତେ ଯୋଉ ଅପମାନ ମିଳିଲା, ମୋ ଜୀବନରେ ମୁଁ ସେମିତି ଅପମାନ ଆଉ କେବେ ପାଇ ନାହିଁ । ଅପମାନବୋଧ ମୋର ଜୀବନରେ ପ୍ରଥମ କରି ସେଇଦିନ ହିଁ ହେଲା । ତା' ପରେ ହୁଏତ ବିଭିନ୍ନ ସମୟରେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ଲୋକଙ୍କ ଦ୍ୱାରା ମୁଁ ଯେ ଖୁବ୍ ଅପମାନିତ ନ ହୋଇଛି, ତା' ନୁହେଁ । କିନ୍ତୁ ପରବର୍ତ୍ତୀ କାଳରେ ମୁଁ ଆଉ କାହାର ଅପମାନ ଭର୍ତ୍ସନାକୁ ହୃଦୟ ଭିତରେ ଘେନା କରିନାହିଁ । କାରଣ କ୍ରମଶଃ ମୋର ଧାରଣା ହୋଇଛି ଯେ, ଅପମାନ ଯେ ଦିଏ—ଅବଶେଷରେ ସେହି ଲୋକହିଁ ଅପମାନିତ ହୁଏ । ଅପମାନକୁ ଗ୍ରହଣ ନ କଲେ ତାହା ସେହି ଅପମାନକାରୀ ନିକଟକୁ ଦ୍ୱିଗୁଣ ଶକ୍ତିରେ ଫେରିଯାଇ ତାକୁଇ ଆକ୍ରାନ୍ତ କରେ । ମାତ୍ର ପିଲାଦିନର ସେ ଅପମାନ ମୁଁ ଆଜି ପର୍ଯ୍ୟନ୍ତ ବି ଭୁଲି ପାରି ନାହିଁ । ମୋର କଅଁଳ ମନରେ ସେ ଦିନ ଯୋଉ ଆଘାତ ଲାଗିଥିଲା, ତାହାର ଜ୍ୱାଳା ଏ ପର୍ଯ୍ୟନ୍ତ ମଧ୍ୟ ମୋର ମନରେ ଅଛି । ଏବଂ ସେହି ବ୍ୟକ୍ତିଗତ ଗୋପନ ଜ୍ୱାଳାଟି ମତେ ଶିକ୍ଷା ଦେଇଛି ଯେ ନିରିହ ନିରପରାଧ ଲୋକଙ୍କୁ ଜାଣିତ ବା ଅଜାଣତରେ ଅପମାନ କଲେ-ତାହା ବିଶ୍ୱର ମାନବାତ୍ମାର ମର୍ମକୁ ସମସ୍ତଙ୍କର ଅଲକ୍ଷ୍ୟରେ ଆଘାତ କରେ । ଜଣକର ଅପମାନ ସାରା ମାନବାତ୍ମାର ଅପମାନ ହୋଇଯାଏ । ମୁଁ ମୋ ଜୀବନରେ କାହାର ଆତ୍ମାକୁ ବାଧା ଦେଲି

ଏଣ ଅନୁମାନ ହେଉ ନାହିଁ । କିନ୍ତୁ ଭବିଷ୍ୟତରେ ଓ ମୋ ଜୀବନକାଳ ଭିତରେ ଯେଉଁ ହାସ୍ୟ ବହୁରେଖ ଅନୁମାନର ହୋଇଛନ୍ତି ବୋଲି ମୁଁ ଉପସ୍ଥିତରେ ଲୁଚିବାକୁ ଚାହେଁ । ମୁଁ ଜାଣେ—ତାହା ହୋଇଥିବ । ଏ ପୃଥିବୀରେ ସବୁ ପରମାତ୍ମା ବର୍ତ୍ତମାନ । କିନ୍ତୁ ଆମେ ମଧ୍ୟ ସବୁବେଳେ ସେ ସମ୍ବନ୍ଧ ସଚେତନ ନଥାଉ-ଓ ଆମର ଅହଂକାର-ପ୍ରମତ୍ତତାରେ ଜାଣୁ ନାହିଁ ଏ ଧରାରେ ଅନେକାନେକ ହେଉଥାଉ । ଯେତେବେଳେ ତାହା-ହୃଦୟରେ ଘାତ ବାଜ ଯାଉଥିବ, ଯେତେବେଳେ ତାହାଙ୍କ ମର୍ମରେ ଆମ କଥାର କ୍ରୂର ବାଜ ଯାଉଥିବ, ଯେତେବେଳେ ବା ଏଇ ଆମର ତାଚ୍ଛଲ୍ୟକାରୀ ବ୍ୟବହାରର ଅବାଞ୍ଛିତ ଝାଙ୍କି ପଡ଼ୁଥିବ—ସେ କଥା ଆମେ କେମିତି ବା ଅସ୍ୱୀକାର କରିବା ? ସେଇଥି ପାଇଁ ତ ଆଜ ସବୁ ପଦାକୁ ବାହାରିଲ ମାଟି-ପାହା ଭିତରେ ଅଛି ପଡ଼ୁ—ମନେ ମନେ ତାକୁ ମୁଁ ନମୋ ନମୋ କରୁଥାଏ । ସେ କେଉଁଟିଏ ହେଉ ବା କୁକୁରଟିଏ ହେଉ-ଗଛଟିଏ ହେଉ ବା ପକ୍ଷୀଟିଏ ହେଉ । ବୈଷ୍ଣବ ମହାଜନମାନେ ମାନ୍ୟହୀନ ଲୋକଟିକୁ ବି ବହୁମାନ୍ୟ ସ୍ୱରୂପର ନିବେଦନ କରିବାକୁ କହିଛନ୍ତି—କିନ୍ତୁ ବହୁମାନ୍ୟ ବ୍ୟକ୍ତିକୁ ମଧ୍ୟ ଅମାନ୍ୟ କରି ବହୁବେଳେ ଆମେ ମୁହଁ ଫେରାଇ ଚାଲିଯାଉ ।

ଛାଡ଼ ସେ କଥା । ସେଣୁ ଦିନଠାରୁ ଆଜି କେବେ ବି ମୋର କବିତା କଥା ଆମ ସ୍କୁଲରେ ଆଉ ପଢ଼ିନାହିଁ । କିନ୍ତୁ ମୁଁ ମଧ୍ୟ ଅଙ୍କ ପାଠଟିକୁ ଆୟତ୍ତ କରିବାକୁ ଲାଗି ପଡ଼ିଲି । ମାତ୍ର ସେ ପାଠ ମୋ ଉପାଦେୟ ହେଲାନାହିଁ । ଏ ଜୀବନରେ ବି ହେବା କଥା ନୁହେଁ । ମୋ ଧାତୁରେ ସେ ପାଠ ଥିବ ନାହିଁ । ତଥାପି ଯୋଗାଯୋଗ କରି କୌଣସି ମତେ ମାଇନର ପରୀକ୍ଷାରେ ଅଙ୍କ ପେପରରେ ଯେନତେନ ପାସ୍ ମାର୍କ ରଖି ପାସ୍ କରିଗଲି ।

ତା'ପରେ ଆସିଲା ମୋର ହାଇସ୍କୁଲ ପାଠପଢ଼ା ଅଧ୍ୟାୟ । ଆମ ଗ୍ରାମରେ ତ ହାଇସ୍କୁଲ ନଥିଲା । ତେଣୁ ଆମ ଗାଁଠାରୁ ପ୍ରାୟ ଦଶ ପନ୍ଦର ମାଇଲ ଦୂରରେ ଗୋଟିଏ ପ୍ରାଚୀନ ସମୃଦ୍ଧ ଗ୍ରାମରେ ନୂଆ ହୋଇ ହାଇସ୍କୁଲଟିଏ ହୋଇଥାଏ ଏବଂ ତାର ସ୍ୱଚ୍ଛ ନାମ ଡାକ ହୋଇଥାଏ । ମୁଁ ସେଠିକି ଗଲି-ହଷ୍ଟେଲରେ ରହି ପାଠ ପଢ଼ିଲି । ଏଇଠୁ ଜାଣ ମାଷ୍ଟ୍ରଙ୍କର ସଙ୍ଗେ ମୋର ଆଂଶିକ ସମ୍ପର୍କ ହେଲା ।

ମୁଁ ତ ସେମିତି କଟକର ଭଲ ଛାତ୍ର ନଥିଲି । ତା’ ଛଡ଼ା ଗଣିତ ବିଷୟଟି ପ୍ରତି ମୋର ଘୋର ଆତଙ୍କ । ସେ ଯାହା ହେଉ ପ୍ରଥମ ବର୍ଷ ପରେ ନବମ ଶ୍ରେଣୀରେ ମୁଁ ସଂସ୍କୃତ ଅପ୍‌ସନାଲ ନେଲି ଏବଂ ବାଧ୍ୟତା ମୂଳକ ଅଙ୍କ ପେପରଟିକୁ ଖୁବ୍ ମନ ଦେଇ ଜଣେ ଭଲ ଅଙ୍କ ଜାଣିଥିବା ପିଲା ମାନଙ୍କ ପଢ଼ିଲି । କୋଡ଼ିଏ ପଚିଶି ନମ୍ବର ରହୁଥାଏ । ତା’ ଛଡ଼ା ଆଲଜେବ୍ରା ବା ବୀଜ ଗଣିତ ଓ ଜ୍ୟାମିତି ମଧ୍ୟ ମତେ କିଛି କିଛି ନମ୍ବର ରଖିବାରେ ସାହାଯ୍ୟ କରୁଥାଏ । ମାତ୍ର ଏହି ସ୍କୁଲରେ ମୋର ବହୁ ସୁପ୍ତ ଗୁଣଗୁଡ଼ିକର ବିକାଶ ଲାଗି ସୁଯୋଗ ମିଳିଲା । ଏଠାରେ ତର୍କ ସଭା, ହାତଲେଖା ପତ୍ରିକା, ବିଭିନ୍ନ ଖେଳ, ନାଟକ, ସ୍କାଉଟ୍ ଇତ୍ୟାଦିରେ ମୁଁ ଭାଗ ନେଇ ସ୍କୁଲରେ ଜଣେ ନେତୃ ସ୍ଥାନୀୟ ଛାତ୍ର ହୋଇଗଲି ଏବଂ ବିଭିନ୍ନ ଦିଗରେ ମୋର କୃତିତ୍ୱ ପ୍ରକାଶ ପାଇବା ହେତୁ ଶିକ୍ଷକ ଓ ଛାତ୍ର ଛାତ୍ରୀଙ୍କ ମହଲରେ ବେଶ୍ ଆଦୃତ ହେଲି । ଇତି ମଧ୍ୟରେ ମୋର ଦୈହିକ ସ୍ୱାସ୍ଥ୍ୟ ମଧ୍ୟ କ୍ରମଶଃ ଯୌବନ ଆଡ଼କୁ ଅଗ୍ରସର ହେଉଥିଲା ଏବଂ ଚେହେରାରେ ମୋର ଗୋଟାଏ ବ୍ୟକ୍ତିତ୍ୱ ମଧ୍ୟ ଫୁଟି ଉଠୁଥିଲା । ଘର ପୋଡ଼ି, ବନ୍ୟା, କଲେରା ସେତେବେଳେ ଗାଁ ଗଣ୍ଡାରେ ଖୁବ୍ ପ୍ରବଳ ହେଉଥାଏ ଏବଂ ସେତେବେଳେ ଜଣେ ନେତୃ ସ୍ଥାନୀୟ ସ୍ୱେଚ୍ଛା ସେବକ ସ୍କାଉଟ୍ ଭାବେ ମଧ୍ୟ ଶିକ୍ଷକ ଓ ଛାତ୍ର ମହଲରେ ମୋର ଖୁବ୍ ସୁନାମ ହୋଇ ଯାଇଥାଏ ଏବଂ ବଜାରରେ ମଧ୍ୟ ମୋତେ ଲୋକେ ଖୁବ୍ ଜାଣିଗଲେ ଓ ଖୁବ୍ ସମ୍ମାନ ଦେଖାଇଲେ । ଦୋକାନୀମାନେ ବିନା ଦ୍ୱିଧାରେ ମତେ କାଳ ବାକିରେ ମଧ୍ୟ ପାନ ଓ ଜଳଖିଆ ବି ଦେଉଥିଲେ । ତା’ ସଙ୍ଗେ ସଙ୍ଗେ ମୋର କବିତା ଲେଖା ମଧ୍ୟ ବଢ଼ି ଚାଲିଲା ଏବଂ ସେ ସ୍କୁଲର ଶହଶହ ପିଲାଙ୍କ ଭିତରେ ପାଞ୍ଚ ଛଅ ଜଣ ଛାତ୍ର କବିଙ୍କ ଭିତରେ ମୁଁ ଜଣେ ବୋଲି ଗଣ୍ୟ ହେଲି । ଏଠି କେହି ମୋର କବିତାକୁ ଦେଖି କପି କରୁଛି ବୋଲି ସନ୍ଦେହ ମଧ୍ୟ କଲେ ନାହିଁ । ବରଂ ପ୍ରଶଂସା କଲେ । ଯଦିଓ ସେତେବେଳକୁ ମୁଁ ଭଲ ଭାବେ ଜାଣି ସାରିଲିଣି ଯେ ସେହି ସ୍କୁଲରେ ଆଉ ଦୁଇଜଣ ଛାତ୍ର କବି ମୋଠାରୁ ଯଥେଷ୍ଟ ଭଲ କବିତା ଲେଖୁଛନ୍ତି ଏବଂ ରାଧାନାଥ ଗ୍ରନ୍ଥାବଳୀର ବହୁ ପଂକ୍ତି ମୋ ଅପେକ୍ଷା ସେମାନଙ୍କର ଅଧିକ ମୁଖସ୍ଥ ଥିଲା । ମୋଟ ଉପରେ ମୁଁ ସେତେବେଳେ ମୋର ବ୍ୟକ୍ତିତ୍ୱର ସ୍ୱରୂପ ଉପରେ ଖୁବ୍ ସଚେତନ ହେଲିଣି ଏବଂ ଅନ୍ୟମାନଙ୍କ ଉପରେ ମୋର ବ୍ୟକ୍ତିତ୍ୱ ଓ ଗୁଣଗୁଡ଼ିକର ପ୍ରଭାବ

ସୃଷ୍ଟି କରି ସାରିଲଣି । ମୋ ଭିତରୁ ସେଣ୍ଟ୍ ମାଇକାଆ କଅଁଳ ଟର୍ଣ କାତର ବ୍ୟକ୍ତିତ୍ୱଟି ଲୋପ ପାଇ ଯାଇଥିଲା ।

ସେତିକି ବେଳର କଥା । ମୋର ଜଣେ ଦାଦାଇ ଝିଅ ଭଉଣୀ ଯୋଉଆ ଗାଁରେ ବିବାହ କରିଥିଲା । ସେ ଭଉଣୀଟି ପିଲଦିନୁ ବାପ ମା' ଛେଉଣ୍ଡ ହୋଇ ଥିବାରୁ ମୋର ବାପା ମାଆ ତାକୁ ବଢ଼ାଇ କୁଢ଼େଇ ବାହା ଦେଇଥିଲେ । ଏବଂ ମୋର ସେହି ଭିଣୋଇ ଥିଲେ ଜଣେ ଅତି ସରଳ ଭଦ୍ରଲୋକ । ସେ ଆମମାନଙ୍କୁ ଖୁବ୍ ଭଲ ପାଉଥିଲେ ଏବଂ ଆମେ ମଧ୍ୟ ତାଙ୍କୁ ନିଜ ଭିଣୋଇଙ୍କଠାରୁ ଅଧିକ ମଣୁଥିଲୁ । ଆମେ କେବେ ତାଙ୍କ ଘରକୁ ଗଲେ ସେ କୋଉଠି ନିଧି ପାଇଯାନ୍ତି । ମୋର ଦାଦାଇ ଝିଅ ଭଉଣୀଟି ଦୁଇଟି ପିଲାଙ୍କୁ ଛାଡ଼ି ଅକାଳରେ ମରିଗଲା । ସେଇ ଭିଣୋଇଁ ମୋର ଆଉ ଦ୍ୱିତୀୟ ବିବାହ କଲେ ନାହିଁ । ଏବଂ ସେଥି ଯୋଗୁଁ ତାଙ୍କର ଆମ ପ୍ରତି ସ୍ନେହ ସରାଗ ଖୁବ୍ ବଢ଼ିଗଲା । ତାଙ୍କର ସ୍ୱଚ୍ଛଳ ପରିବାର—କିନ୍ତୁ ସେ ଗାଁରେ କେହି ଚତୁର୍ଥ ଶ୍ରେଣୀ ଯାଏ ମଧ୍ୟ ପାଠ ପଢ଼ି ନଥାନ୍ତି । ତିନି ଘରଘର ମୋଟେ ବ୍ରାହ୍ମଣ । ଏବଂ ଅନ୍ୟମାନେ ପ୍ରାୟ ସମସ୍ତେ ଚୃଷୀ-ଗୁଡ଼ିଆ, ତେଲି ଓ କରଣ । ଚୃଷ ଓ ବେପାର ସେ ଗାଁରେ ମୂଳ । କିନ୍ତୁ ଗାଁ ବାଲାମାନେ ଭାରି ଧାର୍ମିକ ଓ ସଂସ୍କୃତିବନ୍ତ । ଭାଗବତ ଘର ଠାକୁରାଣୀ ମନ୍ଦିର ଓ ମହାଦେବଙ୍କ ମନ୍ଦିର ଥାଏ । ନିତି ସନ୍ଧ୍ୟାରେ ନାମ ସଂକୀର୍ତ୍ତନ ହୁଏ । ପୁରାଣ, ଭାଗବତ ପଢ଼ା ଯାଏ । ବର୍ଷକେ ବହୁବାର ମେଳା ମଉଛବ ହୁଏ । ରାସଲୀଳା, କୃଷ୍ଣଲୀଳା ହୁଏ । ଯାତ୍ରା ମେଳନ ହୁଏ । ଏବଂ ସବୁଠାରୁ ବଡ଼କଥା ହେଲା ପାଠୁଆ ଲୋକଙ୍କ ପ୍ରତି ସେମାନଙ୍କର ଯୋଉ ଆଦର, ସମ୍ମାନ ଆଉ ଅଭ୍ୟର୍ଥନା । ତା' ପୁଣି ସେଇ ପାଠୁଆଟି ଯଦି ଇଂରାଜୀ କି ସଂସ୍କୃତ ଭାଷା ଦି'ପଦ ଜାଣିଥାଏ । ତେବେ ଜାତି କି ବୟସ ନିର୍ବିଶେଷରେ ସେ ସେହି ଗ୍ରାମବାସୀଙ୍କ ଦ୍ୱାରା ଆଦୃତ ହୁଏ ।

ସେହି ଗାଁରେ ଥାଏ ଗୋଟିଏ ଚଟଶାଳୀ । ଏବଂ ବହୁ ବର୍ଷ ଧରି ସେଥିରେ ଜଣେ ମାଟି ବଂଶ ଅବଧାନ ମାଷ୍ଟରୀ କରୁଥାନ୍ତି । ତାଙ୍କ ନାମ ମିଚ୍ଛୁ ଅବଧାନେ । ସେତେବେଳେ ତାଙ୍କୁ ଷାଠିଏ ଖଣ୍ଡେ ବୟସ ହେବ । ମୋ ଭିଣୋଇ ମଧ୍ୟ ତାଙ୍କ ପାଖେ ପାଠ ପଢ଼ିଥିଲେ । ମିଚ୍ଛୁ ଅବଧାନ ଭାରି କଡ଼ା

ଓ ଟିପ ଜାଣିଆ ମଣିଷ । ପ୍ରାଚୀନ ଛାନ୍ଦ ଓ ଗୈପଦ ଗାଇବାରେ ତାଙ୍କର କେହ୍ବ ସମକକ୍ଷ ନଥିଲେ ଯେତେବେଳେ କୋଡ଼ିଏ ଖଣ୍ଡ ମୌଜାରେ । ଶରୀର ବେଦ ଭଜନରେ ମଧ୍ୟ ତାଙ୍କର ଅଗାଧ ପ୍ରବେଶ ଥିଲା । ଗ୍ରାମର ବୟସ୍କ ମଣିଷ ମାନଙ୍କୁ ବାଲ୍ୟକାଳରେ ପାଠପଢ଼ାଇ ଥିବାରୁ ସମଗ୍ର ଗ୍ରାମ ଉପରେ ତାଙ୍କର ଗୋଟାଏ ଗୁରୁସୁଲଭ ଆଧିପତ୍ୟ ମଧ୍ୟ ଥିଲା । ସମସ୍ତେ ତାଙ୍କୁ ଡରୁଥିଲେ । ନ୍ୟାୟ ବିଚାରରେ ମଧ୍ୟ ସେ ସର୍ବଶେଷ ରାୟ ଦେଉଥିଲେ । ଏବଂ ତାହା ବିନାବିଚାରରେ ଆଜ୍ଞା ପ୍ରାୟ ଗୃହୀତ ହେଉଥିଲା ।

ମିଛୁ ଅବଧାନେ ଦେଖିବାକୁ ବେଶ ଲମ୍ବା ମଣିଷ । ପତଳା କିନ୍ତୁ ଦୃଢ଼ ଶରୀର । ନାକତଳେ ପାଚିଲା ଲମ୍ବା ନିଶ । ବେକରେ ତେଲରେ ପାଣି ପାଇଥିବା ତଲପ୍ରସ୍ତ ତୁଳସୀ ମାଳ । ମୁଣ୍ଡରେ ସାନ ଚୁଟିଟିଏ ବନ୍ଧା ହୋଇ ତା' ଭିତରେ କନିଅର ବା କଂଠଚମ୍ପା ଫୁଲଟିଏ ଖୋସା ହୋଇଥାଏ । ମୁଖମଣ୍ଡଳ ସାମାନ୍ୟ ଲମ୍ବା, ଏବଂ ଶିରାଯୁକ୍ତ । ଆଖିର ଚାହାଣୀ ଖୁବ୍ ତୀକ୍ଷ୍ଣ, ଦୃଢ଼ ଓ ଆତ୍ମ ପ୍ରତ୍ୟୟ ଶୀଳ । ଧୋତି ଉପରେ ଚଦରଟିଏ ଅଣ୍ଟାରେ ବନ୍ଧା ହୋଇଥାଏ । କାନ୍ଧରେ ପାଚିଲା ଗାମୁଛା । କାଖ ତଳେ ବହିଆଟିଏ । କପାଳ ଓ ବାହୁରେ ବୈଷ୍ଣବ ତିଳକ । ପାଟିରେ ପାନ ଜାକ ଗୋଟିଏ ପଟ ଗାଲ ଉଞ୍ଚା ଦିଶୁଥାଏ । ହାତରେ ପାଚିଲା ବାଡ଼ିଟିଏ ଧରି ପାଦରେ କଠାଉ ମାଡ଼ି ସେ ଯେତେବେଳେ ଉଭା ହୁଅନ୍ତି—ଗାଁର ତିନିପୁରୁଷଙ୍କ ମଥା ତାଙ୍କ ପାଖେ ନତ ହୋଇଯାଏ । ସତେ କି ଦେବଗୁରୁ ବୃହସ୍ପତି ବୁଢ଼ା !

ତାଙ୍କର ଆଉ ଗୋଟିଏ ବିଶେଷ ଗୁଣଥିଲା । ତା ହେଲା—ପ୍ରାଚୀନ ଭାରତର ଗଣିତ ବିଦ୍ୟାରେ ଅଗାଧ ପ୍ରବେଶ । ଓଡ଼ାଙ୍କ, ଫେଡ଼ାଙ୍କ, ଶୋଧୀ କାଣୀ, ନଳ ଇତ୍ୟାଦି ଅତ୍ୟନ୍ତ ଗୂଢ଼ ଅଙ୍କମାନଙ୍କର ରହସ୍ୟ ତାଙ୍କୁ ଜଣାଥିଲା । ଶୁଣାଯାଏ— ତାଙ୍କ ପାଖେ ଲୀଳାବତୀ ସୂତ୍ରର ପ୍ରାଚୀନ ପୋଥି ରହିଛି । ଏବଂ ସେ ସବୁ ସେ ସାଧିଛନ୍ତି । କେବଳ ମୁଁ ନୁହଁ—ଅଙ୍କ ବିଦ୍ୟାରେ ପ୍ରବୀଣ ବ୍ୟକ୍ତିକୁ ଏ ପୃଥିବୀରେ ଯେ ସମସ୍ତେ ଡରନ୍ତି ତାହା ମୁଁ ସେଇ ଗାଁରେ ଜାଣିଲି । ସେ ଗାଁର ଲୋକେ କହନ୍ତି—ମିଛୁ ଅବଧାନେ ଗଣିତ ବିଦ୍ୟାବଳରେ ଉଡ଼ି ଯାଉଥିବା ଚଢ଼େଇର ପର ଗଣି ଦେବେ । ବରଗଛର ପତ୍ର ଗଣି ଦେବେ । ଖଣ୍ଡିଏ କାଠରେ ଗୋଟିଏ ନକ୍ଷତ୍ର ଠାରୁ ଆଉ ନକ୍ଷତ୍ରଟିର ଦୂରତା

ମାପି ଦେବେ । ଯେଉଁ ବଡ଼ ପୁରୁଣା ପୋଖରୀ ହେଉ—ତା କୂଳରେ ଠିଆ ହୋଇ ପୋଖରୀର ଗଭୀରତା ମାପି ଦେବେ । ଯେତେ ଅନ୍ଧୁଣ୍ଡା ଅଙ୍କ ହେଉ—ସେ ତାକୁ ଛୁଇଁଦେଇ ଦେବେ । ଗଣିତ ବିଦ୍ୟା ଭଳି ଗହନ ବିଦ୍ୟା । ମୋ ଭଉଣୋଇଙ୍କ ଗ୍ରାମବାସୀଙ୍କର ଗୋଟିଏ ଗର୍ବ ଥିଲା ଯେ ଚବିଶି ଖଣ୍ଡ ମୌଜାରେ ମିଶ୍ର ଅବଧାନଙ୍କୁ ଗଣିତ ବିଦ୍ୟାରେ ଜିତିପାରିବ ଏମନ୍ତ ବିଦ୍ୟାବନ୍ତ ପୁରୁଷ କେହି ନାହିଁ । ବହୁ ବହୁ ପାଠୁଆ କୁଣିଆ ତାଙ୍କ ଗ୍ରାମକୁ ଆସିଛନ୍ତି—କିନ୍ତୁ ମିଶ୍ର ଅବଧାନଙ୍କ ଗଣିତ ପ୍ରଶ୍ନର ଉତ୍ତର ଦେଇ ନପାରି ତାଙ୍କ ପାଖେ ମଥାନତ କରି ପରାଜୟ ସ୍ୱୀକାର କରି ଫେରି ଯାଇଛନ୍ତି ।

ଏମନ୍ତ ମହିମାବନ୍ତ ଷାଠିଏ ବର୍ଷର ବୃଦ୍ଧ ଗୂଢ଼ ଗମ୍ଭୀର ଗଣିତଜ୍ଞଙ୍କ ସହିତ ଯେ ଦିନେ ମୋର ସମ୍ମୁଖ ସମର ହେବ, ଏହା ମୋତେ ସେତେବେଳେ ଜଣାନଥିଲା—ଯେତେବେଳେ ମୁଁ ଗୋଟାଏ ବଡ଼ ମେଳଣ ଦେଖିବାକୁ ଗ୍ରୀଷ୍ମ ଛୁଟିରେ ତାଙ୍କ ଗ୍ରାମକୁ ଯାଇଥିଲି । ମୋର ସୌଭାଗ୍ୟକୁ ମୋର ପରମବନ୍ଧୁ ମାୟାଧର ମଧ୍ୟ ମୋ ସଙ୍ଗେ ଯାଇଥାଏ । ମୋର ସେଇଟା ଦଶମ ଶ୍ରେଣୀ । କିନ୍ତୁ ମୁଁ ସେତେବେଳକୁ ନାନାବିଧ ଗୁଣ ଦୁର୍ଗୁଣରେ ଓସ୍ତାଦ୍ ବନିଗଲଣି । କଥା କହିବାରେ ମୋ ପାଟିରୁ ବାଟୁଲି ବାଜୁ ନଥାଏ । ନାନା ଜାଲିଆତି କରି ନିଜକୁ ଖରାପ ପରିସ୍ଥିତିରୁ ଖସାଇ ନେବାର କୌଶଳ ମତେ ଖୁବ୍ ଜଣା ହୋଇ ଗଲାଣି । ମୁଁ ଗୋଟିଏ ଖାକି କନାର ହାଫ୍‌ପ୍ୟାଣ୍ଟ ଓ ଧଳା ହାଫ୍‌ସାର୍ଟ ପିନ୍ଧିଥାଏ । ପକେଟରେ ଫାଉଣ୍ଟେନ୍ ପେନ୍ ଟିଏ ଖୋଷିଥାଏ । ଏବଂ ମୁଁ ଓ ମାୟାଧର ମୋ କକେଇଙ୍କର ଫିଲିପ୍‌ସ ସାଇକେଲରେ ଡବଲ ରାଇଡିଂ କରି ନାନାବିଧ ଗଡ଼ାର, ଦାଣ୍ଡ, ନଦୀବନ୍ଧ ଓ ଶ୍ମଶାନମାନ ପାରି ହୋଇ ସେଇ ଗାଁରେ ଆସି ପହଞ୍ଚିଥାଉଁ । ମୋତେ ଦେଖି ମୋ ଭଉଣୋଇ ଓ ତାଙ୍କ ଗ୍ରାମବାସୀ ଭାରି ଖୁସି ହୋଇ ଗଲେ । ଏବଂ ଆମ ସାଇକେଲ ବା ଶୂନଗାଡ଼ିଟି ମଧ୍ୟ ସେଇ ଗ୍ରାମର ଆବାଳବୃଦ୍ଧ ବନିତା ସମସ୍ତଙ୍କର ବିପୁଳ କୌତୁହଳ ଓ ଆନନ୍ଦ ଜନକ ଦୃଷ୍ଟି ଆକର୍ଷଣ କଲା । ମୋ ଭଉଣୋଇ ଖୁବ୍ ଗର୍ବରେ ତାଙ୍କ ଗାଁବାଲାଙ୍କୁ ଜଣାଇ ଦେଲେ ଯେ ତାଙ୍କର ଏହି ଗୁଣସାଗର ଶ୍ୟାଳକଟି ଅତ୍ୟନ୍ତ ବୁଦ୍ଧିମାନ ଓ ପାଠରେ ବଡ଼ ବିଚକ୍ଷଣ—ଏବଂ ବର୍ତ୍ତମାନ ଏଣ୍ଟ୍ରେନସ୍‌ରେ ଇଂରେଜୀ ପଢ଼ା କରୁଛନ୍ତି ।

ଏହା ଶୁଣିବା ମାତ୍ରେ ଗ୍ରାମବାସୀମାନେ ମୋତେ ଖୁବ୍ ସମ୍ଭ୍ରମ କରି ଚାହିଁଲେ । କେହି କେହି ବୟସ୍କ ବ୍ୟକ୍ତି ମଥାନତ କରି ଏହି ପନ୍ଦର ବର୍ଷ ବୟସ୍କ ପ୍ରତିଭାବାନ ଏଣ୍ଟ୍ରେନସ୍ ଇଂରେଜୀ ପାଠୁଆଙ୍କ ଉଦ୍ଦେଶ୍ୟରେ ସଭକ୍ତି ପ୍ରଣିପାତ ମଧ୍ୟ ଜଣାଇଲେ । କେହି କେହି ମଧ୍ୟ ସହୃଦୟ ଗଳାରେ ବିନୟ ଦେଖାଇ କହିଲେ – ଆପଣଙ୍କ ଭଳି ଲୋକ ଆମର ଏଇ ମୂର୍ଖ ମଳି ମୁଣ୍ଡିଆ ମଫସଲ ଗାଁରେ ପାଦ ପକାଇଲେ ଏଇଟା ଆମର ବଡ ଭାଗ୍ୟ । ଏସବୁ ଶୁଣି ମୁଁ ଖୁବ୍ ଆତ୍ମ ପ୍ରସାଦ ଅନୁଭବ କରୁଥାଏ – ଏବଂ ମୋର ସାଙ୍ଗ ମାଧୁଧର ମୋର ପ୍ରଶଂସାରେ ଅତ୍ୟନ୍ତ ଉତ୍ସାହିତ ହୋଇ ମୋର ଅନ୍ୟାନ୍ୟ ଗୁଣ—ଯଥା ମୁଁ ଜଣେ କବି—ଏହି କଥାଟି ସମସ୍ତଙ୍କ ଆଗରେ ଘୋଷଣା କରୁଥାଏ । ଏବଂ ମୋର ଶ୍ୟାଳକ ବହଳ ଭଉଣୀଇ ସାଆନ୍ତଙ୍କ ଗୋଡ ଆଉ ତଳେ ଲାଗୁ ନଥାଏ । ଆନନ୍ଦରେ ତାଂକର କଣ୍ଠ ଗଦ୍ ଗଦ୍ ହୋଇ ଯାଉଥାଏ ।

ଏହାପରି ଭାବେ ଦୁଇଦିନ ଖୁବ୍ ଆନନ୍ଦରେ କଟିଗଲା । ଖିଆ ପିଆର ଧୁମ୍ ଉଡ଼ିଲା । ଗୋଟିଏ ଦିନ ମଧ୍ୟ ମେଳନ ଦେଖିବାକୁ ଗଲୁ ପାଖ ଗାଁକୁ । ତା'ପରେ ଆମର ଫେରି ଆସିବା କଥା । ମାତ୍ର ସେ ଗାଁରେ ଆଉ ଦି'ଦିନ ମୁଁ ରହିଗଲି । ଏବଂ ମୋ ଫେରିବାର ପୂର୍ବଦିନ ରାତିରେ—ଆମେ ଦାଣ୍ଡଘରେ ବସି ତାସ୍ ଖେଳୁଛୁ—ଏବଂ ଆମ ପାଖରେ ମଧ୍ୟ କେତେକ ଗ୍ରାମବାସୀ ଦେଖଣାହାରି ବସିଥାନ୍ତି । ମଝିରେ ମଝିରେ ମୁଁ ନାନାଦି ବାହାଦୁରିଆ କଥା ଗପି ସମସ୍ତଙ୍କର ମନୋରଞ୍ଜନ କରୁଥାଏ । ଇଂଲଣ୍ଡ, ଆମେରିକା, ପୋଲଣ୍ଡ, ଜର୍ମାନୀ, ଋଷିଆ, ବୋମା, ଗାନ୍ଧୀ, ନେହେରୁ ସୁଭାଷ ବୋଷ, ହିଟଲର, ମୁସୋଲିନ୍, ଚର୍ଚ୍ଚିଲ, ସ୍ୱାଧୀନତା, ଜାଲିଆନା ବାଗ୍, ଚରଖା, ସତ୍ୟାଗ୍ରହ ଇତ୍ୟାଦି ନାନା ଅଶ୍ରୁତପୂର୍ବ ବିଶିଷ୍ଟନାମ ଓ ଘଟଣାମାନ ମୋର ବାହାଦୁରିଆ ଉତ୍ତେଜିତ କଣ୍ଠରୁ ଶୁଣିବା ବେଳେ ହାଆଁକୁ ହାଆଁ କରୁଛୁବେଳ ତାସ୍ ଖେଳ ବନ୍ଦ ହୋଇ ଯାଉଥାଏ । ଏବଂ ସେ ଗାଁ ବାଲାମାନେ ମୋତେ କଣ ନାଇଁ କଣ ବୋଲି ମନେ କରୁଥାନ୍ତି ।

ଏହି ସମୟରେ କଠାଉ ଠକ୍ ଠକ୍ ସଙ୍ଗେ ଗମ୍ଭୀର ଗଳାର ଖଣ୍ଡି କାଶ ଶୁଣାଗଲା । ଏବଂ ପୁଅ ବୋହୂଙ୍କୁ ଧରି ଅଯୋଧ୍ୟା ପଥରେ ଆସୁଥିଲା ବେଳେ

ରାଜା ଦଶରଥ ହଠାତ୍ ପର୍ଶୁରାମଙ୍କ ଆଗମନର ଅବ୍ୟବହିତ ପୂର୍ବ ଏକ ଭୟଙ୍କର ଅଶୁଭ ସଙ୍କେତର କମ୍ପନ ପାଇ ଅସ୍ୱସ୍ତି ଅନୁଭବ କରିଥିଲେ ଆମେ ସମସ୍ତେ ଅନୁଭବ କଲୁ । ମୋ ଭଣୋଇଙ୍କ ସମେତ ଗ୍ରାମବାସୀମାନେ ସତର୍କ ହୋଇ ଗଲେ । ହଠାତ୍ ମୋର ଭଣୋଇ ଉଠିପଡ଼ି କହିଲେ—ଆରେ ହେ ତାସ୍ ବନ୍ଦ କର । ମାଷ୍ଟ୍ରେ ବୋଧେ ଆସୁଛନ୍ତି ।

ତାଙ୍କ କଥା ତାଙ୍କ ପାଟିରୁ ସମ୍ପୂର୍ଣ୍ଣ ବାହାରି ନାହିଁ, ସତକୁସତ ମିଷ୍ଟର ଅବଧାନ ବାଡ଼ିଟିଧରି କଠାଉଟି ବାହାରେ ରଖି ଘର ଭିତରକୁ ପଶି ଆସିଲେ । ସମସ୍ତେ ଠିଆ ହୋଇଗଲେ । ମୁଁ କିନ୍ତୁ ଗର୍ବିତ ହୋଇ ବସି ରହିଥାଏ । ମୁଁ ତାଙ୍କ ଆଡ଼କୁ ଗୃହିଁଲି । ବାପ୍‌ରେ କି ପ୍ରଚଣ୍ଡ ବ୍ୟକ୍ତିତ୍ୱ । କି ଅଭିଜାତ ଆତ୍ମପ୍ରତ୍ୟୟ ଶୀଳ ଆଉ ବୁଦ୍ଧି ଦୀପ୍ତ ଦୃପ୍ତ ଗର୍ବିତ ଠିଆ ହେବାର ଭଙ୍ଗୀ ଆଉ ଚୃହାଣୀ । ପ୍ରଥମେ ମୁଁ ଟିକିଏ ଶଙ୍କି ଗଲି । ସେ ମୋ ଆଡ଼କୁ କଟମଟ କରି ଚୃହିଁ ରହିଥାନ୍ତି । କିନ୍ତୁ ମୁଁ ଠିଆ ହୋଇ ତାଙ୍କୁ ନମସ୍କାର କଲାପରେ ତାଙ୍କର ଚୃହାଣୀ ନରମ ହୋଇ ଆସିଲା । ସେ ଆସନ ଗ୍ରହଣ କଲେ ଓ ଅନ୍ୟ ଟୋକା, ଦରବୁଢ଼ା ଓ ବୁଢ଼ାମାନେ ତାଙ୍କର ଖୁବ୍ ନୀରବ, ବାଧ୍ୟ ବାଳ-ଶିଷ୍ୟମାନଙ୍କ ଭଳି ତାଙ୍କୁ ଘେରି କରି ବସିଲେ । ତାଙ୍କର ବସିବା ଭଙ୍ଗୀଟି ମଧ୍ୟ ସେହିପରି ଦୃଢ଼ ଓ ଅଭିଜାତ । କିଛି ସମୟ ନୀରବ ହେଲା ପରେ ସେ ମୋ ଭଣୋଇଙ୍କ ଆଡ଼କୁ ଚୃହିଁ ଖୁବ୍ ଗମ୍ଭୀର ଗଳାରେ ପଚାରିଲେ— ଏଇ ବାବୁ ପରା ତୁମର ଶଳା ? ମୋ ଭଣୋଇ ସାମାନ୍ୟ ସଲ୍ଲଜ ଅଥଚ ଖୁବ୍ ଗୌରବ ବୋଧ ସହିତ କହିଲେ— ଆଜ୍ଞା ହଁ । ମୋର ମଝିଆ ଶଳା ।

ତା'ପରେ ମାଷ୍ଟ୍ରେ ମୋ ଆଡ଼କୁ ଟେରେଇ କରି ବେଶ୍ କର୍ତ୍ତୃତ୍ୱ ବ୍ୟଞ୍ଜକ ଗଳାରେ ପଚାରିଲେ— କୋଉଯାଏ ବିଦ୍ୟା ପଢ଼ିଲେଣି ?

ମୋ ଭଣେଇ ସାମାନ୍ୟ ହସି ହାତ ମଳି ମଳି କହିଲେ—ଆଜ୍ଞା । ଏଣ୍ଟ୍ରେନ୍‌ସ୍‌ରେ ଇଂରେଜୀ ପଢ଼ା କରୁଛନ୍ତି । ଦଶମ ଶ୍ରେଣୀ ।

ଗ୍ରାମବାସୀମାନେ ଆଖି ତରଟି ଥରେ ମୋ ଆଡ଼କୁ ଓ ଥରେ ମାଷ୍ଟ୍ରଙ୍କ ଆଡ଼କୁ ଚୃହୁଁଥାନ୍ତି । ସେମାନେ ଦୁଇ ବିଶିଷ୍ଟ ବିଦ୍ୱାନ ବ୍ୟକ୍ତିଙ୍କୁ ଦେଖୁଥାନ୍ତି ।

ଜଣେ ଆଧୁନିକ ଯୁଗର ଇଂରେଜୀ ଶିକ୍ଷାପ୍ରାପ୍ତ ବିଦ୍ୱାନ୍—ଯୋଉ ବିଦ୍ୟା-ବଳରେ ଜଣେ ପୋଲିସି ସାହେବ ହୋଇ ପାରେ— ହୋଇପାରି ମାଜିଷ୍ଟ୍ରେଟ ହୋଇ ପାରେ— ଆକାଶରେ ବେମ୍‌ଯାନ୍ ଉଡ଼ାଇ ପାରେ— ରେଳଗାଡ଼ି ଚଳାଇ ପାରେ ଇତ୍ୟାଦି ଇତ୍ୟାଦି । ଏବଂ ଆଉ ଜଣେ ଆମର ଦେଶିଆ ମରହଟ୍ଟି ବିଦ୍ୟାରେ ଧୁରନ୍ଧର ଯେଉଁ ବିଦ୍ୟା ବଳରେ ଜଣେ ଉଡ଼ ଯାଉଥିବା ଚଢେଇର ପର ଗଣି ଦେଇ ପାରେ-ଛାନ୍ଦ ଚୌପଦୀ ଗାଇ ପାରେ-ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ବଖାଣି ପାରେ ।

ସେଇଠୁ ମାଷ୍ଟ୍ରେ ମୋ ଆଡ଼କୁ ଚାହିଁ ପଚାରିଲେ—ବାବୁଙ୍କର ତ ସାହିତ୍ୟ ନିଶ୍ଚେ ପଢ଼ା ହେଉଥିବ ? କ'ଣ ସବୁ ପଢ଼ା ହେଉଛି ?

ମୁଁ ଖୁବ୍ ଗମ୍ଭୀର ହୋଇ କହିଲି—ରାଧାନାଥଙ୍କ "ଉଷା" କାବ୍ୟ ।

ମାଷ୍ଟ୍ରେ ପଚାରିଲେ—ଉଷା ନା ଉଷା ହରଣ ?

ମୁଁ କହିଲି—ନା-ନା ଉଷା ହରଣ ନୁହେଁ—ଉଷା ।

ମାଷ୍ଟ୍ରେ କହିଲେ "ଉଷା" ବୋଲି କାବ୍ୟଟାଏ କୁଆଡୁ ଆସିବ ? ବାଣାସୁରର ଝିଅ ଉଷାକୁ ଶ୍ରୀକୃଷ୍ଣଙ୍କ ପୁତ୍ର ଅନିରୁଦ୍ଧ କିପରି ହରଣ କଲେ ସେଇ ବିଷୟ ତ ?

ମୁଁ କହିଲି ଆଜ୍ଞା ନା-ନା । ଆପଣ ସେ ପୁରୁଣା କାବ୍ୟ କଥା କହୁଛନ୍ତି । ଆମେ ପଢ଼ୁଛୁ କବି କବିବର ରାଧାନାଥ ରାୟବାହାଦୁରଙ୍କ ଉଷା ଉଷା କାବ୍ୟ । ଆଧୁନିକ । ଉଷା ଓ ଜୟନ୍ତଙ୍କ କଥା ।

ମିଶ୍ରେ ଅବଧାନେ ସାମାନ୍ୟ ଅପ୍ରସ୍ତୁତ ହୋଇଗଲେ । ସେ ରାଧାନାଥଙ୍କର କୌଣସି କାବ୍ୟ ପଢ଼ି ନଥିଲେ । କବିସୂର୍ଯ୍ୟ ଗୋପାଳକୃଷ୍ଣଙ୍କ ପରେ ତାଙ୍କୁ ଆଉ କୌଣସି କବି ବା କାବ୍ୟ ଜଣା ନଥିଲା । ସେ ବୋଧେ ପ୍ରଥମ କରି ତାଙ୍କର ଜ୍ଞାନ ବଳୟର ସୀମା ସଂପର୍କରେ ସଚେତନ ହେଲେ ଓ କିଂଶତ୍ ଦବିଗଲେ ମଧ୍ୟ । ମାତ୍ର ତାଙ୍କ ବ୍ୟକ୍ତିତ୍ୱଟି ଏହି ଗ୍ରାମରେ ଥାଇ ବର୍ଷ ବର୍ଷ ଧରି ଏତେ ଦୂର ସୁଗଠିତ ଓ ଦୃଢ଼ ହୋଇ ଯାଇଥିଲା ଯେ ସେ ସାମାନ୍ୟ ମାତ୍ର ଦୋହଲି ଗଲେ ନାହିଁ । ବରଂ ତାଙ୍କର ମହିମା ଏହି

ଗୋଟାଏ ଭିନ୍ନ ଗ୍ରାମାଗତ ମେଂଚଡ଼ ଟୋକା ଦ୍ୱାରା ସାମାନ୍ୟ ଆକ୍ରାନ୍ତ ହେବାକୁ ଯାଉଛୁ ଜାଣି ସେ ଖୁବ୍ ଗୋଟିଏ ମିଷ୍ଟ ଶର ସ୍ୱରୂପ ବାକ୍ୟ କହିଲେ—

ଆଧୁନିକ ଯୁଗରେ ଅ.ଉ କାବ୍ୟ କାହିଁ ? ଉପେନ୍ଦ୍ର ଭଞ୍ଜ, କବି ସୂର୍ଯ୍ୟ, ଅଭିମନ୍ୟୁଙ୍କ ପଦ ପରି ଆଜି କିଏ ପଦ ବାନ୍ଧି କରି ପାରିବ ? ସେମାନଙ୍କୁ ମା' ସ୍ୱରସ୍ୱତୀ ପ୍ରସନ୍ନ ହୋଇ ବର ଦେଇଥିଲେ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରୁ ଗୋଟାଏ ଧାଡ଼ିରୁ ପନ୍ଦରଟା ଅର୍ଥ ବାହାରିବ । ଏଇ ଶୁଣ—

ଅହି ମକର ଚାପ ନାଶେ ଶୋଭି ସାରସ ଚନ୍ଦ୍ର
ଅହି ମକର ଚାପ ନାଶେ ଶୋଭି ସାରସ ଚନ୍ଦ୍ରେ
ବଣ ପ୍ରକାଶିବ ସୁମନ ଶର ସୁମନ ଶର
ମହି କି ଆଣିଲା ସୁମନ ଶର-ସୁମନ ଶର !

ଏତେକ ସୁର ଧରି ନିଜ ହାତରେ ତାଳ ପକାଇ ଗାଇ ଦେଇ ସେ ତାର ଅନ୍ତତଃ ଗୁରିଟା ଅର୍ଥ କାଢିଲେ । ସମବେତ ଗ୍ରାମବାସୀ ଆଶ୍ଚର୍ଯ୍ୟ ହୋଇ ଏବଂ ଉଦ୍‌ଗ୍ରୀବ ହୋଇ ମିଶ୍ର ଅବଧାନଙ୍କର ଏହି ବିଚିତ୍ର ଜ୍ଞାନ ବୁଦ୍ଧିର ମହିମା ଦେଖିବାକୁ ଲାଗିଲେ । ଏବଂ ତାଙ୍କ ଆଗରେ ମୋର ଇଂରେଜୀ ପଢୁଆ ବୁଦ୍ଧି ବିଦ୍ୟାର ପରାଜୟ ସୁନିଶ୍ଚିତ ଜାଣି ମୋ ପ୍ରତି ସହାନୁଭୂତିଶୀଳ ହୋଇ ପ୍ରମାଦ ଗଣିବାକୁ ଲାଗିଲେ । ମୋ ଭଣୋଇଙ୍କ ମୁହଁ ମଧ୍ୟ ଟିକିଏ ମଳିନ ପଡ଼ିଗଲା । ହଠାତ୍-ମାସ୍ତାଧର ଅନାହୂତ ଭାବେ ବଡ଼ ପାଟିରେ କହିଲା—ନୀଳମଣି ବାବୁ ବର୍ତ୍ତମାନ ରାଧାନାଥଙ୍କର କେତୋଟି ପଦ ବୋଲନ୍ତୁ । ଶୁଣିବା !

ଆଶ୍ଚର୍ଯ୍ୟ କଥା । ସତେ କି ଗ୍ରାମବାସୀମାନେ ଏଇ କଥା ଗୁହୁଁଥିଲେ ! ତେଣୁ ସମସ୍ତେ ଏକ ସ୍ୱରରେ ସମର୍ଥନ କରି କହିଲେ—ହଁ-ହଁ-ନୀଳମଣି ବାବୁ ତାଙ୍କ ବିଦ୍ୟାରୁ ପଦେ ଦ'ପଦ ବୋଲନ୍ତୁ ।

ମୁଁ ସଙ୍ଗେ ସଙ୍ଗେ ସଙ୍ଗେ ମୋର ମଧୁର କିଶୋର ଗଳାରେ କହିଲି— ଶୁଣନ୍ତୁ ! କବିବର ରାଧାନାଥ ରାୟ ବାହାଦୁର ଉଷା ଓ ଜୟନ୍ତର ପ୍ରଣୟ

ଭାବକୁ କିପରି ସରଳ ମଧୁର, ଅଥଚ କି ଅପୂର୍ବ ଭାବ ଦେଇ ବର୍ଣ୍ଣନା କରୁଛନ୍ତି ! ରାଜକୁମାର ଜୟନ୍ତଙ୍କୁ ଦେଖି ନୃପୁରାଜ ଜେମା ଊଷା ଭାବୁଛନ୍ତି—

ଏ ରୂପ ମାଧୁରୀ କାହିଁଥିଲା ପୁଣି
ଭୁବନେ ଲୁଚି ?
ଥରେ ପିଇ ଆହା ! ପାରିବ କି ତାହା
ନେତ୍ର ମୁରୁଛି ?
ବିଧାତା ସୌନ୍ଦର୍ଯ୍ୟ ସୃଷ୍ଟିରେ ସାର ଏ
ରାଜ କିଶୋର
ହୋଇ ନଥିବଟି କେତେ ରସବତୀ
ହୃଦୟ ଚୋର !

ଇତ୍ୟାଦି ଇତ୍ୟାଦି ପଦମାନ ମୋ ଗଳାରୁ ଶୁଣିବା ମାତ୍ରେଇ ଗ୍ରାମବାସୀମାନେ କରତାଳି କଲେ ଓ ମୋର ବୁଦ୍ଧି ବିଦ୍ୟାକୁ ବିପୁଳ ସମର୍ଥନ ଜଣାଇଲେ । ମୋତେ ବୋଧ ହେଲା—ସତେକି ଏହି ଗ୍ରାମର ଅଧିବାସୀମାନେ ବର୍ଷ ବର୍ଷ ଧରି ଏହି ସୁନାମଧନ୍ୟ ବିଦ୍ୱାନ୍ ଚକ୍ରବର୍ତ୍ତୀ ମିଚ୍ଛୁ ଅବଧାନଙ୍କ ଶାସନରେ ରହି ଖୁବ୍ ଅତିଷ୍ଠ ହୋଇ ଉଠିଲେଣି । ସତେକି ସେମାନେ ନିଜ ନିଜ ଅନ୍ତଃକରଣରେ ତାଙ୍କଠାରୁ ମୁକ୍ତି ଚାହୁଁଥିଲେ । ତାଙ୍କର ପତନ ଚାହୁଁଥିଲେ ଓ ତାଙ୍କର ଅସ୍ତ ମଧ୍ୟ ଚାହୁଁଥିଲେ । କେହି ଜଣେ ଆଧୁନିକ ବିଦେଶୀ ବିଦ୍ୱାନ ଆସି ଏହି ମରହଟ୍ଟି ଅମଳର ଅତ୍ୟନ୍ତ ଅହଙ୍କାରୀ ଦୃପ୍ତ ଓ ଆଧୁନିକତା ବିରୋଧୀ ବିଦ୍ୟାଧାରୀଟିକୁ ସମ୍ପୂର୍ଣ୍ଣ ପରାସ୍ତ କରି ଏ ଗ୍ରାମ ଅଧିକାର କରୁ ଓ ସେମାନଙ୍କୁ ନୂତନ ଜୀବନ, ଆଲୋକ ଓ ଦିଗ ଦେଖାଉ ଏହାହିଁ ସତେକି ଥିଲା ସେମାନଙ୍କ ଅବଚେତନର ଗୂଢ଼ ଅଭିଳାଷ । ସେମାନେ ସମସ୍ତେ ମୋ ତୁଣ୍ଡରୁ ବାହାରିଥିବା ଊଷା କାବ୍ୟର ପଦ ଗୁଡ଼ିକୁ ଖୁବ୍ ପ୍ରଶଂସା କରିବାକୁ ଲାଗିଲେ ।

ମୁଁ ମିଚ୍ଛୁ ଅବଧାନଙ୍କ ମୁହଁକୁ ଚାହିଁଲି । ଦେଖିଲି ସେ ସେ ଏତିକିରେ ହାରିଯିବା ଲୋକ ନୁହନ୍ତି ! ତାଙ୍କ କାନ୍ଧରେ ସଂଗ୍ରାମ ଲାଗି ଯେଉଁ ତୂଣୀର ଝୁଲୁଛି—ସେଥିରେ ବହୁ ପ୍ରାଚୀନ ଗୁଡ଼କର୍ମା ଦେବଦତ୍ତ ବିଶିଷ୍ଟ ଶରମାନ

ରହିଛି । ପାଶୁପତ ଠାରୁ ବ୍ରହ୍ମାସ୍ତ୍ରପାଏ । ସେ ଏତକରେ ହାରିଯିବେ କିପରି ? ସାମାନ୍ୟ ମାତ୍ର ବିଚଳିତ ନ ହୋଇ—ସେ ପୁଣି ପ୍ରଶ୍ନ କଲେ—

ଏ କବିତା ଲଳିତ ସତ, କିନ୍ତୁ ଏଥିରେ ମାଲ ମସଲା କାହିଁ ? ଅନୁପ୍ରାସ, ଜମକ, ଅବନା, ଶୃଙ୍ଖଳା ବନ୍ଧ, ଦତ୍ତଚ୍ୟୁତାକ୍ଷର, ସ୍ତବକିତ ଗୂଢ଼ ଅର୍ଥ, ଗୋମୂତ୍ର, ଅଜାଯୁଦ୍ଧ, ମେଷଯୁଦ୍ଧ—ଏସବୁ ନ ଥିଲେ ସେ କି କାବ୍ୟ ? ଆଜି ମଧ୍ୟ ସେ କି କବି ? ସେମିତି କଣ ଆମ ଗାଁ । ମାଇପେ ଶାଶୁ ଘରକୁ ଗଲବେଳକୁ ପଦ ଫାନ୍ଦି ବୋଲୁ ନାହାନ୍ତି କି ? "ଦୁବ ବଢ଼ୁଥିଲି କାକର ଖାଇ କି ବୋଉ ମୋର । ମୁଁ ତ ବଢ଼ୁଥିଲି ତୋ ସ୍ନେହ ପାଇକି ବୋଉ ମୋର !"

ଏ କଣ କାବ୍ୟ ? ନା' ଏଥିରେ କିଛି ପ୍ରୌଢ ଭାଷା କି ଭାବ ରହିଛି ? ଆମ ଗ୍ରନ୍ଥମାନଙ୍କରେ ଏମିତି ପଦସବୁ ରହିଛି—ଯେଉଁ ପଣ୍ଡିତ ହେଉ ତା' ଦାନ୍ତ ଝଡ଼ିଯିବ ।

ମୁଁ ସେଇଠୁ ଗୋଟାଏ ବାହାପିଆ ବାଣ ଛାଡ଼ି କହିଲି—ଆମ କବିବର ରାଧାନାଥ ରାୟ ଯାହାସବୁ ଲେଖିଛନ୍ତି—ତାର ଅବିକଳ ନକଲ କରିଛନ୍ତି ଇଂଲଣ୍ଡର ମହାକବି ଟେନିସନ୍—ଶୁଣନ୍ତୁ ! କବିବର ଲେଖିଛନ୍ତି ତାଙ୍କର ଚିଲିକା କାବ୍ୟରେ—

ହସିଖେଳି ସେହୁ ଗମନ୍ତି ସମୟୁ, ଜୀବନ ମଣନ୍ତି ମହୋତ୍ସବମୟୁ
ଛାର ଭାଗ୍ୟ ମୋର ବହିତ ପାଷାଣେ, ମୋ ଜୀବନ ଗଢ଼ା ଭିନ୍ନ ଉପାଦାନେ

ଠିକ୍ ଅବିକଳ ସେହି ଭାବକୁ ନେଇ ଇଂଲଣ୍ଡର କବି ଟେନିସନ କହୁଛନ୍ତି—

ସ୍ମାଇଲିଙ୍ଗ୍ ଦେ ଲିଭ୍ ଆଣ୍ଡ୍ କଲ୍ ଲାଇଫ ପ୍ଲେଜର
ବଟ୍ ଟୁ ମି ଦାଟ୍ କପ୍ ଇଜ୍ ଡେଲ୍ଟ ଇନ୍ ଆନାଦର ମେଜର ।

ଏତେକ ଖୁବ୍ ସାହେବୀ କାଇଦାରେ ଦାନ୍ତ ଚିପି ଚିପି ଆବୃତ୍ତି କରି ଦେଇ ମୁଁ ପୁଣି କହିଲି—ଇଂଲଣ୍ଡର ଆଜି ଜଣେ ମହାକବି, ମାନେ ଶ୍ରେଷ୍ଠ

ପୋଏଟ୍‌, ଆମର ଏଇ ଇଣ୍ଡିଆ ମାନେ ଭାରତବର୍ଷକୁ ଆସି ଜଙ୍ଗଲରେ ଟାଇଗର୍‌, ମାନେ ଏଇ ବାଘକୁ ଦେଖି ଗୋଟାଏ ଏକ୍‌ସଲେଣ୍ଟ କବିତା ଲେଖିଛନ୍ତି । ଶୁଣନ୍ତୁ ସେଇଟା—

ଟାଇଗର୍‌ ଟାଇଗର ବର୍ଣ୍ଣିଙ୍ଗ୍‌ ବ୍ରାଇଟ୍‌
ଇନ୍‌ ଦ ଫରେଷ୍ଟ, ଅଫ୍‌ ଦ ନାଇଟ୍‌
ହ୍ୱାଟ୍‌ ଇମୋର୍ଟାଲ ହାଣ୍ଡ ଆଣ୍ଡ ଆଇ
କୁଡ୍‌ ଫ୍ରେମ୍‌ ଦାଇ ଫିଅରଫୁଲ ସିମେଟ୍ରି ?

ଏଇ ପଦ କେତୋଟି ମୁଁ ଶିଖିଥିଲି—ଆମ ସ୍କୁଲର ପ୍ରଚଣ୍ଡ ଇଂରାଜୀ ଶିକ୍ଷକ ଶ୍ରୀଯୁକ୍ତ ବଳରାମ ରାୟ ବି: ଏ: ଙ୍: ଇଙ୍କ ଠାରୁ । ସେ ଜାତିରେ ଖାଣ୍ଟି ଓଡ଼ିଆ ଖଣ୍ଡାଏତ ଥିଲେ ବି ଭାବ, ଚିନ୍ତା ଓ ଭାଷାରେ ଥିଲେ ଖାଣ୍ଟି ଇଂରେଜୀ । ତାଙ୍କର ବି: ଏ:ରେ ଇଂରାଜୀ ଅନର୍ସ ଥିଲା—ଏବଂ ନେସ୍‌ ଫିଲଡ୍‌ ଗ୍ରାମାର ତାଙ୍କର ଆମୂଳଚୂଳ ମୁଖସ୍ଥ ଥିଲା । ସେମିତି ମଧ୍ୟ ସେକ୍‌ସ-ପିଅରଙ୍କର "ହାମ୍‌ଲେଟ" ଓ "ଜୁଲିଅସ ସିଜର"ର ମହା ମହା ବଚନିକା ସବୁ ଆବୃତ୍ତି କଲାବେଳେ ତାଙ୍କ ପାଟିରେ ବାଟୁଳି ବାଜୁ ନ ଥିଲା । ସେ ଓଡ଼ିଆ କବିମାନଙ୍କୁ ଆଦୌ ଖାତିର କରୁ ନ ଥିଲେ । ବରଂ କାଳିଦାସ, ମାଘ ପ୍ରଭୃତି ସଂସ୍କୃତ କବିମାନଙ୍କୁ ସେ ସମ୍ମାନ କରୁଥିଲେ । ତାଙ୍କ ମତରେ ରାଧାନାଥ ସବୁ ଇଂରେଜୀରୁ କପି କରିଛନ୍ତି ଓ ମଧୁସୂଦନ ଗଙ୍ଗାଧର ସବୁ କିଛି ସଂସ୍କୃତରୁ କପି କରିଛନ୍ତି । ରାଧାନାଥ କିପରି ସେଲିଙ୍କଠାରୁ କପି କରିଛନ୍ତି ତା'ର ନମୁନା ସେ ଆମକୁ ଜଣାଇଥିଲେ । ସେତକ ମୁଁ ମନେ ରଖିଥିଲି । ବର୍ତ୍ତମାନ ଏହି ବିପଦ ବେଳାରେ ମୁଁ ସେହି ବାହାପିଆ ଶରଟିକୁ ମିଶ୍ର ଅବଧାନଙ୍କ ଲାଗି ଦେଲି । ତା'ପରେ ଦେଖ ମଜା । ମୋ ଆବୃତ୍ତିରୁ ମୁଁ ଜାଣେ ସେ ଗ୍ରାମବାସୀ ବା ମୋ ଭଉଣୋଈ କିଛି ବୁଝି ପାରୁ ନଥିଲେ । ତଥାପି ଯେମିତି ଷ୍ଟାଇଲରେ ମୁଁ ଗଡ଼ ଗଡ଼ କରି ଇଂରେଜୀ ପଦଗୁଡ଼ିକ ହାଙ୍କି ଦେଇଗଲି, ତାହା ଶୁଣି ଅତ୍ୟନ୍ତ ଉତ୍ସାହ ଉନ୍ମାଦନାରେ ସମସ୍ତେ ତାଳିମାରି ହୋ ହୋ କରି ହସି ଉଠିଲେ । ଜଣେ କିଏ କହିଲା—ଆଉ ଯା' ଉପରେ ଆଉ କଥା ଅଛି ? ଇଂରେଜୀ ପଦ ଆଗରେ ଆଉ ଆମର ଏ ମରହଟ୍ଟୀ ପଦ କୁଆଡ଼ୁ ଠିଆ ହୋଇ ପାରିବ ? ଯେତେ ହେଲେ ସେ ହେଲା ରାଜବିଦ୍ୟା ! ମହାରାଣୀ ଭିକ୍ଟୋରିଆଙ୍କ ବିଦ୍ୟା ।

ମୁଁ ଦେଖିଲି— ସମସ୍ତ ଗ୍ରାମବାସୀ ଅଯଥାଙ୍କାରେ ଏବଂ ଅତ୍ୟନ୍ତ ନିଷ୍ଠୁର ଭାବେ ଏବଂ ନିତାନ୍ତ ଅକୃତଜ୍ଞ ଭାବେ ସେହି ପରମ ସମ୍ମାନନୀୟ ଯଥାର୍ଥ ଜ୍ଞାନୀ, ପଣ୍ଡିତ, ଚରିତ୍ରବନ୍ତ, ଏବଂ ଏହି ଅଜ୍ଞାତ ଗ୍ରାମବାସୀଙ୍କ ସମ୍ମୁଖରେ ଏକମାତ୍ର ମଶାଲଧାରୀ ମିଷ୍ଟର ଅବଧାନଙ୍କୁ ମନ ଭିତରୁ ପରିତ୍ୟାଗ କରି ମୋ ପିଛୁ ଧରିଲେଣି । ଏବଂ ସମସ୍ତେ ସଚେତକ ବହୁକାଳ ଧରି ଆପଣା ଆପଣା ମନ ଭିତରେ ଏହି ଗୋପନ ଅଭିଳାଷଟିକୁ ବହୁଦିନ ଧରି ପୋଷଣ କରି ଆସିଥିଲେ । ମୋ କାନରେ ମଧ୍ୟ ଆହୁରି ଦୁଇଜଣ ଗ୍ରାମ୍ୟ ଯୁବକଙ୍କ ଚୁପ୍‌ଚାପ୍ କଥା ଦି'ପଦ ପଡ଼ିଗଲା । ଜଣେ କହୁଥାଏ—ଶଳା ମରିହନ୍ତି ବୁଢାର ଗଉଁ ଜାଣ ଆଜି ଭାଙ୍ଗିଲା । ଶଳା ମୋ ପିଲାଦିନେ ମତେ ମାନସାଙ୍କ ଆସୁ ନଥିଲା ବୋଲି ପୋଉ ମାଡ଼ ମାରିଛି । ଆଜିଯାଏ ବି ମୋ ପିଠିରେ ସେ ଚିହ୍ନ ଅଛି ! ଶଳାଟାର ଆଖିକୁ ଦେଖନ୍ତୁ ନା ! ଯେମିତି ନିଆଁ ଭଳି ଜଳୁଛି । ଆଜି ଶଳାର ନିଶ ଉପାଡ଼ି ଦେବ ଏଇ ଇଂରେଜୀବାଲା ଟୋକା । ଶଳାଟା କାଲି ସକାଳ ନହେଉଣୁ ଏ ଗାଁ ଛାଡ଼ି ପଳେଇବ ।

ଆଉ ଜଣେ କହିଲା—କେତେମ ଜାଣ ସେ ଏ ଗାଁରେ କେତେ ବର୍ଷ ହେଲା ରହିଲାଣି ? ଗୃକଶି ବର୍ଷ । ଶଳା ଏଠି ଆମ ଗାଁରେ ଅଜାମ୍ର ହୋଇ ବସି ଆମ ବାପଅଜାଙ୍କୁ ପାଠ ପଢ଼ାଇ ଗୁଡ଼ିଲାଣି । ସେଥିପାଇଁ ସମସ୍ତଙ୍କୁ ଜାଣ ସେ ଡରେଇ କରି ରଖିଛି ।

ଆଉ ଜଣେ କହୁଥାଏ—କଉ, କି ପାଠ ସେ ଆମ ପିଲାଙ୍କୁ ପଢାଉଛି ତାର ସେ ପାଠ କଣ ଆଉ ଆଜିକାଲି ବୋଲି କରିବ ? ବିନା ଇଂରେଜୀ ବିଦ୍ୟା ନଜାଣିଲେ ଏଇ ଓଡ଼ାଂକ ଫେଡ଼ାଂକ କେଇଲି ଗୋଠି ଭାଷାରେ କଣ ଆମ ପିଲାଏ କିଛି କରି ପାରିବେ ? ସେଇଥି ପାଇଁ ପରା କଟକରେ ଜଗୁବାବୁ ହେଉକା ଆମ ଜିଲା ବୋର୍ଡ ଚେୟାରମ୍ୟାନ ପଧାନ ବାବୁଙ୍କୁ କହିଲେଣି ଆମ ଗାଁରେ ଗୋଟେ ଇସ୍କୁଲ ବସାଇବାକୁ । ଯେମିତି ନିଆଳୀ ଆଉ କସରଦା ଗାଁରେ ହୋଇଛି ।

ମୁଁ ସବୁ ଶୁଣୁଥାଏ । ମାତ୍ର କାହିଁକି କେଜାଣି, ମୋର ମନ ବଡ଼ କରୁଣ ହୋଇ ଉଠୁଥାଏ । ମୁଁ ଯେଉଁ ବାହାପିଆ ଆଉ ଉଦ୍ଧତ ସ୍ୱଭାବର

ହେଲେବ ସତକୁ ସତ ମୋର ହୃଦୟ ମିଳୁ ଅବଧାନଙ୍କ ପାଇଁ କରଣ ହୋଇ ଯାଉଥାଏ ଓ ଏଇ କୃତଘ୍ନ ଗ୍ରାମବାସୀଙ୍କ ଉପରେ ଖୁବ୍ ଘୃଣା ଆସୁଥାଏ । ଆଜ ଏତକରେ ନୂଆ ପୁରୁଣା ବା ଇଂଲଣ୍ଡ ଭାରତର ବିଦ୍ୟାବିବାଦ ଶେଷ ହେଉ ବୋଲି ମୁଁ ମନେ ମନେ ବାଞ୍ଛା କରୁଥାଏ ।

କିନ୍ତୁ ନିୟତିର ବିଧାନକୁ କିଏ ଲଙ୍ଘନ କରି ପାରିବ ? ତା'ଛଡ଼ା, ସୁପ୍ରତିଷ୍ଠିତ ବିଦ୍ୟାବିତ୍ ଅହଂକାରୀ ଶିକ୍ଷକ ବା ଗୁରୁବୃତ୍ତିଧାରୀ ବ୍ୟକ୍ତିମାନଂକର ଅନମନୀୟ ସ୍ୱଭାବକୁ ବା କିଏ ପରିବର୍ତ୍ତିତ କରି ପାରିବ ? ଉପନିଷଦ ଯଥାର୍ଥ କହିଛନ୍ତି—ଅନ୍ଧକାରକୁ ଆଶ୍ରୟ କରି ବଞ୍ଚୁଥିବା ଲୋକମାନେ ମୂଢ଼ । କିନ୍ତୁ କେବଳ ଆଲୋକକୁ ଆଶ୍ରାକରି ବଞ୍ଚୁଥିବା ଲୋକେ ମୂଢ଼ତର । ଅଜ୍ଞାନ ମଣିଷ ଗତି ମୁକ୍ତି ପାଇଯିବ । ମାତ୍ର ଘୋର ଜ୍ଞାନୀ ବଂକ୍ତିର ଆଉ ନିସ୍ତାର ନାହିଁ ।

ମିଳୁ ଅବଧାନ ଏତେ ସହଜରେ ଏଇ ଦି' ପଦ ଇଂରେଜୀ ହାଙ୍କୁଥିବା ଅଧା ପାଠୁଆ ଅଜାତଶ୍ମଶ୍ରୁ (ମୋର କିନ୍ତୁ ସେତେବେଳକୁ ନିଶ ଉଠି ସାଇଥିଲି ଓ ମୁଁ ପ୍ରଜାପତିଆ ନିଶ ରଖିଥିଲି) ଗ୍ରେକ୍ବାଟା ପାଖରେ ହାରିଯିବା ଲୋକ ନୁହନ୍ତି । ତାଙ୍କ ମୁହଁ ଖୁବ୍ କଠୋର ଦେଖାଗଲା ତାଙ୍କ କପାଳର ଶିରା ଗୁଡ଼ିକ ଫୁଲି ଉଠିଲା । ତାଙ୍କ ଆଖି ଦୁଇଟା ଜଳି ଉଠିଲା । ସେ ଥରେ ତାଙ୍କର ଚୁଟିକ ଫିଟାଇ ଦେଇ ପୁଣି ସାଙ୍ଗେ ସଙ୍ଗେ ବାନ୍ଧି ପକାଇଲେ । ତା'ପରେ ତାଙ୍କ ବଟୁଆଟିକୁ କାନ୍ଧରୁ କାଢି ତଳେ ଧୁମ୍ କିନା ଥୋଇ ଦେଲେ । ସେଇଠୁ ମୋ ଆଡକୁ ଗାରେଡ଼େଇ ଚାହିଁ ପଚାରିଲେ—

ଗଣିତ ବିଦ୍ୟା କିଛି ଜାଣିଅଛୁ ?

ପ୍ରଥମେ ଏତେକ ଶୁଣୁ ଶୁଣୁ ମୋର ହାଲକ ଶୁଖିଗଲା । ମତେ ପରିସ୍ତା ଲାଗିଲା । ମାତ୍ର ମୁଁ ସାଙ୍ଗେ ସାଙ୍ଗେ ସାହସ ଫେରାଇ ଆଣିଲି । ମୁଁ କଣ ବର୍ତ୍ତମାନ ସେଇ ଗାଁ ମାଇନର ସ୍କୁଲର ଷଷ୍ଠ ଶ୍ରେଣୀର ସେଇ ତୃତୀୟ ନମ୍ବର ଗାଧା ହୋଇଛି କି ? ମତେ ଏ କଣ କରି ପାଉଛନ୍ତି କି ? ଦଉଛି ଧରି ଆଉଣି ପାରେ, ଉହାରେ ବୁଢ଼ା ! ମତେ ଅଙ୍କ ପଚାରିବୁ ? ମୋ ମନରେ ଗୋଟାଏ ବୀର ରସର ବଚନିକା ଚାଲିଥାଏ—ଦେଖ ! ମୁଁ ସବୁ ସହିବି— ମାତ୍ର ମତେ ମୋର ଭଣେଇ ଗାଁରେ ଅଙ୍କ ପଚାରି ଯେ ଅପଦସ୍ତ କରିବାକୁ ଚାହିଁବ— ମୁଁ ତାକୁ କଦାପି ଷମାକରି ପାରିବି ନାହିଁ । ନିଶ୍ଚୟ ତା'କୁ ଘାଏଲ କରି

ଘୁଞ୍ଚବ । ଆଜ ତାର ରକ୍ଷା ନାହିଁ । ସ୍ୱୟଂ ଗଜାନନ କି ସରସ୍ୱତୀ ଆସି ତାଙ୍କୁ ସାହାଯ୍ୟ କଲେବି ମୁଁ ତାଙ୍କୁ ଟିକେ ନକରି ଛାଡ଼ିବି ନାହିଁ ।

ମୋ ଉତ୍ତର ନରମ ସ୍ୱର ନମିଷକେ କଟିଗଲା । ମୁଁ ସମବେତ ଗ୍ରାମବାସୀଙ୍କ ଆଡ଼କୁ ଚାହିଁ ଦେଖିଲି ଯେ ସମସ୍ତେ ଚୁପ୍ ଚାପ୍ ହୋଇ ଯାଇ ପ୍ରମାଦ ଗଣୁଛନ୍ତି । ମୋ ଭଉଣୀଇ ଭାଉଜରେ ପଥର ପାଲଟି ଗଲେଣି । ତାଙ୍କର ଆଶଙ୍କା ଯେ ମୁଁ ଏଇଥରକ ମିଶ୍ର ଅବଧାନ ହାତରେ ପରାସ୍ତ ହୋଇ ଅଧୋ ମୁଖ ହୋଇ ବସିବି— ଓ ଲଜ୍ଜା ଜାକ କାଲି ସକାଳୁ ମୋର ଅପାରଗତାର ବୁଜୁଳି କାନ୍ଧେଇ ପଥପଥର ପିତୃଗୃହକୁ ଚାଲିଯିବି ଓ ଆଉ ବନେବ ଏ ଅଯୋଧ୍ୟାର ବାରମାଟି ମାଡ଼ିବ ନାହିଁ । ଏବଂ ମୋର ଏ ଅପମାନରେ ସେ ଆଜ ଏ ଗାଁରେ ମୁଣ୍ଡ ଟେକ ବାଟ ଚାଲି ପାରିବେ ନାହିଁ । ମୋର ଭଉଣୀଇଙ୍କ ଆତଙ୍କଗ୍ରସ୍ତ ମୁହଁ ଏବଂ ଆକୁଳ ବ୍ୟାକୁଳ ଗୃହିଣୀ ମୋର ହୃଦୟକୁ ଖୁବ୍ ଆଘାତ କଲା । ମୁଁ ମିଶ୍ର ଅବଧାନଙ୍କ ଆଡ଼କୁ ଚାହିଁ ଖୁବ୍ ଗମ୍ଭୀର ଗଳାରେ କହିଲି—

ଆମେତ ଏରିଥ୍ ମେଟିକ୍,ମାନେ ପାଟୀ ଗଣିତ, ଆଲଜେବ୍ରା, ମାନେ ବୀଜଗଣିତ ଓ ଜିଓମେଟ୍ରି, ମାନେ ଜ୍ୟାମିତି ପଢ଼ୁଛୁ । କଣ ପଚାରିବେ ଆପଣ ପଚାରନ୍ତୁ ।

ମିଶ୍ର ଅବଧାନେ ସାମାନ୍ୟ ତାଚ୍ଛଲ୍ୟ ମିଶ୍ରିତ ବାକ୍ୟରେ ଘୋର ଅହମିକାଗ୍ରସ୍ତ କ୍ରୋଧାସାପୂର୍ଣ୍ଣ ପଣ୍ଡିତ ସୁଲଭ ବିନୟ ଦେଖାଇ କହିଲେ— ସେତ ଆପଣ ନାନାଦି ବିଦ୍ୟା ସାଧୁଛ ! ସେ ସବୁ ଫିରିଙ୍ଗି ଘର ପାଠ । ଆମେ ହେଲୁ ଗାଉଁଲି ମୂର୍ଖ—ମରହଟ୍ଟି । ଆମକୁ କିବା ଜ୍ଞାତବ୍ୟ ଅଛି ? ତେବେ ବିଦ୍ୟା ଅବିଦ୍ୟା ବୋଲି ଦୁଇଟା କଥା ଅଛି । ଦେବଗଣଙ୍କର ବିଦ୍ୟା ଅସୁରଙ୍କର ଅବିଦ୍ୟା । ଫିରିଙ୍ଗି ତା' ଆସୁରୀମାୟା ବିଦ୍ୟା ବଳରେ ଆକାଶରେ ବେମ୍ ଯାନ୍ ଉଡ଼ାଉଛି । ହେଲେ, ଆମର ଏ ମରହଟ୍ଟୀ ବିଦ୍ୟାକୁ କେହି ସରି ନୁହଁ । ଏ ହେଲା କୃଷିଘର ବିଦ୍ୟା । ବିନା ଯନ୍ତ୍ରରେ ଖାଲି ସୂତ୍ର ଆଉ ମନ୍ତ୍ର ବଳରେ ଏ ବିଦ୍ୟା କାମ ଦେଖେଇବ । ଉଡ଼ିଗଲା ଚଢ଼େଇର ପର ଗଣିଦବ, ଏ ବିଦ୍ୟାରେ ଏମିତି କମତ ରହିଛି । ଆଚ୍ଛା, ମୁଁ ଗୋଟାଏ ଲୀଳାବତୀ ସୂତ୍ରରୁ ଖଣ୍ଡିଏ ଛୋଟିଆ କରି ଗଣିତ ପଚାରୁଛି—କହିଲ ଦେଖି— ଜାଣିବା କେମିତି ବିଦ୍ୟା ସାଧୁଛ ।

ମୁଁ ବୁଝିଲି ଯେ, ଏଥର ବୃଦ୍ଧା ଅବଧାନ ତା'ର ଶେଷ ଅସ୍ତ୍ର ପାଶୁପତ ଛାଡ଼ୁଛନ୍ତି ନିଶ୍ଚୟ । ଆସ୍ତ—ଦେଖାଯାଉ— ମୋ ବାହାପିଆ ତୂଣୀର ଭିତରୁ ମୋତେ ମଧ୍ୟ ସେ ଅସ୍ତ୍ରକୁ କାଟିବା ଲାଗି ବ୍ରହ୍ମାସ୍ତ୍ରଟି ଖୋଜି ବାହାର କରିବାକୁ ପଡ଼ିବ । ମୁଁ ନିର୍ଭିକ ନିଃଶଙ୍କ ଭାବେ କହିଲି—ଶୀଘ୍ର ପଚାରନ୍ତୁ । ଟାଇମ୍ ବହୁତ ଲେଟ୍ ହୋଇ ଗଲାଣି । ମୁଁ ଘର ଟାସ୍ପୋର୍ଟ ଫେଲ୍ କରୁଛି ।

ମୋର ଏଇ ଇଂରାଜୀମିଶା ବାକ୍ୟଟି ଶୁଣିବା ମାତ୍ରେ ଗ୍ରାମବାସୀମାନେ କିଛି ନବୁଝି ଖୁବ୍ ଆହ୍ଲାଦିତ ହେଲେ । ସମସ୍ତେ ପୁଣି ମୋ ବିଷୟରେ ଉତ୍ସାହିତ ହୋଇ ସମସ୍ୱରରେ କହିଲେ—ହଉ ପଚାରନ୍ତୁ ଆଜ୍ଞା । ଶେଷ ପରୀକ୍ଷାଟା ହୋଇଯାଉ ।

ମିଶ୍ର ଅବଧାନେ ଖୁବ୍ ଧୀରସ୍ଥିର ଗମ୍ଭୀର ଓ ଦୃଢ଼ ଅବ୍ୟର୍ଥ ଲକ୍ଷ୍ୟରେ ତାଙ୍କର ପାଶୁପତ ଅସ୍ତ୍ରଟି ମୋ ଉପରକୁ ଛାଡ଼ିଲେ । ଗଣିତ ପ୍ରଶ୍ନଟିକୁ ସେ ଗୋଟିଏ ପଦ୍ୟ ବୋଲିବା ଭଳି ପଚାରିଲେ । ତାହା ମୋତେ କମ୍ପୃତ ଓ ଦୁର୍ବୋଧ ଶୁଣାଗଲା । ତାହା ବର୍ତ୍ତମାନ ପୁରାପୁରି ମୋର ମନେ ନାହିଁ । କିନ୍ତୁ ଯେତିକି ଯେପରି ମନେଅଛି— ମିଶା ମିଶି କରି ତାହା ମୁଁ କହୁଛି— ତାଙ୍କର ପ୍ରଶ୍ନଟି ହେଲା—

ଗଜାନନ ପଚାରନ୍ତି ଷଡ଼ାନନ ଭାଇ
ଗଣିତରୁ ସୂତ୍ରଟିଏ ପଚାରୁଛି ମୁହିଁ ।
ନିଜ ଯୋଜନରେ ହଂସ ଯାଉଅଛି ଉଡ଼ି
ନବତାଳ ଗଭୀରରେ ରହିଛି ପୋଖରୀ ।
ତୃଷାରେ ଆତୁର ହୋଇ ସେହି ପକ୍ଷୀମଣି
ତଳକୁ ଖସିଲା ବେଗେ ସ୍ମରି ଚକ୍ରପାଣି ।
ମଧ୍ୟରେ ଖସିଲା ହଂସ ଦୁଇ ପରିତାଳ
ଏ ସମୟେ ଦେଖି ତାକୁ ଗୋଡ଼ାଏ ବେତାଳ ।
ଲିତାକେ ଖସଇ ହଂସ ଏକଇ ଯୋଜନ
ବିଳିତାକେ ସେ ବେତାଳ କରେ ସଂକ୍ରମଣ ।
ଷାଠିଏ ଯୋଜନେ ତାକୁ ବେତାଳ ଧଇଲା
ହାହା ହାହା ବୋଲି ହଂସ ବୋବାଳି ଛାଡ଼ିଲା ।
ଏହିଠାରେ ସନ୍ଧି ଗୋଟି ପୁଚ୍ଛଇ ତୁମ୍ଭଙ୍କୁ

କେତେ ଲତା କାନ୍ଦନ୍ତି ଲାଗିଲ୍ ବେତାଳକୁ ?
କେତେର ନାଳ ତଳେ ପୁଣି ଥିଲନ୍ତି ପୋଖରୀ ?
କହ୍ନଦଅ ଷଣ୍ଡାକନ ମନେ ହେଉଛୁ କଣ ।
ଏମରକ କହ୍ନଲେ ଅମ୍ଭ ସଙ୍ଗେ ସଣ ହେବ
ଚଣ୍ଡିର ପଣେ ମୁଣ୍ଡର ଶିରପା ବାନ୍ଧବ ।
ନ କହ୍ନ ପାରବ ଯଦ ତଡ଼ିଣ ମପୂର
କଇଲାସ ତେଜ ବ୍ଲଲ ଯାଅ ହେ ସନ୍ତୁର ।

ଏତେକ ବୋଲି ଦେଇ ମିଛୁ ଅବଧାନେ ହାତରେ ତାଳ ଛୁଡ଼ାଇଲ ଭଳ ଫଟ୍‌କନା ଗୋଟାଏ ତାଳ ମାରି ଦେଲେ ଓ ସାଙ୍ଗେ ସାଙ୍ଗେ ଅଟ୍ଟହାସ କରି ଉଠିଲେ । ଏବଂ ଭାବିଲେ ଯେ ଏଥର ଅପରେ ଏଥି ନା' ବାଳକ ଲେଲକ୍‌ରଟାର ବକ୍ଷସ୍ଥଳ ଏକ ଥରକେ ଶତଧା ବିଦୀର୍ଣ୍ଣ ହୋଇଯିବ ଏବଂ ସେ ତାର ଇଷ୍ଟସ୍ମରଣ କରିବା ପୂର୍ବରୁ ଶେଷ ନିଃଶ୍ୱାସ ତ୍ୟାଗ କରି ଭୂମି ଉପରେ ଟଳି ପଡ଼ିବ ।

ସେ ଅବଶ୍ୟ ଭୁଲ ଭାବି ନାହାନ୍ତି । ଏଥି ମହା ଜଟୀଳ ରହସ୍ୟମୟ ରାଣିତକ ଚିନ୍ତା ସମ୍ବନ୍ଧୀୟ ପଦ୍ୟଟିକୁ ଶୁଣିବା ମାତ୍ରେ ପ୍ରଥମେ ମୋର ମୁଣ୍ଡ ଘୂରିଇ ଦେଲା । କ'ଣ ଯାର ଅର୍ଥ ? କି ପ୍ରକାର ଅଙ୍କ ଏ ? ତା' ଛଡ଼ା, ପରିସ୍ଥିତି ମଧ୍ୟ ବର୍ତ୍ତମାନ ଖୁବ୍ ସଂକଟମୟ । ମୋର ଭିଣୋଇଙ୍କ ମୁହଁ ଝାଉଁଳେଇ ଗଲଣି । ଗ୍ରାମବାସୀଏ ତଟସ୍ଥ ହୋଇ ବସିଛନ୍ତି । ମାସ୍ତ୍ରାଧର ଟେରେଇ କରି ମୋତେ ଏକାଲୟରେ ଚାହିଁଛୁ ଓ ଆମ ଗ୍ରାମଦେବତା କୁତାମଚଣ୍ଡୀଙ୍କୁ ମନେ ମନେ ଡାକୁଛୁ । ମିଛୁ ଅବଧାନେ କନ୍ଥା ପ୍ରଶ୍ନଟି ପଚାରି ସାରି ଖଣ୍ଡିଏ ପାନକୁ ଚୁକୁଲାଇ ଚୁକୁଲାଇ ଖାଉଛନ୍ତି ଓ ଦୋହଲି ଦୋହଲି ମୋର ଛଟପଟ ଅବସ୍ଥା ଦେଖିବା ଲାଗି ପ୍ରସ୍ତୁତ ହେଉଛନ୍ତି ।

ହଠାତ୍ ମୁଁ ମୋ ଭିଣୋଇଙ୍କୁ କହିଲି—ଭାଇନା ! ତିନଟା ସିଲଟ୍ ଓ ଖଡ଼ୀ ଆଣ ।

ଭିଣୋଇ ଖୁବ ବେଗରେ ଉଠି ଯାଇ ସଙ୍ଗେ ସଙ୍ଗେ ତିନୋଟି ବିଶାଳ ସିଲଟ୍ ଓ ଖଡ଼ୀଟିଏ ଆଣି ମୋ ଆଗରେ ଥୋଇ ଦେଲେ । ମୁଁ ସେଥିରୁ ଗୋଟିଏ ସିଲଟ ଓ ଖଡ଼ୀ ମିଛୁ ଅବଧାନଙ୍କ ଆଡ଼କୁ ବଢ଼ାଇ ଦେଇ ଖୁବ୍

ଭଙ୍ଗୀର ଅଥଚ ପ୍ରତ୍ୟୟଶୀଳ ଗଳାରେ କହିଲେ—ଦୟା କରି ପ୍ରଶ୍ନଟି ଲେଖି ଦିଅନ୍ତୁ ।

ମାଷ୍ଟ୍ରେ ତାଙ୍କ ଚକ୍ଷମାଟି ବାହାର କରି ଆଖିରେ ଦେଲେ ଓ ବଡ଼ ଆଡ଼ମ୍ବରରେ ହସି ହସି ପ୍ରଶ୍ନଟିକୁ ସିଲଟରେ ଲେଖି ମତେ ଦେଇ ଦେଲେ । ତା’ ପରେ ମୁଁ ସେଇ ପ୍ରଶ୍ନଟିକୁ ଖୁବ୍ ମନ ଧ୍ୟାନ ଦେଇ ପଢ଼ିଲି । ପାଞ୍ଚ ମିନଟ ବିତିଗଲା । ଘର ଭିତରେ ସମସ୍ତେ ଚୁପ୍‌ଚାପ୍ ବସିଥାନ୍ତି । ଏତେ ନିସ୍ତବ୍ଧ ଯେ ପତରଟାଏ ଖସି ପଡ଼ିଲେ ବି ଶବ୍ଦ ଶୁଭିବ । ତା’ ପରେ ମୁଁ ଖୁବ୍ ଗମ୍ଭୀର ହୋଇ ଖଡ଼ୀ ଓ ଅନ୍ୟ ଏକ ସିଲଟ ଧରି କେତୋଟି ଜ୍ୟାମିତିକ ଦୁର୍ବୋଧ୍ୟ ରେଖା କାଟିଲି । ସେଇଠୁ ପ୍ରାୟ ପନ୍ଦର ମିନଟ୍ ଧରି ବୀଜଗଣିତରେ ସୂତ୍ରଗୁଡ଼ିକୁ ମିଛି ମିଛି ଅର୍ଥହୀନ ଭାବେ ଦେଖି ଚାଲିଲି । ଯଥା—

ଏ ସ୍କୋୟାର + ବି କ୍ୟୁବ୍ + {ଏ, ବି ସ୍କୋୟାର − ଫୋର ଏ, ବି} × ସି କ୍ୟୁବ୍

(ଏ ସ୍କୋୟାର / ବି କ୍ୟୁବ୍ + ଥ୍ରି ଏ ବି − ଏ କ୍ୟୁବ୍ ବି ସ୍କୋୟାର) ଥ୍ରି = ଥ୍ରି ଏ ବି ସ୍କୋୟାର ।

ଏମିତି ଏମିତି ଦୁଇଟି ସିଲଟରେ ୪ ପଟଯାକ ନିରର୍ଥକ ଭାବେ ଲେଖି ଚାଲିଥାଏ ଓ ମଝି ମଝିରେ ପୁଣି ଗୁମ୍ ହୋଇ ବସି ଚିବୁକରେ ଖଡ଼ୀଟି ଚାପି କ’ଣ ସେପରି ଭାବୁଥାଏ । ସେଇଠୁ ଲେଖିଥିବା ଅଙ୍କରୁ କିଛି ଲିଭାଇ ଫେର କ’ଣ ମନେ ମନେ ହିସାବ କରି ଲେଖୁଥାଏ । ଏମିତି ଏମିତି ପନ୍ଦର ମିନଟ୍ କଟିଗଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ବସି ରହିଥାନ୍ତି । ମୋ ଭଉଣୀଙ୍କ ଦେହ ଝାଳରେ ଓଦା ହୋଇଯାଏ । ମାଷ୍ଟ୍ରର ଆତଙ୍କରେ ଆଉ ଧୈର୍ଯ୍ୟ ଧରି ନ ପାରି ସେ ଘର ଛାଡ଼ି ବାହାରକୁ ଉଠିଗଲେ । ମୁଁ କିନ୍ତୁ ଖୁବ୍ ଗମ୍ଭୀର ଆଉ ଧ୍ୟାନଶୀଳ ହୋଇ ମିଛି ମିଛି ଅଙ୍କ କଷି ଚାଲିଥାଏ । ମିଷ୍ଟ୍ରେ ଅବଧାନେ ହସି ହସି ପାନ ପାକୁଳି କରି ଆତ୍ମ ପ୍ରସାଦରେ ଝୁଲି ଝୁଲି ମୋ ଆଡ଼କୁ ଚାହିଁଥାନ୍ତି ।

ଏହି ସମୟରେ ମୁଁ ସେ ଅଙ୍କଟିର ଉତ୍ତର ପାଇଗଲି ବୋଲି ଛଳନା କରି ସିଲଟ ଉପରେ ଗୋଟାଏ ଅର୍ଥହୀନ ବୀଜଗଣିତ ସୂତ୍ର ଲେଖି ସିଲଟ ତଳେ ଥୋଇ ଦେଇ କହିଲି—ବେତାଳକୁ ଲାଗିଲା ଏ ପ୍ଲସ୍ ବି ହୋଲ୍ ସ୍କୋୟାର ସମୟ । ଆଉ, ପୋଖରୀଟି ଥିଲା ଏକ୍ସ ମାଇନସ୍ ୱାଇ କ୍ୟୁବ୍ ବାଟ ଦୂର ।

ମୋ କଥା ଶୁଣୁ ଶୁଣୁ ସଭାରେ କରତାଳି ପରେ କରତାଳି ଚାଲିଲା । ଯୁବକ ଗ୍ରାମବାସୀମାନେ ମହା ଉଲ୍ଲାସରେ ବସିବା ଜାଗାରୁ ଉଠି ଆସି ସେଇ ଅର୍ଦ୍ଧଜ୍ଞାନ ଲେଖାରେ ପୂର୍ଣ୍ଣ ସିଲଟ ଦୁଇଟିକୁ ନେଇ ଆଶ୍ଚର୍ଯ୍ୟ ହୋଇ ଦେଖ ଲାଗିଲେ ।

ମୋ ଭଣୋଇ ହସି ହସି ଗଡ଼ିଗଲେ । ଏବଂ ସମବେତ ଗ୍ରାମ ବାସୀଙ୍କ ଭିତରୁ ଜଣେ ଖୁବ୍ ବଡ଼ ପାଟିରେ କହି ଉଠିଲା—ଏ ଥରକ କଏ କୈଳାସ ଗୁଡ଼ ଦିବ, ବର୍ତ୍ତମାନ ଯାଉ । ··· ଆଉ ପାଠ ଏଠି ବୋଲ କଣବ ନାହିଁ··· ତୁମ କାଳ ପୂରିଗଲା ଆପଣେ । ଏଣିକ ନଜ ବାଟ ଦେଖ । ଆମ ପିଲାଏ ଏଣିକ ଇଂରେଜୀ ପଢ଼ିବେ ।

କଲୁ ମିଶ୍ର ଅବଧାନଙ୍କ ଆଖି ଦୁଇଟା ପଦାକୁ ବାହାରି ଆସିଲା । ସେ ଖୁବ୍ ଉଚ୍ଚ ସ୍ୱରରେ କହିଲେ—କ'ଣ ଉତ୍ତର ଦେଲ-ବାବୁ ଟିକେ ଓଡ଼ିଆରେ କୁହ । ଆମେ ତ ହେଲୁ ଗାଉଁଲି ମରହଟିଆ ଲୋକ । ଫିରଙ୍ଗୀ ପାଠରେ ଉତ୍ତର ଦେଲେ ଆମେ କ'ଣ ବୁଝିବୁ ?

ତାଙ୍କ କଥା ଶୁଣି ମୁଁ କହିଲି—ଆଜ୍ଞା ! ଆମେ ତ ସବୁ ବିଦ୍ୟା ଇଂରେଜୀରେ ପଢ଼ୁଛୁ । ଓଡ଼ିଆରେ କେମିତି ଉତ୍ତର ଦେବି । ଆମ ଅଙ୍କ ବି ଇଂରାଜୀରେ ପଢ଼ା ହେଉଛି । ଆପଣଙ୍କ ପ୍ରଶ୍ନରେ ଅଲ୍‌ଜେବ୍ରା, ଟ୍ରିଗୋନ୍‌ମେଟ୍ରି ଆଉ ମେନ୍‌ସୁରେସନ୍ ରହିଛି । ମୁଁ ଆଲଜେବ୍ରାକୁ ଆଣି ସବୁଟିକୁ ଛନ୍ଦେଇ କଷି ଦେଇ ସେଇ ଆଲଜେବ୍ରାରେ ଉତ୍ତର ଦେଲି । ଆପଣ ନ ବୁଝିଲେ ମୁଁ କଣ କରିବି ?

ମାଷ୍ଟ୍ରେ ହଠାତ୍ ମଳିନ ପଡ଼ିଗଲେ । ତାଙ୍କ ସ୍ୱର ସ୍ତିମିତ ହୋଇଗଲା । ସେ କହିଲେ—ଆଲେଜୋବ୍ରାଟି କଣ ?

ମୁଁ କହିଲି—ବୀଜ ଗଣିତ ବୋଲି ଓଡ଼ିଆରେ କୁହା ଯାଉଛି ।

ଏହି ସମୟରେ ମୋର ଭଣୋଇ ଖୁବ୍ ଜୋର ପାଟିରେ ଗଡ଼ ଜିତିଲା ଭଳି କହିଲେ—ଆଜ୍ଞା ! ଆପଣ ଗଣିତରୁ ପଚାରିଲେ—ସେ ତାକୁ ବୀଜ ଗଣିତରୁ କହିଲା । ଏଇଥିରୁ ବୁଝି ପାରୁ ନାହାନ୍ତି ଯେ ଆଉ ପୁଣି ପାଟି ଫିଟାଉଛନ୍ତି ?

ମୋ ଭଣୋଇଙ୍କ କଥା ଶୁଣି ତାଙ୍କୁ ସମର୍ଥନ ଜଣାଇ ଆଉ ଜଣେ ପ୍ରୌଢ଼ ଗ୍ରାମବାସୀ କହିଲେ—ଆହେ ! ସେ ଗଣିତ ହେଲେ—ଏ ହେଲା

ବୀଜ ଗଣିତ । ସବୁ ଗଣିତ ବିଦ୍ୟାର ବୀଜାଙ୍ଗୀ ଜାଣ ସେଥିରେ ରହିଛି । ଫିରଙ୍ଗୀ ବିଦ୍ୟାରେ ସେମିତି ସବୁ ବୀଜାଙ୍ଗୀତକ ରହିଛି ବୋଲି ସିନା ସେ ଆଜି ଆକାଶରେ ବେମ୍ ଯାନ ଉଡାଉଛି । ବାଘବନ୍ଦୀଙ୍କୁ ଏକ୍ କରି ଏକ୍ ଘାଟରେ ପାଣି ପିଆଉଛି !!! ସେ କଥା ବୁଝିଲେ ହବ ନା ଖାଲି ଏବେ ଘଉଁ ଘଉଁ ମେଣ୍ଢାଙ୍କ ଭଳିଆ ହୋଇଲି କଣ ହେବ ? ତେମେ ଦେଖନ୍ତୁ । ମାଷ୍ଟ୍ରେ କେତେ ବଡ ଅଙ୍କ ପଗ୍ରରିଲେ । ଅଜ୍ଞ ଏ ତାକୁ କେତେ ସରଳରେ ବୀଜାଙ୍ଗୀ କରି ତା' ଉତ୍ତର ଥୋଇ ଦେଲେ । ଏଇଥିରୁ ବୁଝନ୍ତୁ ।

ସମବେତ ସମସ୍ତେ ସେଇ କଥାରେ ସମର୍ଥନ ଜଣାଇ ମୋର ବିଜୟ ଏବଂ ମିଛୁ ଅବଧାନଙ୍କ ପରାଜୟ ଘୋଷଣା କରି ଉଠିଲେ । ଏବଂ ଗଲା-ବେଳେ ସମସ୍ତେ ମୋ ଭଳି ଇଂରେଜୀ ପଢୁଆ ବିଦ୍ୱାନଙ୍କୁ ନମସ୍କାର ଜଣାଇଲେ । କେହି ମିଛୁ ଅବଧାନଙ୍କ ଆଡକୁ ଗ୍ରହିଁଲେବ ନାହିଁ । ବରଂ ଜଣେ ଦି'ଜଣ ମାଷ୍ଟ୍ରଙ୍କୁ ଶୁଣାଇ ଶୁଣାଇ କହିଗଲେ –,

ଏଥର ପେଡ଼ ପୋଟଳା ବାନ୍ଧି ନିଜ ଗାଁକୁ ବାହାରି ଯାଅ ଅବଧାନେ ଆଉ ଗ୍ରହାଳୀ ପାଠ ଏ ଗାଁରେ ଚଳିବ ନାହିଁ । ଏଣିକି ଇଂରେଜୀ ସ୍କୁଲ ବସିବ ଏଠି ।

ଆଉ ଜଣେ କହି କହି ଗଲା— ଆଜି ଏ ଘଟଣା ପରେ ସେ ବୁଢା ଆଉ ଏ ଗାଁରେ ରହିବ ତେମେ ଭାବୁଛ କକେଇ ? କାଲି ସକାଳୁ ସେ ପନ୍ଥି କନାପଟା ବାନ୍ଧି ସମସ୍ତଙ୍କ ଉଠିବା ଆଗରୁ ତା' ଗାଁକୁ ନପଳେଇଛି !!

ଆଉ ଜଣେ କହିବାରି ଶୁଣାଗଲା— ଶଳା ବୁଢାର ଚୂଟିକାଟି ବିଦା କରୁନ ଏ ଗାଁରୁ ?

ଏ ସବୁ କଥା ମୋ କାନରେ ପଡୁଥାଏ । ସମସ୍ତେ ଯେ ଯୁଆଡେ ଗଲାପରେ—ମିଛୁ ଅବଧାନେ ବାଡ଼ି ଖଣ୍ଡିକ ଧରି ଆଉ କାହାକୁ କିଛି ନକହି, ଏପରି କି ଆମମାନଙ୍କ ଠାରୁ ବି ବିଦାୟ ନନେଇ ଚାଲକୁ ମୁହଁ ପୋଡି ପୋଡି କଠାଉ ଠକ ଠକ କରି ନିଜ ବସା ଆଡକୁ ଏକୁଟିଆ ଗ୍ରଲିଲେ ।

ମୁଁ ଭାବିଲି—କିଛି ବାଟ ତାଙ୍କୁ ବଳେଇ ଦେଇ ନମସ୍କାର କରି ବିଦାୟ ନେଇ ଆସିବି । ମାତ୍ର ସେ କଥା କରିବାକୁ ମୋର ଆଉ ମନରେ ସତ୍ ସାହସ ହେଲି ନାହିଁ— କି ସତ୍ ପ୍ରେରଣା ବି ହେଲା ନାହିଁ ।

ମୁଁ ବାହାପିଆ ସେଦିନ ରାତିରେ ମୋର ଭଉଣୋଇଙ୍କ ଘରେ ମୋ

ସାଙ୍ଗ ମାୟାଧର ସହିତ ଗଛମୂଳରେ ଖୋଲ ଓ ଗଛ ଖାଇ ମହା ଆରାମରେ ଶୋଇଲି । ମୋ ଭଉଣୀଇଙ୍କ ଏହି ଆନନ୍ଦରେ ଏତେ ଉତ୍ଫୁଲ୍ଲ ହୋଇ ଯାଇଥାନ୍ତି ଯେ ତାଙ୍କ ପେଟକୁ ଭାତଗଲା ନାହିଁ—କି ରାତିଯାକ ତାଙ୍କ ଆଖିକୁ ନିଦ ହେଲାନାହିଁ ।

ତା' ପରଦିନ ମିଶ୍ର ଅବଧାନେ ସେ ଗାଁ ଛାଡ଼ି ଚାଲିଗଲେ କି ନାହିଁ —ମୁଁ ଆଉ ଜାଣିନି— କିନ୍ତୁ ବଡ଼ ମହାଜନ ଦେଖିବା ଆଗରୁ ମାୟାଧର ଓ ମୁଁ ସେ ଗାଁ ଛାଡ଼ି ଆମ ଗାଁକୁ ଫେରି ଆସିଲୁ ।

କାଳ ସ୍ରୋତରେ ଚାଳିଶିଟି ବର୍ଷ ସେଇଦିନୁଁ ବିତିଗଲାଣି । ଏହା ଭିତରେ ମିଶ୍ର ଅବଧାନଙ୍କ ସ୍ମୃତି ଏ ପୃଥିବୀରୁ ଲୋପ ପାଇ ଗଲାଣି । ମୋ ଭଉଣୀଙ୍କ ଗାଁର ବର୍ତ୍ତମାନ ଅଧିବାସୀମାନେ କେହି ଆଉ ସେହି ମହାନ୍ ବ୍ୟକ୍ତିର କଥା ମନେ ରଖି ନଥିବେ । ମୋ ଭଉଣୀଙ୍କ ଗ୍ରାମରେ ବର୍ତ୍ତମାନ ଗୋଟିଏ ହାଇ ସ୍କୁଲ ଏବଂ ଗୋଟିଏ ଗାର୍ଲ୍ସ ହାଇସ୍କୁଲ । ଏବେ କୁଆଡେ ଗୋଟିଏ କଲେଜ ନୂଆ କରି ସ୍ଥାପିତ ହୋଇଛି ।

ମୁଁ ଜାଣେ—ସେହି ମହାପ୍ରବୀଣ ମହାଜ୍ଞାନୀ ମହା ଚରିତ୍ରବାନ୍ ମହା-ନୈଷ୍ଠିକ ଓ ମହା ଅଭିମାନୀ ପୂଜ୍ୟପାଦ ଗ୍ରାମ୍ୟ ଶିକ୍ଷକ ମହୋଦୟଙ୍କ ପ୍ରତି ମୁଁ ସେତେବେଳେ କି ଶଠ ଆଚରଣ କରିଛି । ଏବଂ ଆଜି ମୋର ବାଲ୍ୟ କାଳର ସ୍ମୃତିଚାରଣ କଲାବେଳେ ମୁଁ ମନେ ମନେ ତାଙ୍କର ସେହି କଠୋର ଫାଟଗ୍ଗ ପୂଜ୍ୟପାଦ ଦୁଇଟି ଉପରେ ମଥା ଥୋଇ ତାଙ୍କ ଉଦ୍ଦେଶ୍ୟରେ ଅଜସ୍ର ପ୍ରଣାମ କରୁଛି ଆଉ କ୍ଷମା ପ୍ରାର୍ଥନା କରୁଛି ।

କିନ୍ତୁ ମୋର ପାଠକମାନଙ୍କ ଉଦ୍ଦେଶ୍ୟରେ ଚରମ ବକ୍ତବ୍ୟ ହେଲା— ନିୟତିରୂପୀ ମହାକାଳହିଁ ମହାବଳୀ ଅଟନ୍ତି । ଯେ ମଧ୍ୟ ଅଘଟନ ଘଟନ ପଟିୟସୀ ଶକ୍ତିର ଅଧିକାରୀ ବିଚିତ୍ର କର୍ମୀ । ସେହି ମହାକାଳଙ୍କ ଦାବୀରେହିଁ ଗୋଟିଏ କାଳର ମହାପ୍ରତାପୀ ବିଜ୍ଞ ଶିରୋମଣି ଜନ ପୁରୁଷର ପ୍ରତିଷ୍ଠିତ ଗୁରୁ ପୂଜ୍ୟପାଦ ମିଶ୍ର ଅବଧାନଙ୍କର ମୋ ଭଳିଆ ଗଣିତ ବୁଦ୍ଧି ଶୂନ୍ୟ ଗୋଟାଏ ବାହାଦୁରିଆ ମେଞ୍ଚଡ଼ ଟୋକା ହାତରେ ଏପରି ଶୋଚନୀୟ ପରାଜୟ ଘଟିଲା । ମୁଁ ଥିଲି କାଣ ସେ ଘଟଣାରେ ନିମିତ୍ତ ମାତ୍ର ।

---

# ଗହୀର ପାଣି



## ଚଂଦ୍ରଶେଖର ରଥ

ସେଠିକା ଖରା ବିଷୟରେ କଥାରେ କହି କିଛି ଲାଭନାହିଁ ! କମାର-ଶାଳର ଧାସ ଭଳି ସେ ଝାଞ୍ଜି ଖରାର ଥରେ ଭୋଗ ନ ହେଲେ କେହି ବିଶ୍ୱାସ କରିବେ ନାହିଁ । କେମିତି ଏକା ବେଳେ ଆକାଶ ପବନ ପୃଥିବୀରେ ନିଆଁ ଲାଗିଯାଏ । ଶୁଷ୍କ ଜମି ଉପରୁ ଧୂଳି ଉଠିଯାଏ । ପୋଖରୀ ଫାଟି ଫଣ୍ଡା ଫଣ୍ଡା ହୋଇଯାଏ । ପତ୍ର ଝାଡ଼ି ଦେଇ ଗଛ ସବୁ ଠିଆରେ ଜଳିଯାନ୍ତି ! ଶହ ଶହ ଶୋଷିଲା ପକ୍ଷୀ ଖସି ପଡ଼ନ୍ତି । ଗାଈ ଗୋରୁ ଧକେଇଥାନ୍ତି ସକାଳୁ ସଞ୍ଜଯାଏଁ । ମୁନ୍ଦାଏ ପାଣି ପାଇଁ ମଣିଷ ପାଟି ପାଲୁ ପାଲୁ କରି ପଡ଼ିଥାଏ । ବେଳେ ବେଳେ ସେମିତି ମରି ବି ଯାଏ ।

ସେ ଅଂଚଳରେ ସେଥିପାଇଁ ଯେତେ ସବୁ ଥିଲା ବାଲା ଖର୍ଚ୍ଚ କରି ଜଳକୀର୍ତ୍ତି ରଖି ଯାଇଛନ୍ତି । ଏବେ ଠାଏ ଠାଏ ନୂଆ ମାଟି-ଦୂମମାନଙ୍କରେ ନାଳି କନା ଘୋଡ଼େଇ, ମଲ୍ଲୀକଢ଼ ବେଢ଼େଇ ପାଣିଛତ୍ର ବସାନ୍ତିଏ । ଗୋରୁଙ୍କ ପାଇଁ ପାଣି କୁଣ୍ଡ ଭର୍ତ୍ତି କରି ରଖନ୍ତି ଦାତାମାନେ ! ପାଣି ମୁନ୍ଦାକରେ ଉଡ଼ିଯାଉଥିବା ହଂସା ଲେଉଟି ଆସେ ପ୍ରାଣ ଝୁଲି ରହିଥାଏ ଟୋପେ ପାଣି ଉପରେ !

ସେ ନୂଆ ସାହେବଟା ଆସି ଦୁଇ ପୁରୁଷ ହେବ, ସହର ଲଗରେ ବସି ଗଲାଣି । ଟୋକା ବୟସରେ ସେଇମାନେ ଆସିଥିଲେ ସେଇଠି ସ୍କୁଲ ଘର

ଚୋଳ ରହିବା ପାଇଁ, ସେମାନେ ଏବେ ବୁଢ଼ା ହୋଇ ଗଲେଣି ! ସେମାନଙ୍କ ପିଲାମାନେ ଅଧାଡ଼ଆ ଖସିଲା ବୟସର ବାପ ମା' ହୋଇ ଗଲେଣି । ନାତି ନାତୁଣୀ ବଢି ଆସିଲେଣି ଭେଣ୍ଡିଆ ଗଜା ଟୋକା ଟୋକୀ ହୋଇ । ସେଇ ମାନେ ଏଣିକ ଆବୋର ଯିବେ ସେ ସାହିଟାକୁ । ସମସ୍ତେ କହୁ ଗୋଟାଏ ଖବର ଯଦି ପାର ହେଲେ ନୂଆ ଜନ୍ମଟାଏ ପାଇଲା ପରି ମଣନ୍ତି । ଖରାଟା ସତେବା ଜଳନ୍ତା ଅଗ୍ନି-କୁଣ୍ଡଟାଏ !

ଦୋଳ ପୂର୍ଣ୍ଣମୀ ବେଳକୁ ଖରତେଜ ସେଇଠି ଅସହ୍ୟ ହୋଇଯାଏ । ଫଗୁ ଖେଳରୁ ସକାଳ ଓଳ ଫେରିଲା ବେଳକୁ ଓଠ ଶୁଖିଯାଏ । ତାଳୁଫଟା ଖରାରେ ମୁଣ୍ଡ ଝାଇଁ ଝାଇଁ ହୋଇଯାଏ । ଜଭ ଭଡ଼ିନଏ । ସେତିକ ବେଳୁ ପାଣି ନଅଣ୍ଟ ହୋଇଆସେ ! କେତେ ମାତବ୍ବର ଲୋକେ ପାଣି କୁଣ୍ଡରେ ରଙ୍ଗ ଗୋଳ ପିଚ୍କାରି ଖେଳନ୍ତି । ନୋହିଲେ, ସାଧାରଣ ଲୋକଙ୍କର ସେଇ ଢାଳେ ଦୁଇଢ଼ାଳ ପାଣିର ଖେଳ । ସେତକ ସାରିଦେଇ ସେମାନେ ଅନ୍ୟମାନଙ୍କ ରଙ୍ଗରେ ଭିଜିବାକୁ ଠେଲପେଲା ହେଉଥାନ୍ତି !

ସେଦିନ ରଙ୍ଗ ଖେଳ ପରେ ନଧି ସ୍ୱାଇଁ, ମାଧବ ବେହେରା, ଗଜ ରଥ ଘରୁ ଭେଣ୍ଡିଆ ପୁଅମାନେ ଆସି ସାହିର କୂଅ ମୂଳେ ରଙ୍ଗ ଛଡ଼େଇ ହେଲେ ! ପାଣି ବୋହି ଯାଇ ନୂଆ ସାହି ଆର ପାଖ ଖେଢରେ ମାଡ଼ଗଲା ! ଖଣ୍ଡେ ବାସ୍ନା ସାବୁନକୁ ଦେହ ସାରା ଫେଣ ଗଜ ଗଜ କରି ତିନିହେଁ ଅତି ଉତ୍ପାତ ହୋଇ ଗାଧୋଉଥାନ୍ତି । ହସି ହସି ଗଡ଼ ଯାଉଥାନ୍ତି । ଘୃର ଜହୁଙ୍କାରେ କୂଅରୁ ପାଣି ଝିଙ୍କି ଆଣୁଥାନ୍ତି ଅନାୟାସ ! ଭୁସ୍ ଭୁସ୍ ଇଢ଼ ହେଉଥାନ୍ତି ବାଲ୍ଟି ବାଲ୍ଟି ପାଣି ! ତିନିଜଣ ଯାକ ବଳୁଆ, ଷଣ୍ଢାମାର୍କା ଟୋକା; ଯାହାଙ୍କ ଉପରେ ସେ ସାହି ଆଡ଼େ କେହି ମୁହଁଟେକ ଚାହିଁ ପାରେ ନାହିଁ । ରାତିରେ ବ୍ୟେର ସାହସ କରେ ନାହିଁ ସେ ପାଖ ପଶିବାକୁ । କୋଡ଼ିଏ ଘର ସାହି ଭିତରୁ ସେଭଳି ଗୃହପୁଞ୍ଜା ଟୋକା ବଢି ଆସିଲେଣି । ହେଲେ ଏ ତିନିଜଣଙ୍କୁ ଏକାଠି ମୁକାବିଲା କରିବା ପାଇଁ କାହାର ସାହସ ନାହିଁ ।

ସେ କୂଅଟି ନୂଆ ସାହିର ଜୀବନ ନଳୀ । ସେଥିରୁ ପାଣି ନେଇ ସାରା କାମ ଚଳେ । କୂଆ ଆଖି ପରି ନିର୍ମଳ ପାଣି ଯେମିତି କାକର ସେମିତି

ସ୍ୱାଦ । ବେଶୀ ସେମିତି ଗମ୍ଭୀର ନୁହେଁ । କାରଣ ବାର ହାତ ତଳକୁ ଅକମିଶିଲାଟାଏ ହାବୁଡି ଗଲା । ଆଉ ତଳକୁ କାଙ୍କ ଗଲାନାହିଁ । କିନ୍ତୁ କେମିତି କେଜାଣି ଗୋଟାଏ ଝର ମଧ୍ୟ ପଶ୍ଚିମପଟରୁ ଫିଟିଗଲା ସେଇଠେ । ହୋଇପାରେ ଉପରମୁଣ୍ଡା ପୋଖରୀରୁ ମାଇଲଏ ଦୂରରେ ପୂର୍ବପାଖ ପୋଖରୀକୁ ମାଟିତଳେ ସୁଅ ପଡ଼ୁଛି । କୂଅଟା ସେଇ ଶିର ଉପରେ ଆସିଗଲା । ହୋଇପାରେ ସେଇଟା ସେ ନୂଆ ସାହବାଲାଙ୍କ ଭାଗ୍ୟ । ସେ ସୁଅ ବର୍ଷ ସାରା ଝରୁଥାଏ । ଖାଲି ଖରା ତିନିମାସ ପାଣି ନଅଣ୍ଟିଆ ହୋଇଯାଏ । ପିତଳ ଗରା ବୁଡ଼େ ନାହିଁ । ଦେଖୁ ଦେଖୁ ତାଳ ମଧ୍ୟ ବୁଡ଼େ ନାହିଁ । ଗୋଟିଏ ଗ୍ଲେଟିଆ ଖୋପରେ ଝିର ଝିର ଯେଉଁ ମୁନ୍ଦାକ ପାଣି ଗାତଯାକ ଭିତରେ ଜମିଥାଏ ତାକୁ ପିଇବା ପାଇଁ ନେବାକୁ କୂଅମୂଳେ ବାଦ ହୁଏ । କଳଗୋଳ ମଧ୍ୟ ହୁଏ । ବୁଢ଼ାମାନେ ତ ଦେଖି ଆସିଛନ୍ତି ହଦକ ଯାକ । ସବୁ ଖରାରେ ସେମିତି । ସେମାନେ ଯାଇ ସମାଧାନ କରନ୍ତି ।

ଦୋଳପୂର୍ଣ୍ଣିମୀରେ ସେ ତିନିଟା ଟୋକା କୂଅ ପାଣିକୁ ସେମିତି ଫିଙ୍ଗା ଫୋପଡ଼ା କରି ଢ଼ାଳିବା ଦେଖି କାହା ଦେହ ସହିଲା ନାହିଁ । ମାଇକିନିଆ- ମାନେ ଚୁଁ ଚାପ୍ ହେଲେ । ରବେଇ ଖବେଇ ହେଲେ । ଯାଙ୍କୁ କିଏ ବୋଧିବ ! ପାଣି ହେଲା ପ୍ରାଣ । ଯାଙ୍କ ଅଗୁଆଁର ପଣ ପାଇଁ ସାହିଯାକ ଚୂଡ଼ୁ ବୁଡ଼ୁ ହୋଇ ମରିଯିବେ !

ମନ୍ଦିରରୁ ଫେରୁଥିଲେ ହନା କକେଇ । ସେ ସେଇଠି ଠିଆ ହୋଇ ସେମାନଙ୍କୁ ଗ୍ଦହିଁଲେ କହିଲେ, "କିରେ ଇଏ କ'ଣ କରୁଛ ?— ଗାଧୋଇବାକୁ ନଈକୁ ଗଲ ନାହିଁ ? ତିନିକୋଶ ବାଟ କ'ଣ ତମକୁ ବଢ଼ିଲଇଗଲା ଯେ, ଏଇ ପାଣି ମୁନ୍ଦାକ ଏମିତି ସାରି ଦଉଛ ?

—କେମିତି ନଅଣ୍ଟିଆ ଦିନ ଆସିଲାଣି ତୁମକୁ ଦିଶୁନାହିଁ ? ସେମାନେ ଥମିଗଲେ, ଜଣେ କହିଲା—"ଆମେ ଯିବାକୁ ବସିଥିଲୁ ଯେ କକେଇ, ଆଜ ସବୁ ଶୁଣିଲୁ ନଈରେ ତ ଧାର ନ ଥିଲା ! ଯେଉଁ ଚବକାଏ ପାଣି ଅଡ଼ଢ଼ାଖିଆ ଆଉକୁ ଥିଲା, ସେଇଟା କୁଆଡ଼େ ଗୋରୁ ଗୋଠ ପଡ଼ି ପିଇଗଲେଣି ।"

"କିରେ, କିରେ, ତେବେ ଏ ପାଣି ମୁନ୍ଦାକୁ ଏମିତି ଫିଙ୍ଗ ନାଇଁ, ଏତକ ଆମ ପ୍ରାଣ !—"

ଏତା କହେଇ କଥାରେ, ଅଙ୍କର ଉଦ୍ଧୃଟାଏ ଘୂର୍ଣ୍ଣି ଘୂର୍ଣ୍ଣି ହେଇଗଲା— ଖରା ତେଜ ଆଉ ସହ୍ୟ ହେଲା ନାହିଁ । ସେମାନେ ତଳକୁ ମୁହଁ ପୋତି ଗାମୁଛା ଓଢ଼ିଲେ—

ଦେଖୁ ଦେଖୁ ଚୈତ୍ର ମାସ ମାଡ଼ି ଆସିଲା । ତା ସାଙ୍ଗେ ମାଡ଼ି ଆସିଲା, ରକ୍ତମୁଖା ବାଘ ପରି ଖରା ! ସାନ ବାରହାତିଆ କୂଅଟି ଦେଖାଗଲା, ମେଲା ହୋଇ ଧଳଉ ଥିବା ପାକୁଆ ପାଟି ପରି । କୂଅ ତଳେ ଆଉ ପାଣି ନାହିଁ । ଶୁଖିଲା, ଅଳମଳା କଇଁଚ ପିଠି ପରି କଣ୍ଟାଳ ଆବୋର ରହିଛି । ପଶ୍ଚିମପଟୁ ସେ ସୋଷକ ପାଣି ଦିଶିଯିବା ଜାଗାଟିଏ !

କେତେଦିନ ହେଲା ମାଇକିନିଆମାନେ ଖୁମ୍ପ ଖୁମ୍ପ ହେଲେଣି । ପାହାନ୍ତିଆ ଭିତରକୁ କୂଅ ଏକାଥରେ ତଳଟି ହୋଇଯାଉଛି । ସମସ୍ତଙ୍କ ମନରେ ସନ୍ଦେହ । ଜଣେ ଭାବୁଛି ଯେ, ଆଉ ଜଣେ ରାତି ଅଧରୁ ପାଣିରେ ଭର୍ତ୍ତି କରେଇ ନେଉଛି । ବୋହୂ ଭୂଆସୁଣୀ ଖାଲି ଗରା କାଖେଇ ଫେରି ଆସୁଛନ୍ତି । ଝୁଟି ଦେଉଛନ୍ତି ଶାଶୁମାନଙ୍କୁ । ସେଇ ଖଣ୍ଡାଖାଇ ଶାଶୁମାନେ ଲାଗିଯାଉଛନ୍ତି ଚଟିଆ ଯୁଦ୍ଧ । ସାନ ପିଲାମାନେ ସେ କଳରେ ରମାଝମା ହୋଇ ଯାଉଛନ୍ତି । ସମସ୍ତେ ଚାହିଁ ହେଉଛନ୍ତି କୂଅ ଭିତରକୁ । ସେଇଠି ସମସ୍ତଙ୍କର ଭାଗ୍ୟ ସତେ ବା ଲୁଚି ରହି ଝକ୍ ଝକ୍ କରୁଛି ।

ସେଦିନ ପ୍ରଚଣ୍ଡ ଖରା । ସଞ୍ଜବେଳକୁ ପାଖ ପାହାଡ଼ରୁ ନିଆଁ ଧାସ ସାଙ୍ଗକୁ ଗୋଟାଏ ତାତିଲା ଧୂଳି ଝଡ଼ ମାଡି ଆସିଲା । ସେତିକିବେଳେ କିଏ ଆସି କହିଦେଲା ଯେ, କୂଅ ସମ୍ପୂର୍ଣ୍ଣ ଶୁଖିଗଲା । ଆଉ ଜମା ପାଣି ନାହିଁ । ସମସ୍ତେ ଚମକି ପଡ଼ିଲେ । ଖେଦିଗଲେ ଗୁଡ଼ିଆଡ଼ୁ କୂଅମୂଳକୁ । ଟିଣ ଉବାଟାକୁ କୂଅ ଗର୍ଭର ଶୁଖିଲା ପଥର ଉପରେ ସମସ୍ତେ ଥରେ ଲେଖା ଗଡ଼େଇଲେ । ପାଣିର କଳକଳ ଶୀତଳ ଓଦା ଗନ୍ଧ କାହାକୁ ଶୁଭିଲା ନାହିଁ । ଶୁଖିଲା ଟିଣା, ଶୁଖିଲା ପଥର ଉପରେ ଘୋଷାରିବାର ନିର୍ମମ ଠଣର ଠଣର ଶବ୍ଦ ଶୁଣି ସମସ୍ତଙ୍କର ଦୀର୍ଘଶ୍ୱାସ ବାହାରି ଆସିଲା । ସମସ୍ତେ ଜାଣିଗଲେ ଯେ, କୂଅ ସତକୁ ସତ ଶୁଖିଗଲା । ତିନି ପୁରୁଷ ହେଲା ଅନବରତ ବୋହୁଥିବା ଝରଟି ଶୁଖିଗଲା ।

ତେବେ କ'ଣ କରିବା ? କେଣ୍ଡିଆ ପିଲାଙ୍କ ପାଟି ବେଶୀ ଶୁଭିଲା— "ଆମେ ସେ ପଥର ଫଟେଇ କୂଅକୁ ଆଜ ଦଶହାତ ଗଭୀର କରିଦେଲେ ହୁଅନ୍ତା ନାହିଁ ?" ମୁରୁଖା ଲୋକେ କହିଲେ, ସେ ପଥର ଅକର୍ମଶିଳା ସେ ଜମା କାନେଇବ ନାହିଁ, ତୁମ ନହାଣ ମୁଗୁରକୁ ! ପୁଣି କହିଲେ "ପଥର ଫଟାଳଙ୍କ ମୂଲ ଅସମ୍ଭବ ବଢ଼ିଗଲଣି । ସେମାନେ ହାତେ କାଟିବାକୁ ଶହେ ଟଙ୍କା ମାଗିବେ । କୋଉଠୁ ଦବ ଏତେ ପଇସା ।"

"ପଥର ଫଟେଇଲେ ପାଣି ପଡ଼ିବ ବୋଲି କ'ଣ ଭରସା ? ଏଇଟା ପରା ଭୂଗର୍ଭର ପାହାଡ଼ ଶିଖ ହୋଇଥାଏ, କେତେ କାଟିବ ପଥର ? କୋଉଯାଏ କାଟିବ ?

ମଞ୍ଜ ଅନ୍ଧାର ଭିତରୁ ଅନ୍ୟାନ୍ୟ ସ୍ୱର ଶୁଭିଲା, "ଆରେ ଅନ୍ୟାୟ ଅନାଚାର ବଢିଗଲା ! ଗଙ୍ଗା ରୁଷ୍ଟ ହୋଇ ଯାଇଛନ୍ତି । କାଲି ତାଙ୍କୁ ସନ୍ତୁଷ୍ଟ କରିବାକୁ ପୂଜାଟାଏ କରିଦିଅ ସେ ପୁଣି ଝରି ଆସିବେ ।"

ପିଚେଇ ନାନା ସ୍ୱର ପରେ ଶଙ୍କିତା ସ୍ୱରଟାଏ ଶୁଭିଲା, "ସେଇ ଅଲକ୍ଷଣୀ ପିଶାଚୁଣୀ କାଲି ସବୁ ଶୋଷି ଦେଲା ! ସେଇ ଥିବାଯାକେ ଏ ସାହିର ମଙ୍ଗଳ ନାହିଁ ! ସେଇ ଡାଣେଇ ବୁଢ଼ୀ, ମୃତ ଖାଇ ସମସ୍ତଙ୍କ ରକ୍ତ ଶୋଷୁଛି ।"

ଆଜ ଜଣେ ସେମିତି କଥା ଛୁଟେଇଲେ, ହଇ, ହଇ, ସେଇ ବୁଢୀ ରାତସାରା ହଗୁରପଦାରେ ଚର ଚର ପେଟ ପୂରଜତ । ଅଣ୍ଟ ନାହିଁ ବୋଲି ଆମର ରକ୍ତ ମାଉଁସ ଖାଇଗଲାଣି ।"

ଦେଖ ଦେଖ ଅଣ୍ଡିରା କଏ ଜଣେ ପାଳ ଧରିଲା "ସେ ମିଛାଣି ବୁଢ଼ୀ ନିଶ୍ଚେ ଏ କୂଅ ଭିତରେ ମୁହଁ ବୁଡ଼େଇ ଶୋଷି ନେଇଛି । ଡାଣେଇ ପାଇଁ କିଛି ବିଚାର ନୁହେଁ ।"

..."କାଲି ସେ କୂଅ ମୂଳେ ବସି ମନକୁମନ ଗାଉଥିଲା ଜପୁଥିଲା ମନକୁ ମନ ହସୁଥିଲା, ଆଖି ଡଗଡି ହାତକୁ ତଳୀ କଣ୍ଡା ପରି ଘୁଞ୍ଚୁଥିଲା ।"

..."ମୁଁ ଦେଖିଛି, ସେ ଶୋଷରେ ଓଠ ଘଷି ବୁଲୁଥିଲା ଆଜ ଢ'ପହରେ ସେ କୂଅମୂଳେ ଘେର କାଟୁଥିଲା—"

…"ଆରେ, କଥା ଏଇଠି । କଣନା ବାରଆଡ଼େ ଆମେ ଭୁଙ୍ଗାରେ ଦରଣ୍ଡି ହେଉଚେ । ସେଇ ଚଣ୍ଡେଇ ବୁଢ଼ୀଚ' ଗୃହଁ ଦେଲେ ପାଣି ଶୋଷି ନେବ । ମୁହଁ ମାରିବା ଦରକାର କ'ଣ ।"—

ମିଛାଣି ବୁଢ଼ୀ, ଚଣ୍ଡେଇ ! ମିଛାଥି ପୁଚଖାଇ ! ମିଛାଣି ସାଇର ଅରିଷ୍ଟ । ସେଇ ଶୋଷି ନେଇଛି ଜୀବଙ୍ଗୀ ନଳୀ, ପରି କୂଅର ପାଣି ଧାରକୁ ।

ସାଇଁ ସାଇଁ ଧୂଳି ଝଡ଼ ପିଟି ଯାଉଥାଏ । ଛୁଞ୍ଚପରି ଫୋଡ଼ ହୋଇ ଯାଉଥାଏ ବାଲି । ସଞ୍ଜ ଅନ୍ଧାର ପାରି ହୋଇ ଯାଉଥାଏ ।

• ସାଇପାକ ମାଇକିନିଆ ମନ୍ଧା ମନ୍ଧା, ଅଣ୍ଡିରି ଗୋଷ୍ଠ ଗୋଷ୍ଠ ! ପିଲାଏ ଭେଲା ଭେଲା । ସମସ୍ତେ ଶୋଷିଲେ । ସବୁଠି ଟୁଚୁର ଟାପର ଚାଲିଛି । ଗୋଟିଏ କଥା ସମସ୍ତେ ଫୁସ୍ ଫାସ୍ ହଉଛନ୍ତି । ସାଗ୍ ସାଇ ଘାଖେ । କଥାଟା ଆରପାଖେ । ସେଇ ସମସ୍ତଙ୍କୁ ଖାଉଛି । ତାକୁ ସମସ୍ତେ ନମିଣିଲେ ପାରିବେ ନାହିଁ ।

ଦଶମୀ ଜହ୍ନ ନିମେଁଘ ଆକାଶରୁ ଚାଉଚାଉ ଉଜଳ ଉଠିଲା । ରାତ୍ର ଦୁଇଘଡ଼ ଯାଏ ମନ୍ତ୍ରଣା ଚାଲିଥାଏ । ପବନ ଟିକଏ କାକର ପଡ଼ ଆସିଥାଏ । ସ୍ଥିରହେଲା ଯେ ଚଣ୍ଡେଇର ମୁକାବିଲା କରାଯିବ ।

ରାତ୍ର ହେଇଗଲେ ତାର ବଳ ଚଢ଼ି ଯାଏ ଦଶଗୁଣ । ଚଣ୍ଡେଇ ତା'ର ଅଡ଼େଇ ପଦକୁ ଲେଉଟିଆ ବୋଲି ଦେଲେ ତା' ଦାନ୍ତର ଦାଢ଼ ତେଜିଯାଏ ସେ ସେତେବେଳେ ଗୋରୁଟାଏ ପାଇଲେ ରେକେଟି ଦେଇପାରେ । ପୁଞ୍ଜାଏ ଭେଣ୍ଡାଙ୍କୁ ଚୂଟିଧରି ଶୂନ୍ୟରେ ଟେକି ନେଇ ପାରେ ।

ସମସ୍ତେ ପାଖେଇ ଆସିଲେ । ମନ୍ଧା ଗୁଡ଼ିକ ନବଡ଼ ହୋଇଗଲା । ସମସ୍ତେ ଆହୁରି ଆସ୍ତେ ଫିସ୍ ଫିସ୍ କଥା କହିଲେ । ଖଡ଼୍ କରି କ'ଣଟାଏ ହୋଇଗଲେ ହାତେ ଲେଖା ଡେଇଁ ପଡ଼ୁଥାନ୍ତି । ଚମକିଲେ ବୁକୁରେ ଛେପ ପକଉଥାନ୍ତି ।

ଏତିକି ଟିକଏ ବୁଢ଼ୀ । ପାଚିଲା ହାଡ଼ର ପକ୍ଷୀପରି ହାଲୁକା ଦେଣା । ମୁଣ୍ଡରେ ଫରୁ ଫରୁ ଧଳାବାଳ । ଆଲୁରୁ ବାଲୁରୁ ପିନ୍ଧା । ବାଘୁଣୀ ପରି

ହାତରେ ବେକରେ ଗୋଡରେ ବଉଁଗଡ଼, ବବୁଲ ଫଳ ଯୋଗ ଯୋଗ ପିନ୍ଧିଥାଏ । ମନକୁ ମନ ବଡ଼ ବଡ ହେଉଥାଏ । ସେ ପୁଣି ଏମିତ ? ଏଡ଼କ ପୁଣି ଶକ୍ତ ତା'ର ଯେ ପୃଥ୍ଵୀଏ ଭେଣ୍ଡିଆଙ୍କୁ ଶୂନ୍ୟରେ ଟେକ ନେଇଯିବ ?

ଧନା କକେଇ କହିଲେ, "ଆରେ, ମୁଁ ପିଲାବେଳୁ ତାକୁ ସେମିତ ଦେଖି ଆସିଛୁ ପରା । ତାକୁ ଆଜ ପାନେ ଦବାକୁ ହବ । ମୁଁ ଗାୟତ୍ରୀ ଜପିଦେଲେ ସେ ମୋତେ ଛୁଇଁ ପାରବ ନାଇଁ । ତାକୁ ଆଗ ଧର ତା' ବଦ୍ୟା ମାଗ କର ଦେବାକୁ ହବ । ତାକୁ ଦୁଇଜଣ ଧର ତା' ପାଟି ମେଲା କରଦେଲେ, ମୁଁ ତା' ବ୍ୟବସ୍ଥା କରଦେବ । ଏବଠୁ ଘଣ୍ଟାଏ ଯାଏ ମୁଁ କଡ଼ା ପାନ ପାଟିରେ ଜାକ ଧର ମନ୍ତ୍ର ଜପିବ । ସେଇ ମନ୍ତୁର ପିକ ପାଟି ଭର୍ତ୍ତି ହୋଇଗଲେ ତାକୁ ତା' ପାଟିରେ ପୂଚୁକ ଦେବ । ସେଥିରେ ତ ବ୍ରହ୍ମ ରାକ୍ଷସ ଗୁଡ଼ିଯିବ । ଏଇଟାତ କଞ୍ଚାଖାଇ ତଣ୍ଟେଇଟାଏ ।"

ହରିଆ ମଲ୍ଲ କହିଲା, "ଖାଲି କ'ଣ ସେତିକ କକେଇ । କାଉଁରୀ କାମରଣ୍ଡୀ ଦେଶରେ ଗୁଣିଆଙ୍କୁ ମୁଁ ଦେଖିଛୁ । ଗୋଟାଏ ତେନ୍ତୁଳି କାଠର ପୋଡ଼ଖଣ୍ଡା ଆଉ ଡ଼ାଲେ ଅଣ୍ଡିରା ମୁତ । ତାକୁ ସେଇ ପାଟି ମେଲା କର ମୁତଯାକ ପିଆଇ ଦେବ ଜଣେ । ଆଉ ଜଣେ, ପୋଡ଼ ଖଣ୍ଡାରେ ଲତ୍ତୁ ନେଇଯିବ ଦେହସାରା— । ଠକ୍‌କନା ତଣ୍ଟେଇ ଓହ୍ଲେଇଯିବ । ସବୁଦିନକୁ ତା' ବଷ ଦାନ୍ତ ଝଡଯିବ ।"

ଭେଣ୍ଡିଆମାନେ ଉନ୍ମତ୍ତ ପ୍ରାୟ । ମାଇକନିଏ ଗୁଡ଼ିଆ ଗୁଡ଼ିଆ ଡରଲା ଡରଲା ପର ଆଉଜ ଯାଉଥାନ୍ତି ଏପାଖ ସେପାଖ । ଆୟୋଜନ ଚାଲିଲା । ଧନା କଦେଇ ଏ କଲରେ ଖଣ୍ଡେ ସେ କଲରେ ଖଣ୍ଡେ ଅସଲ କଡ଼ା ପାନ ଜାକ ବସିଗଲେ । ହରିଆ ମଲ୍ଲ ତନ୍ତୁଳି କାଠ ଖଣ୍ଡେ ଚୁଲିରେ ମାଡ଼ ଦେଇ ବାହାର ଆସିଲା ।

କାହାକୁ ନିଦ ନାହିଁ । କାହାକୁ ଭୋକ ନାହିଁ ସାରା ସାହି ଛନ୍ ଛନ । ଠୋକରା ଶୁଖିଲା କ'ଅମୂଳ ନିଗୁଛିଆ, ଅଲକ୍ଷଣିଆ ! ପାଣି ଶୁଖିଯାଉଛି ସାହିଟାରୁ !

ଧନା କକେଇ ଗୁଁ ଗୁଁ ହୋଇ ହାତରେ ଠାରଲେ । ଅନ୍ୟମାନେ ବୁଝିଗଲେ ଯେ, ପାନ ପିକ ମନ୍ତୁର ହେଇଗଲା । ହରିମଲ୍ଲ ଜଳନ୍ତା ପୋଡ଼

ଖଣ୍ଟାଏ ହାତରେ ଧରି ଆସି ଠିଆ ହେଲା । ସମସ୍ତେ ଆଉ୍ଡେଇ ହୋଇଗଲେ । ବାଁ ହାତରେ ରସି ଡ଼ାଳଟାଏ ଧରିଥାଏ ସେ । ଭେଣ୍ଡିଆ ଟୋକାମାନେ ମାଲ୍ କଚ୍ଛା ମାରି ଅଣ୍ଟାରେ ଗାମୁଛା ଭିଡ଼ିନେଲେ । ମାଇକିନିଆମାନେ ଛେପ ଢୋକି ଦୁଆରବନ୍ଧକୁ ଧରି ରୁନ୍ଧି ରହିଲେ । କାହାର ଲୁଣ୍ଡରୁ କଥା ବାହାରୁ ନ ଥାଏ । ଟିକିଏ ମାରଣ ହେବ । କଣ ହବ କିଏ କହିବ । ନିଜ ନିଜ ପୁଅ ଝିଅଙ୍କୁ ଓହରେଇ ନେବାକୁ ସେମାନଙ୍କର ମନ ଖଲ ଖଲ ହଉଥାଏ । କିନ୍ତୁ ସାଇ କଥା, କେମିତି ଅଲଗା ହେଇଯିବେ ?

ଗ୍ରାମଆଡ଼କୁ ଧନ୍ଦି, ଅଳ୍ପ ଡକାହକା ହେଇ ସମସ୍ତେ ଆଗେଇଲେ ପୂର୍ବ ମୁହାଁ । ସେଇଆଡ଼େ ସାଇଠାରୁ ଅଲଗା, ଖଣ୍ଡେ ଖପରଲ ଝାଟି ଘରେ ମିସ୍ତ୍ରାଣି ରହେ । ତା' ଘରେ ଏବେ ତା' ନାତୁଣୀ ନାତୁଣୀ ଯୋଇଁ ରହୁଛନ୍ତି । ବୁଢ଼ୀ ପିଣ୍ଡାରେ ଖଟିଆ ପକେଇ ଶୋଇଥାଏ ଦନସାଗ । ରାତିରେ ସେଇଠୁ ଉଠି ଚରି ବୁଲି ଯିବାକୁ ସଜହୁଏ । ବାଘ ଖେଦାକୁ ଗଲାଭଳି, ନିଶବ୍ଦ ପାଦ ଟିପି ଟିପି ସମସ୍ତେ ଚାଲିଥାନ୍ତି । ଚାଲକୁ ଚାଲ ଲାଗି ରହିଥିବା ସାଇର ଘର ଗୋଟିକ ପରେ ଗୋଟିଏ ପାରହୋଇ ଯାଉଥାଏ । ସବୁ ଘର ଆଗରେ ସାଇ ଦାଣ୍ଡରେ ପଡ଼ିଥିବା ଦଉଡ଼ିଆ ଖଟିଆ ମାରି ହେଇ ଯାଉଥାଏ । ଆକାଶରେ ଦଶମୀ ଜହ୍ନ ଖସି ଆସିଥାଏ ଅଧେ ବାଟ !

ବାଁରେ କୂଅ ! ଡାହାଣେ ଦନା କକେଇ ଘର !

ସେଇ ନିଶବ୍ଦ ପଟୁଆର ଆଡ଼େଇ ହେଇ ଚାଲିଗଲା ବେଳକୁ ଉଶ୍ବାସ ଖାସଟିଏ ଶୁଭିଲା ଖୁଁ ଖୁଁ ! ଦନା କକେଇଙ୍କ ନନାଙ୍କୁ ଅଶିଏ ବର୍ଷ । ସେ ସାଇ ଭିତରେ ବୟସରେ ସବୁଠୁ ବଡ଼ ! ସେ ହିଁ ସାଇ ବସେଇଛନ୍ତି କୂଅ ଖୋଳେଇଛନ୍ତି ! ଏ ସମସ୍ତଙ୍କୁ ଉପଜାତ ହେବାର ଦେଖିଛନ୍ତି—

ସଦାନନ୍ଦ ଗାଧୁଗୁରୁ ଡାକଲେ, "କିରେ ଦନୁ !"

ସାରା ସାଇର କାନ ଡେରି ହେଇଗଲା । ଗାଧୁଗୁରୁ ଉଠି ବସିଲେ ଖଟିଆରେ । ପଟୁଆର ଥମିଗଲା !

"କିରେ ଦନୁ, କୁଆଡ଼େ ସବୁ ଯାଉଚ ?"

ହଠାତ୍ କକେଇଙ୍କ ଆଖି କରଣ୍ଡା କୋଳ ପର ଥୋପି ପଡ଼ିଲା । ତାଙ୍କ ପାଟିରେ ମଣ୍ଡୁଗ ପାନପିକ ଭର୍ତ୍ତି ହୋଇ ରହିଥାଏ । କଥା କହିବା ସମ୍ଭବ ନୁହଁ । ସେ ଗୋରୁଟିଏ ପରି ଇଆଡ଼କୁ ସିଆଡ଼କୁ ଗୃହୁଁଥାନ୍ତି ।

ଗଜରଥଙ୍କ ପୁଅ, ବଳିଆ, ସମସ୍ତଙ୍କ ଆଗକୁ କହୁଣେଇ ପଶି ଆସିଲା । "ଶୁଣ ଗୋସେଇଁ ବାପା, ଆମେ ଗୋଟେ ଅନୁକୂଳରେ ବାହାରିଛୁ । ତମେ କାହିଁକି ପଛରେ ଡାକୁଛ ? ଆଜି ସବୁ ହିସାବକୁ ଗୋଟାଏ ଦଫା ରଫା ହୋଇଯିବ । ସେ ଡଣ୍ଡେଇ ବୁଢ଼ୀ ମିହୁଣୀ; ତାକୁ ଆଜି ଚେତେଇ ଦେଇ ତା' ଡଣ୍ଡେଇ ପଣିଆ ଦୂର କରିବାକୁ ହେବ । ନ ହେଲେ ଏ ସାହିରେ ବଞ୍ଚିବା କଷ୍ଟ !"

ବୁଢ଼ା ରଘୁଗୁରୁ ପୁଣି ଥରେ ଖାସି ବଙ୍କା ବାଡ଼ି ଉପରେ ଭରା ଦେଇ ଲଡ଼ ଥଡ଼ ହୋଇ ଠିଆ ହେଲେ ! ବଳିଆ ମୁହଁକୁ ଗୃହିଁ ପଚାରିଲେ, "କରେ ସେ କ'ଣ କଲା ତମର ?"

ଗୃର ପାଞ୍ଚଜଣ ଏକାଠି କହିଲେ, "ଆଉ କ'ଣ କରିଥାନ୍ତା ? ଜଭି ଲଗେଇ ତୁମ କୂଅଟାର ତଳ ଗୃଟି ଦେଇଛି ! ଟିକା ଖେଳିବାକୁ ଟୋପେ ପାଣି ନାହିଁ !"

"ଏ କୂଅ ହଠାତ୍ ଏମିତି ଶୁଖିଯିବ ବୋଲି ମୁଁ ଜାଣିଥିଲେ ! ଏଥିରେ ସେ ବୁଢ଼ୀଟାର କ'ଣ ଦୋଷ ?"

"ଦୋଷ ନାହିଁ ? !—ତମର ଜ୍ୱାଇଁପୁଅ ହେବ ବୋଲି ତା' ପାଇଁ ତୁମ ହୃଦ ତରଳି ଯାଉଛି ?—ତମେ ସ୍ଥିର ହୋଇ ଶୋଇଲ ! ଆମେ ତା' କଥା ନପଟେଇ ଦେଇ ଆସୁଛୁ !

"ଆରେ ସେ ନିଆଣ୍ଟି ବୁଢ଼ୀଟା ପଛରେ ତମେ ଗାଁ ସାରା ଲଗିଛ କେତେ ବର୍ଷ ହେଲା ! ସେ ତ ସବୁ ହାରି ସାରିଛି । ତାକୁ କ'ଣ ପ୍ରାଣରେ ମାରି ଦେଲେ ଯାଇଁ ତମ ପେଟ ପୂରିବ ।"

"ପୁଅଙ୍କର ଯୋଗୁଁ ସେ ଡଣ୍ଡେଇଁ ମୁହଁ ପାଇ ଯାଇଛି । ସାହିରେ କଅଁଳା ପିଲାଙ୍କ ତଣ୍ଟି ଚପି ଖାଇଗଲେ ସୁଦ୍ଧା ବୁଢ଼ାଙ୍କର ବିଶ୍ୱାସ ହଉନାହିଁ !"

"ସେ ବୁଢ଼ୀ ପିଲ-ରକ୍ଷଣୀ । ତା'ର ଗୋଟିଏ ବୋଲ ପୁଅ, ମରି ଗଲେଣି ଆଜକୁ ସାତବର୍ଷ ତଳେ ! ତା' ଝିଅ ବୁଢ଼ୀ ହୋଇ ଆଉ ପୁରକୁ ଗଲାଣି ! ଯେ ତୁମ ସାଇ ସାଙ୍ଗରେ ଗୁହ୍ଲା ହୋଇ ରହିଛି ସେଇ କାଳରୁ । କ'ଣ ନା ଏବେ ବୁଢ଼ୀ ହୋଇ ଆଉ ବାପୁଣୀ ହୋଇଗଲା କଷ୍ଟସହ୍ଣ ସହ୍ଣ ବୋଲ ତଣ୍ଟେଇ ହୋଇଗଲା ? ସେ ପରା ଏଇ ଧନାକୁ ଏନୁଡ଼ ଶାଳରୁ ତେଲ ଲଗେଇ ବଡ଼ କରିଛି ।"

ଭୂସ୍କନା ଧନା କକେଇ ବେଲ୍‌ଏ ହୋବ ମନୁର ପାନପିକ ପୁରୁକ ଦେଲେ ।

"ଯାଃ ଗଲା ଏତେ ବଡ଼ ଉପଗ୍ରହଟା ଭ୍ରଷ୍ଟ ହୋଇଗଲା ।" କହିଲା କେହି ଜଣେ ଯେଇଟା ବୋଧହୁଏ ତେନ୍ତୁଳୀ ପୋଡ଼ଖୁଣ୍ଟା ଧରିଥିବା ହରିଆ ମଲ୍ଲ !

ଗପୁଗୁରୁ ବୁଢ଼ା କହିଲେ, "ସେ ବୁଢ଼ୀର ମୁଣ୍ଡ ଥପୁ ନାହିଁ ! ହେଲେ, ସେ ଏ ସାଇ ଛାଡ଼ି ଯାଇ ପାରିବ ନାହିଁ ! ଏ କୂଅଟାକୁ ଛାଡ଼ ଯାଇ ପାରିବ ନାହିଁ !"

"କେମିତି କେମିତି ?—ଗୁମର ତାହେଲେ ଏଇଠି !"

"ଏଇ କୂଅରେ ତା' ପ୍ରାଣ ପେଡ଼ିକୁ ସଂପାଦ ରଖିଛି କେଉଁଠି ; ତା' ହେଲେ ତ ସେଇ ପାଣିତକ ପିଇ ଦେଇଛି । ପେଡ଼ିକାଢ଼ି ନେଇ ଯାଇଛି !"---

ଜହ୍ନ ଆଲୁଅରେ ବୁଢ଼ାଙ୍କୁ ଦେଖି କଲର କଲର ହେଲେ, ବାଉଳା ସାଇବାଲା ।

ଗପୁଗୁରୁ କହିଲେ, "ଆରେ ଏମିତି କ'ଣ ଅଜ୍ଜନ କଥା ଗୁଡ଼ାଏ କହୁଛ ? ଏ ବଳଆ, ହେରିକା ପରା କ'ଣ ପାଠ ଶାଠ ପଢ଼ିଲେଣି । କି ପାଠ ସବୁ ପଢ଼ୁଛନ୍ତି ? ଧନୁଟା ବସି ଏତେ ଶାସ୍ତ୍ର ସାଧିଲା । କର୍ମ କାଣ୍ଡିପାକ ମୁଖସ୍ଥ କଲା । ମାନ ଯୋଉ ମୂର୍ଖକୁ ସେଇ ମୂର୍ଖ ହୋଇ ରହିଗଲା !"

ଶୋଧା ଖାଇ ସମସ୍ତେ ତଳକୁ ମୁହଁ ପୋତିଲେ । ହରିଆ ମଲ୍ଲ ତେନ୍ତୁଳୀ କାଠର ପୋଡ଼ ଖୁଣ୍ଟାଟାକୁ ଫୋପାଡ଼ ଦେଇ ପାଖେଇ ଆସିଲା । ବୁଢ଼ା ଢଗଢେମାଳି ଉପରେ ସଂସ୍କୃତ ଶ୍ଳୋକ ବୁଝେଇଲା ପରି କହୁଥାନ୍ତି !—

—"ଉଣ୍ଢେଇ, ଡାକିନୀ, ପିଶାଚୁଣୀ, ମୁଁ ଦେଖି ନାହିଁ, କ'ଣ ତମେ ଦେଖିଚ ? ସେମାନେ ସବୁ ତାଙ୍କ ରାଜ୍ୟରେ ଭ୍ରମୁଛନ୍ତି । ସେ କ'ଣ ଆସି ତମ ପାଇଁ ଷାଠିଏ ଷାଠିଏ ବର୍ଷକାଳ ପାଇ ପଡ଼ଶା ହୋଇ ରହିବେ ? ଯେଉଁ ଜଳ ଆଶ୍ରୟରେ ଏ ଗାଁ ଏଯାଏଁ ବଞ୍ଚିଛି ସେ କୂଅକୁ କିଏ ଗଢ଼ିଛି ଜାଣିଚ ? ନିଜେ ଗୋଟି ଗୋଟି କରି ଇଟା ଖଞ୍ଜିଛି, ଜଣେ ମାତ୍ର ମିସ୍ତ୍ରୀ । ତା ନାଁ ଭଗୀରଥ ମିସ୍ତ୍ରୀ ! ଏଇ ବୁଢ଼ୀ ମିସ୍ତ୍ରାଣିର ଗେରସ୍ତ ! ଲୁହା କେତେଣୀରେ ମସଲା ଯୋଗେଇଛି ଏଇ ବୁଢ଼ୀ । ସେମାନଙ୍କ ପୁଅ ଝିଅ ଯୋଡ଼ିକ ଆମରି ଏଇ ପିଣ୍ଡାରେ ମୁଢ଼ି ଭୋଗେଇ ଧରି ଖାଉଥାନ୍ତି କୂଅଗଢ଼ା କାମ ଚାଲିଥାଏ । ନନ୍ଦ କାମରୁ ଉଠି ଆସି ମୋତେ କହିଥିଲା "ତମ ଗାଁକୁ ଗଙ୍ଗା ଆସିଲେ ଯାଆନ୍ତେ । ଏ କୂଅ କେବେ ଶୁଖିବ ନାହିଁ । ମୋ କାମ ସରିଗଲା, ମୁଁ ଯାଉଛି ।" ଚଣ୍ଡାଳ ଯାହା କହିଲା ତା' ହୋଇଗଲା । ପ୍ରତିଷ୍ଠା ଦିନ ସେ ଶୁଖିଲାଟାରେ ମରିଗଲା । ମାସେ ଯାଇ ନାହିଁ ପୁଅଟା ମରିଗଲା ! —ଏଇ ମାଇକିନାଟା ଧୈର୍ଯ୍ୟଧରି ଏଇଠି ରହିଲା ! ପ୍ରତିଦିନ ସେଇ କୂଅକୁ ଚାହିଁ-ଦେଲେ, ତାକୁ ବଳ ପାଇଲାପରି ଲାଗିଲା । ମୁଁ ଦେଖିଛି ମାସ ମାସଧରି ରାତିରେ ଏଇ କୂଅ ମୂଳେ ସେ ତା' ଗିରସ୍ତକୁ ବାହୁନି ବାହୁନି କାନ୍ଦିଛି ! ···

···ଏ କୂଅରେ ତା'ଆତ୍ମା ବନ୍ଧା ପଡ଼ିଛି । ତା' ପଛରେ ତମେ ଲାଗିଛ : ଏ କୂଅ ଶୁଖି ଯିବ ନାହିଁତ କ'ଣ ଆଉ ରହିବ । —ଆଉ ଅନାଚାର କର ନାହିଁ—ସେ ବୁଢ଼ୀଟା ଏ ଗାଁର ମା' ପରି । ତା' ଖିରି ଖାଇ ତାକୁ ମାରିବାକୁ ହାତ ଉଠାଅ ନାହିଁ । ବିପତ୍ତି ପଡ଼ିଯିବ !—"

ବୁଢ଼ା ଏକାବେଳକେ ଏତେ କଥା କହିଦେଇ ଧକେଇଲା ପରି ବସି ପଡ଼ିଲେ—ସମସ୍ତେ ଗୁମ୍‌ଖାଇ ସକଉଥିବା ପିଲାଗୁଡ଼ିଏ । "କେଡ଼େ କଥା ସତେ କେହି ଜାଣିପାରୁ ନଥିଲେ । ବାପୁଣୀ ବୁଢ଼ୀ ବେଳେ ବେଳେ, କୂଅଟାକୁ ସାଉଁଳି ଦେଇ ଚାଲିଗଲେ ବାରକଥା ଭାବି ଯାଉଥିଲେ । 'ମୋ କୂଅ' ବୋଲି ସେ କଥା କଥାକେ କହିଦେଲେ କେହି ବୁଝିପାରୁ ନଥିଲେ । ରାମ୍ପୁଗୁରୁ ବୁଢ଼ା ମଧ୍ୟ ଏଯାଏଁ କଥାଟା ପ୍ରକଟ କରି ନଥିଲେ । —ଅସୁମାରି କାଳ ହେଲା କିନ୍ତୁ ମିସ୍ତ୍ରାଣି ବୁଢ଼ୀ ତାଙ୍କ ଘରେ କାମକରି ପେଟ ପୋଷିଛି । —ତାଙ୍କ ପଛେଆସିଥିବା ପୁରୁଣା ପୁରୁଣା ବୁଢ଼ା ବୁଢ଼ୀମାନେ ବେଳେ ବେଳେ

ବଙ୍କାରେ କଥା ଠାର ହେଉନ୍ତି । ବାପୁଗୁରୁଙ୍କ ନାଁରେ ତେତେ ବଡ଼ କଥା କହି ଦେବାକୁ କାହାର ଜଭ ଲେଉଟେ ନାହିଁ । ମିସ୍ତ୍ରାଣି କନ୍ତୁ ତାଙ୍କ ଆଶ୍ରୟରେ ରହି ଆସିଛି ସେଇ କାଳରୁ । ସେଥିପାଇଁ ତାଙ୍କ ଘରେ କେବେ କେମିତି କଳି ଲାଗିଛି । ହନା ନକେଇଙ୍କ ବୋଉ ଚାଲିଗଲା ହନୁ, ସେକଥା ଲାଜି ଆସିଲାଣି । କନ୍ତୁ ହନା ନକେଇଙ୍କ ମନ ଭିତରେ ରାଗ କୁହୁଳୁଥିଲା ସବୁ ବେଳେ ।

ବଳିଆ ଆଦ ଟୋକା ମାନେ କୋହ ଟେକିଲା ପରି ହେଲେ । କ୍ଷୀର ଦେଉଥିବା ମା’ କଥାଟା ତାଙ୍କୁ ଭାରି ବାଧିଗଲା । ସେମାନେ ଦୌଡ଼ି ଯାଇ ଫେରି ଅସିଲେ । ବଳିଆ କହିଲା, “ଆମେ ତା’ ଖଣ୍ଟିଆ ଡଳେ ମୁଣ୍ଡିଆ ମାରି ଫେରିଲୁ । ସମସ୍ତେ ମୁଣ୍ଡିଆ ମାରବେ । ଆମର ଅପ୍ରାଧ ହେଇଚ ।
—ସମସ୍ତେ ସେଇ କଥାରେ ଏକ୍ମତ ହେଇଗଲେ । ଉଠିଲେ ‘ହୋ କନା ।

ବାପୁଗୁରୁ ପୁଣି ତାଙ୍କୁ ବାରଣ କଲେ । “ଆରେ ତା’ ଦୁଃଖରେ ସେ ଶୋଇଚ । ରାତି ଅଧରେ ତାକୁ କାହିଁକି ଏମିତି ହଇରାଣ କରିବ । ପାହାନ୍ତିଆ ହେଉ ।”

ବଳିଆ ବହିଲା, “ପାହାନ୍ତିଆ ହେଲେ ମୁଁ ଭାବିଛି କୂଅ ଭିତରେ ପଶି ସେ ପଥରକୁ ଫଟେଇବ ।

ତା’ସାଙ୍ଗ ଦୁ’ଜଣ କହିଲେ, “ଦଉଡ଼ି ଆଉ ଝୋଲା ସଜିଲ୍ କର ଆମେ ଉପରକୁ ମାଟି କାଢ଼ିବୁ । —କୂଅକୁ ଗହୀର କରିବା । ମା’କୁ ସନ୍ତୁଷ୍ଟ କରିବା । ଗଙ୍ଗା ପୁଣି ଝରିବେ । ମା’ କ୍ଷୀର ଝରିବ ।

ବାପୁଗୁରୁ ହାତ ପିଠିରେ ଲୁହ ପୋଛୁଲା ପରି ଜଣାଗଲା । ସେ ବଙ୍କା ବାଡ଼ ଉପରେ ଭରା ଦେଇ ବସିଥାନ୍ତି ।

ହନା ନକେଇ କହିଲେ, “ତମେ ଶୋଇପଡ଼ ନନା, ରାତି ଅନେକ ହେଲାଣି ।”

“ମୁଁ କ’ଣ ଶୋଇବାକରେ ହନୁ । ମୁଁ ଶୋଇଲେ ତ’ ଏକାଥରେ ଶୋଇଯିବି । ମୋତେ କେତେଦିନୁ ନିଦ ନାହିଁ । ମୁଁ ଖାଲି ସେମିତି ଗୁହିଁ ପଡ଼ିଥାଏ ।”

···ପାହାନ୍ତିଆ ପହରକୁ କୂଅ ଭିତରୁ ପଥର ଚଟାଣ ଦୁଲୁକିଲା । କିଆଁ ଝିଙ୍ଗ ଲ ଛୁଟିକଲା । ଛେଲା ଛେଲା ପାଣିଖିଆ ପଥର ଉଠିଆସିଲା ଉପରକୁ । ମହା ଉତ୍ସାହରେ ଭେଣ୍ଡିଆମାନେ ଗହ୍ୱରରୁ ଗହ୍ୱରକୁ ପାଣିଧାର ଖୋଜ ଗଲେ ।

ମିସ୍ତ୍ରାଣି ବୁଢ଼ୀକୁ ସକାଳ ପହରୁ ଜର । ସେ ବାଉଳୁ ଗୃଉଳୁ ହେଇ ଉଠିଲା । ସାଇବାଲ୍ ତାକୁ ଟେକପାଳ କଲେ । ସେବା କଲେ । ପଥିପାଚନ ଦେଲେ ।

ବୁଢ଼ୀ ଜରରେ ଫାଇଁ ଫାଇଁ ହେଇ କାହାକଥା ନମାନ ଗ୍ଲଲ ଆସିଲା କୂଅ ମୂଳକୁ । ସେତେବେଳକୁ ଖବର ଚଢ଼ି ଆସିଲାଣି ମୁଣ୍ଡ ଉପରକୁ । ଓଦା ଗାମୁଛା ପକେଇ, ଠେକା ଭିଡ଼ି, ବୁଢ଼ାମାନେ ଛତାଧରି କୂଅମୂଳେ ଠିଆ ହେଇଥାନ୍ତି । କାଳିଆ ଅକର୍ମଶିଳା ପରି ଦିଶୁଥିବା ପଥର ଛେଲା ଛେଲା ହୋଇ ଗୁଡ଼ ଯାଉଥାଏ । ଉପରେ କୁଡ଼ କୁଡ଼ ହେଇଗଦା ହେଉଥାଏ ।

ମିସ୍ତ୍ରାଣି ଟଳ ଟଳ ଆସି କୂଅ ନାଳ ଉପରେ ହାତ ସାଉଁଳ ଦେଲା । ଗୃହିଁଲା ଭ୍ରୂରୁ କୁଞ୍ଚେଇ ବସ୍ତୁଗୁରୁଙ୍କ ମୁହଁକୁ । ବାସ୍ତୁାଣି ଟିଏ । ହାଡ଼ଚମ ସାର ଅଶୀବର୍ଷର ବୁଢ଼ୀଟିଏ । ତା'ର ଫୁରୁଫୁରୁ ବାଳ । ଦାଦମାଳପରି ଗଣି ହେଉଥିବା ପଞ୍ଜରା । କୋରଡ଼, କୋରଡ଼ ଆଖି ।—

ସେ ଗୃହିଁଲା ବସ୍ତୁଗୁରୁଙ୍କୁ । ଗୃହିଁଲା କୂଅକୁ । ତା' ମୁହଁ କୁଞ୍ଚେଇଗଲା । ସେ ଦର ଦର କାନ୍ଦ ପକେଇଲା ।

"ଝିର ଫିଟିଗଲାରେ ଭାଇ । ଝିର ଫିଟିଗଲା—" କୂଅ ଭିତରୁ ବଳିଆ ପାଟିକଲା ।

ସମସ୍ତେ ଓହଟି ଗୃହିଁଲେ । ପଶ୍ଚିମ ପଟ ପଥର ଫାଟ ଭିତରୁ ଗବ ଗବ ହେଇ କୁତେଇ ହେଇ ପଡ଼ୁଛନ୍ତି ଗଙ୍ଗା ।

---

# ଏ ଜୀବନ ପଚ୍ଛେ ନର୍କେ ପଡ଼ିଥାଉ

ଶାନ୍ତନୁ କୁମାର ଆଚାର୍ଯ୍ୟ



ପୂର୍ବ କାଳରେ ବଳଦ ତ ନଥିଲେ । ଲୋକେ ବଳଦ ଭଳି ନିଜ ହଳ କାନ୍ଧରେ ଖଟୁ ଥିଲେ । ସେମାନଙ୍କ ଦୁଃଖ କଷ୍ଟ ଦେଖି ସ୍ୱର୍ଗରେ ଟି-ଟ୍‌ସାଙ୍ଗ୍ ପୁଂସାଙ୍କ ଆଖିରେ ଲୁହ ରହୁ ନଥାଏ । ଟି-ଟ୍‌ସାଙ୍ଗ୍ ପୁଂସା ଜଣେ ଦୟାଳୁ ଆତ୍ମା । ତାଙ୍କୁ ସ୍ୱର୍ଗର ବୋଧିସତ୍ତ୍ୱ କୁହାଯାଏ ।

ଟି-ଟ୍‌ସାଙ୍ଗ୍ ପୁଂସାଙ୍କ କାନ୍ଦଣା ଦେଖି ୟୁହୁଆଙ୍ଗ୍-ଟି ବଡ଼ ବ୍ୟସ୍ତ ହଉଥାନ୍ତି । ସେ ହଉଚନ୍ତି ନିଜେ ଭଗବାନ । ସ୍ୱର୍ଗର ବୋଧି ସତ୍ତ୍ୱଙ୍କୁ ସେ ଖୁବ ସ୍ନେହ କରନ୍ତି । ଦିନ ପରେ ଦିନ ବୋଧି ସତ୍ତ୍ୱଙ୍କ ଆଖିରୁ ଲୁହ ଝରୁଥିବା ଦେଖି ୟୁ-ହୁଆଙ୍ଗ-ଟି ମହା ବେସ୍ତରେ ପଡ଼ିଲେ । ସେତ ନିଜେ ଭଗବାନ, ଟି-ଟ୍‌ସାଙ୍ଗ ପୁଂସାଙ୍କ ମନ କଥା ନ ଜାଣନ୍ତେ କପରି । ସେ ସବୁ ଜାଣୁଥାନ୍ତି; କିନ୍ତୁ କିଛି କହୁ ନ ଥାନ୍ତି ! ତଥାପି ଦୟାଳୁ ଆତ୍ମାର ଦୁଃଖ ସେ ବା କେତେ ଦେଖନ୍ତେ, ସହନ୍ତେ ।

ଦିନେ ୟୁ-ହୁଆଙ୍ଗଟି ବୋଧି ସତ୍ତ୍ୱଙ୍କୁ ପଚାରିଲେ ।

କଅଣ ହେଇଚି କୁହତ ଭାଇ ! କ'ଣ ମର୍ତ୍ତ୍ୟକୁ ଯିବାକୁ ମନ ହଉଚି । ଲୋକଙ୍କ ଦୁଃଖ କଷ୍ଟ ଆଉ ଦେହରେ ସାଉ ନାହିଁନା କଅଣ ।

ଟି-ଝ୍ସାଙ୍ଗ୍ ପୁସା ଉତ୍ତର ଦେଲେ "ଦେଖୁଛତ ତଳେ ସେମାନେ ଙ୍କ କଷ୍ଟ ପାଉଛନ୍ତି । ହଳ କରିବାକୁ ବଳଦ ହଳେ ନାହାନ୍ତି ସେ ପିଲଗୁଡ଼ାକଙ୍କ ଆମର ନିଜେ ବଳଦ ଭଳି ଖଟୁଛନ୍ତି ଖରା ବର୍ଷା ଶୀତ କାକରରେ, ଆମେ ଏବେ ସ୍ୱର୍ଗରୁ ହଳେ ବଳଦ ପଠେଇ ଦେଲେ କେମିତି ହୁଅନ୍ତା । ତାଙ୍କ ଦେହ କଷ୍ଟ ତ ମେଣ୍ଟନ୍ତା ।

"ଧ୍ୟାତ୍" ଯୁ-ହୁଆଙ୍ଗ୍ ଟି ବଡ଼ ପାଟିଟାଏ କରି ଚମକେଇ ଦେଲେ ଦୟାଳୁ ବୋଧି ସତ୍ତ୍ୱଙ୍କୁ । ତାପରେ ଭାରି କଅଁଳ ସ୍ୱରରେ କହିଲେ ପୁଣି "ଆରେ ପୁସା ତମେ ଜାଣିନ ସେ ମଣିଷଗୁଡ଼ାକୁ । ତମେ ସିନା ଗୋଟି ପଣେ ଦୟାଳୁ ଆତ୍ମାଟିଏ, ଆଖିରୁ ତୁମର ଗଳଗଳ ଗଳି ପଡୁଛି ଲୁହ ମଣିଷଙ୍କ ଦୁଃଖ କଷ୍ଟ ଦେଖିଲ ଖଣୁ । ହେଲେ ମଣିଷଙ୍କର ଆତ୍ମା ତମ ଭଳି ନୁହେଁ । ସେଗୁଡ଼ାକ ଭାରି ଛେଚଡ଼ା ନିର୍ଦ୍ଦୟ ଜୀବ । ଅଇଚ୍ଛୁକା ତମେ ତାଙ୍କ ପାଇଁ ବଳଦ ହଳେ ପଠାଇବ କହୁଚ, ଭଲକଥା, ତେବେ ସେ କ'ଣ କରିବେ ଜାଣ ? ବଳଦଠୁଁ ଜୀବନ ବାହାର କରି କାମ ନେବେ । ତାକୁ ଛୁଆଠୁଁ ବୁଢ଼ା ହବାଯାକ ଖଟେଇବେ, ସେଇଠୁ ଯେମିତି ବଳଦ ଦେହର ବଳ କମିବ ତାକୁ ହାଣିବେ, ତା ମାଉଁସ ଖାଇବେ ।

ସେ ପାଜି ଗୁଡ଼ାକୁ ତମେ ସିନା ଜାଣିନ, ହେଲେ ମତେ ତାଙ୍କ ଆଗା ମୋଡ଼ା ସବୁ ଜଣା । ସେ ବାପୁ ବୁଦ୍ଧି ଗୁଣ୍ଡ ବାପ ବୋଧି ସତ୍ତ୍ୱ ମଣିଷଙ୍କୁ ଅଇଚ୍ଛୁକା ଦିନ କେତେ ଆଉ ଅନେଇଲ ଭଲ, ଅଗ ତମ ଦୁଃଖ ଯାଉ ତମ ଆଖିରୁ ଲୁହ ବନ୍ଦ ହଉ । ପରେ ଦେଖିବା ମଣିଷଙ୍କ କଥା ।

କିନ୍ତୁ ଟି ଝ୍ସାଙ୍ଗ୍ ମୁହାଁଚ ଛୁଡ଼ିବା ଜନ୍ତୁ ନୁହନ୍ତି । ସେ ଯୁ-ହୁଅଙ୍ଗ୍‌ଟେଙ୍କ କଡ଼ା କଥା ଶୁଣି ମଣିଷଙ୍କ ପାଇଁ ଆହୁରି ଯୁକ୍ତି ଶୁଣେଇଲେ—

—ଆପଣ ସେଥିଲାଗି ଜମାରୁ ଚିନ୍ତା କରନ୍ତୁ ନାହିଁ । ମଣିଷଙ୍କୁ ଆପଣ ଯେତେ ଖରାପ ଭାବଚନ୍ତି, ସେମାନେ ପ୍ରକୃତରେ ସେତେ ଖରାପ ନୁହନ୍ତି । ଯଦି ବିଶ୍ୱାସ ନହଉଚି ତେବେ ମୁଁ ତାଙ୍କପେଇଁ ମାନ ହେଲି । ଆପଣ ଦେଖୁଥାନ୍ତୁ । ଯେବେ ଦେଖିବେ ମଣିଷ ଗୋ[illegible]ମାରିଲ୍ ତା ମାଉଁସ ଖାଇଲ୍,

ତା' ତମତ୍ତା ଗ୍ଭଲନ୍ତ ମୋତେ ତା ଲାଗି ଦାୟୀ କରିବେ । ମୁଁ ଯିବ ନରକକୁ । ହଁ ହଁ ତା ଅପକର୍ମ ଲାଗି ମୁହିଁ ଯିବ ନରକକୁ । ହେଲେ ମଣିଷ ଏମିତି କାମ କଦାଚ କରିବ ନାହିଁ, ମହାପ୍ରଭୁ ! କଦାଚ କରିବ ନାହିଁ ।

ବୋଧିସତ୍ତ୍ୱଙ୍କ ବ୍ୟାକୁଳ ନିବେଦନ ଶୁଣି ୟୁ-ହୁଆଙ୍ଗ୍ ଟି ଆଉ କ'ଣ କରନ୍ତେ, କହିଲେ "ହଉ ଯଦି କହୁଚ —ସେଇଆ କରିବ । ଆଗରେ କଏ ଅଛରେ, ହଳେ ବଳଦ ପଠେଇଲ ମର୍ତ୍ତ୍ୟକୁ ।"

ଏତିକ କହୁ କହୁ ବଳଦ ଯାଇ ପହଞ୍ଚିଗଲ ମର୍ତ୍ତ୍ୟରେ । ମଣିଷ ସେ ଜନ୍ତୁକୁ ଦେଖି ଦେଖି କେତେ ସଙ୍ଗରେ ବାନ୍ଧି ପକାଇଲ ତାକୁ । କୁଣ୍ଡା ତୋରାଣି ଘାସ ପାଳ ଖାଇବାକୁ ଅଜାଡ଼ି ଦେଲ ସେ ଜନ୍ତୁ ଆଗରେ । ଖାଇ-ପିଇ ତୃପ୍ତ ହେଲାପରେ ବଳଦକୁ ନେଇ ହଳରେ ଯୋଚି ଦେଲ ମଣିଷ, ଗିଡ଼ ଗିଡଆ କରି ହଳ ଲଙ୍ଗଳକୁ ଟାଣି ନେଲ ସେ ଜନ୍ତୁ ପହିଲେ ଟହିଲେ, ତାକୁ ମଣ କରିବାକୁ ପାଞ୍ଚଣ ପାହାର କଷି କରି ଚଡ଼ାଇଲ ମଣିଷ ବଳଦ ପିଠିରେ । ତଥାପି ହଳରୁ ଫିଟାଇଲ ପରେ ଆଚ୍ଛାକରି ଖାଇବାକୁ ପିଇବାକୁ ଦେଇ ବଳଦକୁ ସୁଖରେ ରଖିଲ ମଣିଷ ।

"ଚି-ଚ୍ସାଙ୍ଗ୍ ପୁଂସା ଉପରୁ ଅନେଇଥାନ୍ତି କେତେ ଖୁସିରେ ତଳକୁ । ତଳେ ମଣିଷର ଲୀଳା ଗ୍ଭଲଥାଏ ବଳଦକୁ ନେଇ । ନିତି ସକାଳୁ ବଳଦ ଗୁଡ଼ାକୁ ଖୁଏଇ ପିଏଇ ବିଲକୁ ନଉଥାଏ ମଣିଷ । ଧାନରେ ବିଲରେ ହଳ କାମ କରି ସଂଜକୁ ଖୁସିରେ ଫେରୁଥାନ୍ତି ସମସ୍ତେ ।

ଦେଖିତନ୍ତି ତ, ଚି-ଚ୍ସାଙ୍ଗ୍ ପୁଂସା ମଣିଷର ଆଉ ବଳଦର ସୁଖରେ ବିହ୍ୱଳ ହୋଇ ଆହୁରି ଦଫାଏ କାନ୍ଦି ପକାଇ ଡାକଲେ ୟୁ-ହୁଆଙ୍ଗ୍ ଟିଙ୍କୁ । ସେ ଡାକ ଶୁଣି ୟୁ-ହୁଆଙ୍ଗ୍ ଟି ତଳକୁ ଅନେଇବାରୁ ବୋଧି ସତ୍ତ୍ୱ କହିଲେ, "ମୁଁ କ'ଣ କହୁଥିଲ ! ମଣିଷକୁ ଆପଣ ଯେତେ ଖରାପ ଭାବନ୍ତି ସେ ସେମିତି ନୁହେଁ ଜମାରୁ । ଦେଖିଲେ ତଳେ ମଣିଷ ବଳଦ ସମସ୍ତେ କ ଖୁସିରେ ଅଛନ୍ତି ।" ସ୍ୱର୍ଗର ରଜା ୟୁ-ହୁଆଙ୍ଗ୍ ଟି ଗୁମ୍ ମାରି ରହିଗଲେ, କାହିଁକି କେଜାଣି ତାଙ୍କ ପାଟିରୁ ବଚନ ବାହାରିଲ ନାହିଁ ସେତେବେଳେ ।

ଏଥି ଭିତରେ କେତୋଟି ଧନ ଅବା କଟିଥିବ କେଜାଣି ।

ଧନେ ମର୍ତ୍ତ୍ୟରୁ କାନ୍ଦଣା ଶୁଣି ୟୁ-ହୁଆଙ୍ଗ୍ ଟିଙ୍କର ଧ୍ୟାନ ଆଗ ଭାଙ୍ଗିଗଲା । ଆଖି ନ ଫିଟାଉଣୁ ସେ କହି ପକାଇଲେ—

"ଆରେ ଆରେ ଏତ ଆମ ବଳଦର କାନ୍ଦଣା, ତାକୁ କିଏ ମାରି ପକାଉଛି ନା କଅଣ !"

ବୋଧିସତ୍ତ୍ୱ ଟି-ଟ୍ସାଙ୍ଗ୍ ପୂସାଙ୍କ ଧ୍ୟାନ ମଧ୍ୟ ଭାଙ୍ଗିଗଲାଣି ସେତେବେଳକୁ । ଦୁହେଁ ମର୍ତ୍ତ୍ୟକୁ ଅନାଇ ଦିଅନ୍ତେ ସବୁକଥା ସ୍ପଷ୍ଟ ହୋଇ ଦେଖାଗଲା ଦିହିଁଙ୍କୁ ।

ସେତେବେଳକୁ ମର୍ତ୍ତ୍ୟରେ ବୁଢ଼ା ବଳଦକୁ ହାଣିବା ପାଇଁ ମଣିଷ ଗୋଟାଏ କୁରାଢ଼ୀ ନେଇ ଠିଆ ହୋଇଥାଏ । ବଳଦ ଭେଁ ଭେଁ କାନ୍ଦୁଥାଏ । ଆଉ କହୁଥାଏ "ଜୀବନଟା ଯାକ ତ ତମର ଉପକାର କଲି, ଏବେ ବୁଢ଼ା ହୋଇଗଲି ଆଉ ଜୋର କାହିଁ ମୋ ଦେହରେ । ମତେ ଟିକିଏ ଶାନ୍ତିରେ ମରିବାକୁ ଦେ ଭାଇ । ଆଉ କେଇଟା ଦିନ ବା ମୁଁ ବଞ୍ଚିବି ?

କିନ୍ତୁ ମଣିଷ ତ ବଳଦଠୁଁ ପୂରା ଉପକାର ପାଇ ନ ଥାଏ ସେ ଯାକେ । ତା' ମାଉଁସ କେଡ଼େ ସୁଆଦ । ତାକୁ ଖାଇବ ତା ଚମଡ଼ାରେ ଯୋତା ପିନ୍ଧିବ, ତା ଶିଙ୍ଗରେ ପାନିଆଁ ବନେଇବ, ତେବେ ଯିନା ଯାଇ ବଳଦଠୁଁ ପୂରା ଉପକାର ମିଳିବ !

ଏଇଆ ଭାବି ମଣିଷ ଶେଷରେ ଏକା ଚୋଟକେ ବଳଦର ମୁଣ୍ଡ ଗଣ୍ଡି ଅଲଗା ଅଲଗା କରି ରଖିଦେଲା ।

ତଳର ଏ ଦୃଶ୍ୟ ଉପରକୁ କେଡ଼େ ବିଭତ୍ସ ଦେଖାଯାଉଥାଏ ସେତେବେଳେ କିଏ ଭଲା ତାକୁ କହନ୍ତା କଥାରେ ?

ସ୍ୱର୍ଗର ରାଜା ୟୁ-ହୁଆଙ୍ଗ୍ ଟି ବୋଧିସତ୍ତ୍ୱ ଟି-ଟ୍ସାଙ୍ଗ୍ ପୂସାଙ୍କ ମୁହଁକୁ କଟମଟ କରି ଅନେଇଲେ, କହିଲେ "ପୂସା ! ଦେଖିଲ ତ ତମ ମଣିଷର ବିଚାର । ଏଇ ବଦମାସଙ୍କ ପାଇଁ ତମେ ମାନ ପଡ଼ୁଥିଲ ? ହଉ, ଯାଅ ବାତ

ଏଥର ନରକକୁ । ତମକୁ ଖାଲି ସେତକ ଦଣ୍ଡ ମିଳୁ ନାହିଁ, ଆହୁରି ଅଛି—ଶୁଣ !

ନରକରେ ତମେ ଯାହା ଯୁଗ ରହିବ ସେତେ ଯୁଗ ପର୍ଯ୍ୟନ୍ତ ତମକୁ ଅନ୍ଧ ପରି ଆଖି ବନ୍ଦ କରିବାକୁ ପଡ଼ିବ । ଏଇ ହେଲା ତମର ମଣିଷ ଲାଗି ମାୟା ହବାର ଫଳ । ମନେରଖ, ଆଉ ମଣିଷଙ୍କୁ ଅନେଇବ ନାହିଁ କି ପୁଣି ମୁକ୍ତି ଦଣ୍ଡ ନିଜକୁ ନିଜେ ଡାକ ଆଣିବ ନାହିଁ, ହଉ ଯାଅ ଏଥର ।

ଭଗବାନଙ୍କ ଆଦେଶ ପାଇ ପାଇ ବୋଧିସତ୍ତ୍ୱ ଯାଇ ନରକରେ ପଡ଼ିଲେ, ସତକୁ ସତ ତାଙ୍କ ଆଖି ବନ୍ଦ ହୋଇଗଲା । ମଣିଷକୁ ଦୁଃଖରୁ ଉଦ୍ଧାର କରିବା ଲାଗି ବୋଧିସତ୍ତ୍ୱ ନିଜେ ଏତେ କଷ୍ଟ ପାଇଲେ ସୁଦ୍ଧା ସେ ସେମିତି ଆଖି ବୁଜି ନରକରେ ଯୁଗ ଯୁଗ ଧରି ବସିଛନ୍ତି । ଶୁଣାଯାଏ ପ୍ରତି ବର୍ଷ କାର୍ତ୍ତିକ ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଦିନ ବୋଧିସତ୍ତ୍ୱଙ୍କ ଆଖି ଅଳ୍ପ ଖୋଲିଯାଏ । ଭଗବାନ ତାଙ୍କ ତପସ୍ୟାରେ ଖୁସି ହୋଇ ଅନୁମତି ଦେଇଛନ୍ତି ।

ସେଇଦିନ ରାତିରେ ବୋଧିସତ୍ତ୍ୱଙ୍କ ଲାଗି ମଣିଷମାନେ ଦୀପ ଜାଳନ୍ତି ଓ ତାଙ୍କୁ ପ୍ରାର୍ଥନା କରନ୍ତି । ଦରଖୋଲା ଆଖିରେ ମଣିଷଙ୍କୁ ଅନେଇ ବୋଧିସତ୍ତ୍ୱ କଅଣ ଭାବୁଥିବେ କେଜାଣି । ତଥାପି ତାଙ୍କ ଆଖିରୁ ଲୁହ ଝରଝର ହୋଇ ଝରି ପଡ଼ୁଥାଏ ।

(ଏକ ଦୁର୍ଲଭ ଚୀନ ଲୋକକଳ୍ପ ଉପରେ ଆଧାରିତ)

---



# କବିର ଇଚ୍ଛା-ମୃତ୍ୟୁ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

ସହରର ସବୁଠୁଁ ବଡ଼ ପଡ଼ିଆରେ ଦିନେ ହଠାତ୍ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଗଲା । ଚତୁର୍ଦ୍ଦିଗରେ ଖୁଂଟମାନ ପୋତା ହେଲା । ଘେରମାନ ତିଆରି ହେଲା । କେଉଁଠି କେଉଁମାନେ ବସିବେ ଲେଖି ଜଣାଇ ଦିଆଗଲା ।

ପଡ଼ିଆର ଶେଷ ପ୍ରାନ୍ତରେ ବିରାଟ ଉଚ୍ଚା ଏକ ମଂଚ ତିଆରି ହେଲା । ମଂଚର ଚାରି କୋଣକୁ ଫୁଲମାଳ ପିନ୍ଧାଇ ଯୋଡ଼ାଇ ଦିଆଗଲା । ମଂଚ ଉପରେ ଲମ୍ବା ଲମ୍ବା କାଠ ଗଣ୍ଡି ଉପରେ ଆଡ଼ ଭାଗରେ ମଧ୍ୟମ ଆକାରର କାଠ ଖଣ୍ଡମାନ ସଜାଇ ଗୋଟିଏ ଚିତା ତିଆରି ହେଲା । ମଝି ଫାଙ୍କଗୁଡ଼ିକରେ କର୍ପୂର ଓ ଶୁଖିଲା ଡାଳମାନ ଗେଞ୍ଜି ଦିଆଗଲା ପରେ ସେ ସବୁକୁ ଭିଜାଇ ଦିଆଗଲା ଘିଅରେ । ଚିତାରୁ ଘିଅ ତଳକୁ ଝରି ପଡ଼ୁଥାଏ । ବୋହି ଯାଉଥାଏ । ବଡ଼ ପଡ଼ିଆଟି ମହକି ଯାଉଥାଏ । ମଞ୍ଚକୁ ଘେରି ଠିଆ ହୋଇଥିଲେ ପ୍ରହରୀ ଗଣ । ତାଙ୍କ ପଛକୁ ରକ୍ଷୀ ଗଣ । ସମଗ୍ର ପଡ଼ିଆଟିକୁ ଘେରି ଠିଆ ହୋଇଥିଲେ ସୈନ୍ୟ ଗଣ । ସେମାନଙ୍କର ବସ୍ତ୍ରଯୁକ୍ତ ପିତ୍ତଳ ବୋତାମ ଓ ନାମ ପଟ୍ଟରେ ଅପରାହ୍ଣର ସୂର୍ଯ୍ୟ କିରଣ ଚକ୍ ଚକ୍ କରୁଥାଏ । କେଉଁ ଏକ ସ୍ଥାନରେ ଦଳେ ସଙ୍ଗୀତଜ୍ଞ ବିଭିନ୍ନ ପ୍ରକାର ଯନ୍ତ୍ରରୁ ଧ୍ୱନି ଓ ଶବ୍ଦର ଖଲସ କରୁଥାନ୍ତି ।

ପଡ଼ିଆରେ ସମବେତ ନଗରବାସୀଙ୍କର ନଜର ବାରମ୍ବାର ପଡ଼ିଆରେ ବାମ ପାଖରେ ଥିବା ଶାସନ-ପ୍ରସାଦ ଆଡ଼କୁ ଟାଣି ହୋଇ ଯାଉଥାଏ ।

କିଛି ସମୟ ପରେ ଦେଖାଗଲା ଶାସନ-ପ୍ରାସାଦର ପତାକା ଉତ୍ତୋଳନ ସ୍ତମ୍ଭ ଉପରକୁ ଅତ୍ୟନ୍ତ ଧୀର ଗତିରେ ଗୋଟିଏ କଳା ପତାକା ଆରୋହଣ କରୁଛି । ତା' ପରେ ପରେ ସେଇ ପ୍ରାସାଦରୁ ଗୋଟିଏ ଲମ୍ବାକାର ପଡ଼ିଆ ଆଡ଼କୁ ନିଃଶବ୍ଦରେ ଗଡ଼ି ଆସିବାର ଲକ୍ଷ୍ୟ କରାଗଲା ।

କାର୍ ଟି ଆସି ମଞ୍ଚ ନିକଟରେ ଅଟକି ଗଲା । ଭିତରୁ ଦୁଇଜଣ ପଦାକୁ ଆସିଲେ । ନଗରବାସୀ ଦେଖିଲେ ତନ୍ମଧ୍ୟରୁ ଜଣେ କବି ଓ ଅନ୍ୟ ଜଣକ ହେଉଛନ୍ତି ସତର ବର୍ଷ ତଳେ ମାତ୍ର ପାଞ୍ଚ ବର୍ଷ ସକାଶେ ନିର୍ବାଚିତ ହୋଇ ଥିବା ଶାସନ ମୁଖ୍ୟ ।

ଛାତ ପାଖର ଡ଼ିକ୍କି ଖୋଲି ଡ୍ରାଇଭର ଦୁଇଟି ଲୁହା ଚଉକି କାଢ଼ିଲା ଓ କାରର ପଛ ପାଖରେ ଲଗିଥିବା ଆଲୁମିନିଅମ ସିଡ଼ି ବାଟ ଦେଇ ଉପରକୁ ଚଢ଼ିଗଲା । କାରର ଛାତରେ ଚଉକି ଦୁଇଟି ପକାଇ ଦେଇ ଡ୍ରାଇଭର କାର ଭିତରକୁ ଫେରି ଆସିଲା । ଡେସ୍କ ବୋର୍ଡ ଉପରୁ ମାଇକ୍ ଟିଏ ଆଣି ସେ ବଢ଼ାଇ ଦେଲା ଶାସନ ମୁଖ୍ୟଙ୍କ ହାତକୁ । ଶାସନ ମୁଖ୍ୟ ଓ କବି ଦୁହେଁ କାର୍ ର ପୃଷ୍ଠାରୋହଣ କଲେ । ସେଇ ଉପରେ ପଡ଼ିଥିବା ଦୁଇଟି ଲୁହା ଚଉକିରେ ଦୁହେଁ ବସିଲେ । ଆଂଠ୍ ଉପରେ ପାପୁଲି ଘୋଡ଼ାଇ ଗମ୍ଭୀର ମୁଖଭଙ୍ଗୀ କରି ସେ ଦୁହେଁ ବସି ରହିଥିଲା ବେଳେ ରାଷ୍ଟ୍ରର ମୁଖ୍ୟ ଆଲୋକ ଚିତ୍ର ଉତ୍ତୋଳନକାରୀ ଆସିଲେ ଓ ବାମ, ଡାହାଣ, ସାମ୍ନା କ୍ରମରେ ତିନୋଟି ପଟରୁ ଫଟୋ ଉଠାଇ ଘରି ଫେରିଗଲେ ।

ତାଙ୍କର ପ୍ରସ୍ଥାନ ପରେ ଶାସନ ମୁଖ୍ୟ ଠିଆ ହେଲେ ଓ ହାତରେ ଧରିଥିବା ମାଇକ୍ ଟିକୁ ପାଟି ପାଖକୁ ନେଇ ଇଚ୍ଛା ମୃତ୍ୟୁର ଯୁକ୍ତିଯୁକ୍ତତା ସପକ୍ଷରେ ଶାସକୀୟ ଯୁକ୍ତିମାନ ପରିବେଷଣ ଆରମ୍ଭ କଲେ । ଏ ସମ୍ବନ୍ଧରେ ସେ ଅନେକ ସୂତ୍ରରୁ ବିଭିନ୍ନ ମତ ଉଦ୍ଧାର କଲେ । ସ୍ୱେଚ୍ଛାରେ ମୃତ୍ୟୁ ବରଣ କରିଥିବା ଲୋକମାନଙ୍କ ବିଷୟରେ ଅନେକ କଥା ଲେଖା ଯାଇଛି । ଅମୁକ ନିଜ ଇଚ୍ଛାରେ ଜୀବନ ଦାନ କରିଥିଲେ । ଏଇ ଏଇ ଦେଶରେ ଏତେରୁ ଏତେ ବୟସର ନାଗରିକମାନଙ୍କୁ ସ୍ୱେଚ୍ଛାମୃତ୍ୟୁ ଅଧିକାର ଦେବାର ବିଧାନ ରହିଛି । ପୁରାଣ, ଚିକିତ୍ସା ବିଜ୍ଞାନ, ସମରଶାସ୍ତ୍ର ଓ ଧର୍ମପୋଥି ସବୁଠି ଏଇ କଥା ରହିଛି । ତେଣୁ ବିଶେଷ କିଛି ନୂତନ ଘଟଣା ଘଟିବାକୁ ଯାଉନାହିଁ ।

ତାପରେ ସେ ଉପସ୍ଥିତ ନଗରବାସୀଙ୍କୁ ସ୍ପଷ୍ଟ ଓ ପ୍ରାଞ୍ଜଳ ଭାବରେ ଜଣାଇ ଦେଇଥିଲେ ଯେ, ଜବାନଙ୍କର ଇଚ୍ଛା ବିରୁଦ୍ଧରେ ଯିବାକୁ ତାଙ୍କର କୌଣସି ଆଗ୍ରହ ନ ଥିବାରୁ ଏ ଆୟୋଜନ । ନିଜର ଅଭିଳଷିତ ମୃତ୍ୟୁଲାଭ ପକାଶେ ସୁସଜ୍ଜିତ ଶବ୍ୟା ପ୍ରବେଶ ପୂର୍ବରୁ ଇଚ୍ଛା କଲେ ସେ କିଛି କହନ୍ତୁ । ଏହା ସମସ୍ତଙ୍କର ଇଚ୍ଛା ।

ଜବ ଉଠିଲେ । ପ୍ରଥମେ ଧନ୍ୟବାଦ ଦେଲେ ଜନନୀ, ଜନକ, ଜନ୍ମଭୂମି ଓ ଜନତାଙ୍କୁ ଏକା ସାଙ୍ଗରେ ବନ୍ଧନୀବନ୍ଧ କରି ଏଥି ପକାଶେ ଯେ, ଏ ସମସ୍ତେ ତାଙ୍କୁ ଯଥାକ୍ରମେ ଜନ୍ମିବାର, ବଂଚିବାର ଖାଇଁବାର ଓ ଘଟିବାର ସ୍ୱାଦ ଚଖାଇଛନ୍ତି । ଏସବୁ ସ୍ୱାଦର ଏକରସତାର କ୍ଲାନ୍ତି ଓ ବିରକ୍ତି ଓ ଚଟ୍‌ଚଟା ଭାବ ଜଣା ନ ଥିଲେ, ବେଶ୍ ଭଲ କରି ଜଣା ନ ଥିଲେ ଏ ନୂଆ ସ୍ୱାଦ ଆଡ଼କୁ କାହିଁକି ଚ଼ଳ ଥାଆନ୍ତି ? ଏବେ ସବୁ କିଛି ଅଟକାଇ ଦେବାର ସ୍ୱାଦ ବୁଝିବାକୁ ପ୍ରବଳ ଇଚ୍ଛା ହେଉଛି !

ସେ ଆହୁରି କହିଲେ, ଜୀବନକାଳ ମଧ୍ୟରେ ଅନେକ ମୃତ୍ୟୁ ଦେଖିଛନ୍ତି ଓ ତା ପରେ ପରେ ବିଭିନ୍ନ ପ୍ରକାର ଓ ବାଗର ମରଣର ଏକ ତାଲିକା ଗାଇ ଗଲେ ମରଣ ଗାଥାରୁ ।

ଜାତିର ସମ୍ମାନ ପାଇଁ ଜ୍ଞାତିର ଇଜ୍ଜତ ପାଇଁ ବ୍ୟକ୍ତିର ମହତ ପାଇଁ ମଣିଷ କାଟ ଖାଇଛି । ଖଣ୍ଡେ ରୁଟି ପାଇଁ, ସୂତେ ଲୁଗା ପକାଶେ, ହାତେ ଜମି ନିମନ୍ତେ, ଡାଳେ ଗଛର ଦାୟରେ ମଣିଷ ହାଣ ଖାଇଛି । ସତ କହି ମଣିଷ ମରିଛି ।

ମିଛ କହି ମଣିଷ ମରିଛି । ମୃତ୍ୟୁନ୍ମୁଖତା ଜୀବନର ଏକ ବଶିଷ୍ଟ ପ୍ରବୃତ୍ତି । ଯେ କୌଣସି କାରଣରୁ, ଯେ କୌଣସି ସ୍ଥାନ ଓ ସମୟରେ ମୃତ୍ୟୁ ଆସି ପହଂଚପାରେ । ସର୍ବ ପ୍ରଥମେ ଯମ ମୃତ ହେଲେ ଓ ମୃତ୍ୟୁ ମୁଲକର ମାଳକ ବୋଲାଇଲେ । ସବୁଆଡ଼େ ସେ ଚର୍ଚ୍ଚିତ ହୋଇ ସବୁଠାରୁ ବେଶୀ ପରିଚିତ । ସଂସାର ଓ ମନୁଷ୍ୟର ସକଳ କଳ୍ପନା ଓ ସତ୍ୟର ଧାରକ ସେ । ତାଙ୍କର ଅଙ୍ଗୁଳି ଅଗରେ ଘୂରୁଥାଏ କାଳଚକ୍ର । ପ୍ରତ୍ୟେକ ଘଣ୍ଟା, ଘଞ୍ଜିକା, ନକ୍ଷତ୍ରର ଅନ୍ତରାଳରେ ଉପସ୍ଥିତ ଥାଆନ୍ତି ସେ !

ତାଙ୍କ ପ୍ରସଙ୍ଗରେ ଅନେକ କଥା କୁହାଯାଇ ପାରେ । ତେବେ ମୂଳରୁ ହିଁ ଆରମ୍ଭ କରିବା ସଙ୍ଗତ ହେବ । ମୃତ୍ୟୁର ମୂଳରେ ଜୀବନ ଥିଲା, ବିକାଶ ଥିଲା, ଉତ୍ସବ ଥିଲା । ନିରୁତ୍ସବଭୂମଣ୍ଡଳର ଆଦି— କବି ତାର ପ୍ରିୟ ମଣିଷର ଧଣ୍ଡା ଶବକୁ ଲକ୍ଷ୍ୟ କରି ଉଚ୍ଚାରଣ ଓ ଛାପରେ ଲିପିବଦ୍ଧ କରିଥିଲା ନିଶ୍ଚିତ ସମ୍ଭାବନା ଓ ନିର୍ଦ୍ଧାରିତ ସତ୍ୟ-ସମର୍ଥିତ ଶବ୍ଦାବଳୀ । ଶତ ସହସ୍ରାଧିକ କୁଣ୍ଡରୁ ମୁକୁଳିଥିବା ଆନ୍ତରିକ ସ୍ୱରରେ, ଗୀତରେ, କବିତାରେ, ଶ୍ଳୋକରେ, ମନ୍ତ୍ରରେ, ସାହିତ୍ୟରେ, ଇତିହାସରେ, ସୂତ୍ରରେ, ଶାସ୍ତ୍ରରେ, ଆବେଗରେ, ଆଖ୍ୟାନରେ, ବିଶ୍ୱାସରେ, ମତରେ ସେଇ ଗଜେଇ, ଚେରେଇ, ଉଠି, ମେଲେଇ, ବଢ଼ିଲେଇ, ଫୁଟି, ମଉଳି, ଝରି ଯିବାର କଥା, କାହାଣୀ, ଗଳ୍ପ ।

ମରିଗଲେ ସତେ କଣ ମୁଁ ସରିଯିବି ?

ମୋ ମନ ଭିତରେ ଏ ପ୍ରଶ୍ନଟି ଉଦୟ ହେଲା ବେଳକୁ ମୋର ମନେ ହେଉଛି ଯେ, ମୁଁ ଯେମିତି ନିଜକୁ ନିଜେ ଜେରା କରି ବସିଲିଣି । କିନ୍ତୁ ତହିଁରେ କ୍ଷତି ବା କଣ ? କବିମାନେ ସବୁଠୁ ବେଶୀ ନିଜ କଥା କହନ୍ତି ଏ କଥା କିଏ ବା ନ ଜାଣେ ?

ଯମ ଯାହା ଦେଇ ନାହିଁ ତାହା ଫେରାଇ ନେଇ ପାରିବ ନାହିଁ । ଆତ୍ମାର ପ୍ରତ୍ୟାବର୍ତ୍ତନ ବେଳେ ନ୍ୟାସ୍ତବନ୍ତ ପ୍ରହରୀ ପଥ ଓଗାଳିବା ପାଇଁ ରୁଥି ଆସିବା ପୂର୍ବରୁ ଗନ୍ତବ୍ୟ ଖିପ୍ରତାରେ ଆତ୍ମା ଅତିକ୍ରମ କରିଯିବ ସୀମାନ୍ତ । କୋଷମୟ ଶରୀରପରି ସଂସାରମୟ ବ୍ରହ୍ମାଣ୍ଡ । ଯାହା ଅଛି, ତାହା ନଷ୍ଟପ୍ରାୟ ଯିବ । କେହି, ଅଟକାଇ, ରଖି, ସାଇତି, ସମ୍ଭାଳି ପାରିବେ ନାହିଁ । ପୂର୍ବ-ବାଞ୍ଛିତ ପଥରେ ଉଲ୍ଲସିତ ଯାତ୍ରୀଟିଏ ପରି ଚାଲିଯିବ, ଯାହା ଅଛି ମୋର ଶରୀର ଅନ୍ତରାଳ ଗଭୀରତାର ନିମ୍ନରେ ।

ମୋର ପ୍ରାପ୍ୟରୁ ମୋତେ କେହି ବଞ୍ଚିତ କରି ପାରିବ ନାହିଁ । ନିଶ୍ଚୟ ସମସ୍ତ ଆକାଶର ବ୍ୟାପ୍ତି ଲଙ୍ଘି ଫେରି ଆସିବ ସୁଦୂର ଉଚ୍ଚତାର ଊର୍ଦ୍ଧ୍ୱରେ ବ୍ୟୋମ ପ୍ରଦକ୍ଷିଣରତ ମୋର ପ୍ରିୟ ବିହଙ୍ଗ । ମୋର ମୃତ୍ୟୁ ।

ଶେଷ ନାହିଁ । ସମାପ୍ତି ନାହିଁ । ବିଲୁପ୍ତି ନାହିଁ । ମରିଯିବି ମୁଁ ଜାଣେ, ମାତ୍ର ସରିଯିବି ନାହିଁ । ଆସିଥିଲି, ତେଣୁ ନିଶ୍ଚୟ ଫେରିଯିବି ।

କବି ଆହୁରି ମଧ୍ୟ କହିଲେ, ଇଚ୍ଛା କଲେ ଉଦ୍ଧରଣ ଚଞ୍ଚିକାର ସପ୍ତଦଶଶ ସଂସ୍କରଣରୁ ମୃତ୍ୟୁ ବିଷୟକ ପଦ, ବାକ୍ୟମାନ ପଢ଼ି ଶୁଣାଇ ଦେଇ ପାରିବି । ମାତ୍ର ଲକ୍ଷ୍ୟ ଠାରୁ ଦୂରରେ ରହିଯିବାର ଇଚ୍ଛା ମୋର ନାହିଁ । "ମୃତ୍ୟୁ, ତୁମେ ନିଶ୍ଚୟ ଆସିବ ଦିନେ ଫେରି, ମୋର ହଜି ଯାଇଥିବା ପୁଅଟି ପରି," ଏତିକ କହି ଜନନୀ ମୋର ସମ ଦୁଃଖର ପଦାଙ୍କନୁସରଣ କରିଥିଲ ।

"ବହୁ ପୂର୍ବରୁ ତୋତେ ମୁଁ ମୋଠାରୁ ମୁକ୍ତ କରି ଦେଇଥିଲି । ସେଇ ମୁକ୍ତିର ମୂଲ୍ୟ ଅସୂଲ କରିବାକୁ ନିଶ୍ଚୟ, ଦିନେ ଫେରିବ"—ଏତିକ କହି ଜନକ ପରଲୋକ ମୁଖୀ ଯାତ୍ରାରମ୍ଭ କରିଥିଲେ । ଜନ୍ମଭୂମିର ଜନତା ଏଯାଏଁ ଜାଣି ନାହିଁ ଜୀବନ ଓ ମରଣର ଭେଦ । "ବଞ୍ଚିବା ଏକ କଳା, ମରିବା ଏକ କଳା"—ଏଭଳି ଦୃଢ଼ୋକ୍ତି ଶୁଭୁଥାଏ ଅହର୍ନିଶ ।

କବି ପୁଣି କହିଲେ, ଗତିରେ ପଡ଼ି ଯାଇଥିବା ଜୀବନ ଶିଥା ଲଗିବାରୁ ସ୍ୱାଦ ବଦଳାଇବା ପାଇଁ ସିନା ଏ ଆୟୋଜନ । ନୋହିଲେ କିଏ ବା ନ ଚାହେଁ ଜୀଇଁ ରହିବାକୁ ? ଜୀବନରୁ ଯେତେ ସୁଖ ଓ ମଜା ମିଳିପାରେ, ଯେତେ ଆନନ୍ଦ ଆଦାୟ କରିଯାଇ ପାରେ, ସବୁ ମୁଁ ପାଇ ସାରିଛି । ଅବଶୋଷ କେବଳ ଏତିକ ଯେ ମୋର ଜନ୍ମଭୂମିର ଜନତା ନିକଟରେ ମୁଁ ଆଦୌ ପହଞ୍ଚି ପାରିଲି ନାହିଁ । ଆଜି ଯେ ଅନେକ ଟି: ଭି:, ମୁଭି ଓ ଷ୍ଟିଲ କେମେରା ଧରି ଏ ଅପୂର୍ବ ଦୃଶ୍ୟ ସଂରକ୍ଷଣର ଚେଷ୍ଟାରେ ରାଷ୍ଟ୍ର-ନିଯୁକ୍ତ କର୍ମଚାରୀଗଣ ଲିପ୍ତ, ଏମାନେ ତ ଏହା ଆଗରୁ କେବେ ଏଭଳି ତତ୍ପରତା ଦେଖାଇ ନ ଥିଲେ । ମୋର ଶେଷ ସ୍ୱରକୁ ସାଇତି ରଖିବା ପାଇଁ ଆଜି କାହିଁକି ଘୂରୁଛି ଏତେଗୁଡ଼ିଏ ସ୍ୱର-ସଂରକ୍ଷକ ଯନ୍ତ୍ରର ଚକ ?

ସେଥର କିଏ ଜଣେ ପାଣିରେ ଚାଲିବ ବୋଲି ଘୋଷଣା କରିବାରୁ ସମସ୍ତେ ଯାଇ ସେଠି ହାଜର । ଆଉ ଥରେ କ୍ଷମତା ହସ୍ତାନ୍ତରକୁ ନୂତନ ସ୍ୱାଧୀନତା ନାମରେ ପ୍ରଚାର କରିବାରୁ ସମସ୍ତେ ଏକତ୍ରିତ । ଆପଣମାନେ କାହିଁକି ଏମିତି ରୁଣ୍ଡ ହୁଅନ୍ତି !

ମୁଁ ଜାଣେ, ମୋ ସ୍ୱରର ଅବସାନ ପରେ, ମୋର ମୃତ୍ୟୁ ଭଳି ନୀରବତା ସଞ୍ଚରିଯିବ ଜନତାର ଅସ୍ଥି ଓ ମଜ୍ଜାରେ । ମୁଁ ଜାଣେ ଏଠି

ଉପସ୍ଥିତ ନଗରବାସୀ ମୋର ମୃତ୍ୟୁ ଦେଖିବାକୁ ବ୍ୟାକୁଳ ହୋଇ ପଡ଼ିଲେଣି । ତେଣୁ ଆଉ ଅଧିକ ସମୟ ଚର୍ବଣ କରି ଶବର ସଂସାରକୁ ମୁଖର କରିବାକୁ ଚାହୁଁ ନାହିଁ ।

ଏତିକ କହି ସାରି କବି କାର୍‌ର ଗ୍ଲାସରୁ ପଛପଟେ ଲଗିଥିବା ଆଲୁମିନିୟମ ସିଡ଼ି ବାଟେ ଦେଇ ତଳକୁ ଓହ୍ଲାଇଲେ । ସେ ମୃତ୍ୟୁମଞ୍ଚ ଆଡକୁ ଆଗେଇ ଗଲା ବେଳେ ପ୍ରଥମେ ତୁରୀ, ମହୁରୀ, ଢୋଲ ଓ ନିଶାଣର ମିଳିତ ଧ୍ୱନିରେ ପ୍ରାନ୍ତର ଆକାଶରେ ଶବ ସଙ୍ଗୀତର ତରଙ୍ଗ ବ୍ୟାପିଗଲା । ନଗରବାସୀ ବହୁ ପ୍ରତୀକ୍ଷିତ ଦୃଶ୍ୟଟିକୁ ସ୍ମୃତି କୋଷର ଅନ୍ତର୍ଗତ କରାଇ ଦେବା ସକାଶେ ପ୍ରସ୍ତୁତ ହୋଇ ପଡିଲେ । କବି ମୃତ୍ୟୁମଞ୍ଚର ପାହାଚମାନ ଚଢିଲେ ଓ ଶୀର୍ଷରେ ଯାଇ ଅଳ୍ପ ସମୟ ଠିଆ ହେଲେ । ସେଇଠୁ ଆଉ ପଛକୁ ଲେଉଟି ଥରେ ସୁଦ୍ଧା ଚାହିଁଲେ ନାହିଁ । ଅଳ୍ପ ସମୟରେ ସେ ସୁସଜ୍ଜିତ ଚିତା ଭିତରେ ହାଜର ହୋଇଗଲେ ।

ମଞ୍ଚର ସାମ୍ନାରେ ଗୋଟିଏ ଚକ ଲଗା ଖମ୍ବ ଉପରେ ମୃତ୍ୟୁ ଶିଖାଟିକୁ ମୁମୂର୍ଷୁ ଦୀପାଧାର ଯୋଗେ ଜାଳି ରଖା ଯାଇଥାଏ । ସୁବର୍ଣ୍ଣ ଖଡ଼ିକାର ମୁଣ୍ଡରେ ଚର୍ବି ବୋଳିତ ରେଶମ ଡୋରର ମୁଣ୍ଡୁଳା । ସେଇ ଖଡ଼ିକାରେ ଅଗ୍ନି ସଂଯୋଗ କରି ଚାରି ଜଣ ଶିଖା ବାହକ ଚିତାର ଚାରିକୋଣକୁ ଯାଇ ଚିତା ଖମ୍ବରୁ ତଳକୁ ଓହ୍ଲାଇ ଥିବା ଘୃତସ୍ନାତ ତୁଳା ବଳିତାରେ ଲଗାଇ ଦେଲେ । ତତ୍‌କ୍ଷଣାତ୍ ପୂର୍ବ ପ୍ରସ୍ତୁତ ଚିତାର ଗର୍ଭରେ ଅଗ୍ନିର ବିଶାଳ ତରଙ୍ଗମାନ ସୃଷ୍ଟି ହେଲା ।

ଶିଖା ବାହକମାନେ ମଂଚରୁ ଓହ୍ଲାଇ ଚାଲେ ଆଉ ଏକ ଚକ ଲଗା ଖମ୍ବ ଉପରେ ଥିବା ତାମ୍ରପାତ୍ର ଭିତରେ ସୁବର୍ଣ୍ଣ ଖଡିକା ଚାରୋଟି ପ୍ରବେଶ କରାଇଲେ । ତାମ୍ରପାତ୍ର ଭିତରେ ସଦାତୃଷିତ ଜଳ ଅଗ୍ନି ପାନ କରି ସନ୍ତୁଷ୍ଟ ହେଲା ।

ଶାସନ ମୁଖ୍ୟ ତାମ୍ରପାତ୍ର ମଧ୍ୟରୁ ସୁବର୍ଣ୍ଣ ଖଡ଼ିକା ନେଇ ସେନା ମୁଖ୍ୟଙ୍କ ଆଡ଼କୁ ଗଲେ । ସେନା ମୁଖ୍ୟ ନତଜାନୁ ହୋଇ ଦୁଇ ହାତ ପାପୁଲିରେ ତାହା ଗ୍ରହଣ କଲେ । ଠିକ୍ ସେହି ସମୟରେ ଶାସନ ପ୍ରାସାଦର ପତାକା

ସ୍ତମ୍ଭ ଉପରୁ କଳାକନା ଖଣ୍ଡେ ଓହ୍ଲାଇ ପଡ଼ୁଥାଏ ଓ ଉପରକୁ ଏକ ନୂଆ ପତାକା ଆରୋହଣ କରୁଥାଏ ।

ଶାସନ ମୁଖ୍ୟ ଅଧିକ କାଳକ୍ଷେପଣ ନକରି ନିଜର ଯାନ ମଧ୍ୟକୁ ପ୍ରବେଶ କଲେ । ଯାନଟି ଦ୍ରୁତ ବେଗରେ ଶାସନ-ପ୍ରାସାଦ ଦିଗକୁ ଛୁଟିଲା ।

ସେତେବେଳେ ପୋଡ଼ା ମଣିଷର ଗନ୍ଧ ସାରା ସହରରେ ସଞ୍ଚରି ଯାଇ ସାରିଥାଏ । ବହଳ କଳା ଧୂଆଁର ଗୁଳ୍ପୁଆଟିଏ ସମସ୍ତଙ୍କର ମଥା ଉପରେ ଡେଣା ଫଡ଼୍ ଫଡ଼୍ କରୁଥାଏ । ନଗରବାସୀ କବିଙ୍କ ମୃତ୍ୟୁର ଅଣ୍ଡାପଣକୁ ଅଜସ୍ର ତାରିଫ କରି ଶାସନ ପ୍ରାସାଦର ଚତୁର୍ଦ୍ଦିଗରେ ଅବସ୍ଥିତ ନିଜ ନିଜର ବାସଗୃହକୁ ବାହୁଡ଼ି ଗଲେ ।

ବଡ ପଡ଼ିଆରେ ଘଟିତ ଘଟନା ଓ ଉଚ୍ଚାରିତ ଶବ୍ଦମାନଙ୍କର ସ୍ମୃତିକୁ ନାନା ଉପାୟରେ ମସ୍ତିଷ୍କରୁ ବେଦଖଲ କରିବାର ଚେଷ୍ଟାରେ ଲିପ୍ତ ରହି ନଗରବାସୀଗଣ ଘରକୁ ଫେରିବା ପରେ ଚାକରମାନଙ୍କ ଉପରେ ବିରକ୍ତ ହେଲେ, ସନ୍ତାନମାନଙ୍କୁ ଗେଲ କଲେ, ବୃଦ୍ଧ ପିତାମାତାମାନଙ୍କ ଠାରୁ ଅଭିଯୋଗ-ଦୈନନ୍ଦିନୀ ଶୁଣିଲେ । ତତ୍ପରେ ଭୋଜନ କଲେ ।

ନଗରବାସୀ ଭୋଜନ ପରେ ପତ୍ନୀମାନଙ୍କ ସହିତ ରତିକ୍ରୀଡ଼ା ସାରି କ୍ଲାନ୍ତ ହୋଇ ପଡ଼ିଲେ ଓ ଶୋଇ ପଡ଼ିଲେ ।

ତା ପରଦିନ ସହରର ପ୍ରତ୍ୟେକ ଗଳିରେ ସ୍ଥାପିତ ସୂଚନା ସ୍ତମ୍ଭର କାଚ ପରଦାରେ ଉଙ୍କି ଉଠିଲା, ନୂତନ ଏକ ଯୁଗ । ସେଠି ଶୁଭିଲା ନୂତନ ସ୍ୱରରେ ପ୍ରସ୍ତୁତିତ ସମ୍ବାଦ । ରାଷ୍ଟ୍ରରେ ପୂର୍ବ ଶାସନର ପତନ ଘଟିଛି । କବି ନୂଆ ଶାସକ ରୂପରେ ଜନ୍ମଭୂମି ଓ ଜନତା ନିକଟରେ ଶପଥ ପାଠ ପୂର୍ବକ ଦାୟିତ୍ୱ ଗ୍ରହଣ କରିଛନ୍ତି । ଶାସନ ଭାର ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେ ଏକ ଆଦେଶନାମା ଜାରିକରି ବହୁ ପୂର୍ବରୁ ପ୍ରଚଳିତ ଇଚ୍ଛା ମୃତ୍ୟୁ ଅଧିକାର ଲୋକଙ୍କ ହାତରୁ ଛଡ଼ାଇ ନେଇଛନ୍ତି । ମୃତ୍ୟୁ କାମନାର ସ୍ୱାଧିନତାରୁ ସମସ୍ତଙ୍କୁ ବଞ୍ଚିତ କରାଯାଇଛି । ଏଣିକି ଶାସନ ପ୍ରାସାଦରେ ବାଞ୍ଛିତ ମରଣର ଆୟୋଜନ ସକାଶେ କେହି ଆବେଦନ କରି ପାରିବେ ନାହିଁ ।

ନଗରବାସୀ ଆଶ୍ୱସ୍ତ ହେଲେ । ଏକ ନବପ୍ରଣୀତ ଜନଗଣ ଉଲ୍ଲାସର ସ୍ରୋତରେ ଭାସି ଯାଉଁ ଯାଉଁ ରାଷ୍ଟ୍ରବାସୀ ଶୁଣିବାକୁ ପାଇଲେ ପୂର୍ବ ଶାସନ ମୁଖ୍ୟଙ୍କର ଆଉ କୌଣସି ପତ୍ତା ମିଳୁ ନାହିଁ ।

ଘଟନାଟି ଘଟିବାର ଠିକ୍ ଏକ ସପ୍ତାହ ପରେ ସାପ୍ତାହିକ ପତ୍ରିକାରେ ରାଷ୍ଟ୍ର ଶାସନର ପଞ୍ଚ ପରିବର୍ତ୍ତନ ବିଷୟକ ସଚିତ୍ର ସମ୍ବାଦମାନ ପ୍ରକାଶ ପାଇଲା । ଏସବୁ ବିବରଣୀର ସାରାଂଶ ହେଲା—ଶତାରେ ଅଗ୍ନି ସଂଯୋଗ କରି ତତ୍କାଳୀନ ଶାସନ ମୁଖ୍ୟ ଶାସନ ପ୍ରାସାଦକୁ ଫେରିଲେ । ସେଠି ସେ ନିଜ କୋଠରୀକୁ ଯିବା ସକାଶେ ଉତ୍ତୋଳକ ଯାନ ଅନ୍ୱେଷଣ କଲେ । ଶାସନ ପ୍ରାସାଦର ପଞ୍ଚମ ତାଲରେ ଉତ୍ତୋଳକ ଯାନ ଏହାଂଶଲା । ମାତ୍ର ଅନ୍ୟ ସବୁ ଦିନ ପରି ସେଦିନ ଆଉ ଲୌହ କବାଟ ଫିଟିଲା ନାହିଁ । ଉତ୍ତୋଳକ ଯାନଟି ସବୁ ସଂଯୋଗରୁ ଚ୍ୟୁତ ହୋଇ ତତ୍କ୍ଷଣାତ ଏକ ପିଞ୍ଜରା ପାଲଟି ଗଲା । ପିଞ୍ଜରାବଦ୍ଧ ପୂର୍ବତନ ଶାସନ ମୁଖ୍ୟ ଦେଖିଲେ ଶାସନାସନରେ ବସିଛନ୍ତି କବି । ସେ ମୃଦୁ ମୃଦୁ ମୁରୁକି ହସୁଛନ୍ତି । ବନ୍ଦୀ ଶାସନ ମୁଖ୍ୟ ଚିତ୍କାର କଲେ—ଏହା ଅସମ୍ଭବ ।

ସେତେବେଳେ କବି ସ୍ମିତ ହସ ଉକୁଟାଇ ଉତ୍ତର ଦେଇଥିଲେ— ଅଳ୍ପ ସମୟ ପରେ ପ୍ରସାରିତ ହେବ ଏ ସମ୍ପର୍କିତ ନିୟୁକ୍ତିନାମା ସହିତ ନୂତନ ଶାସନର ଇସ୍ତାହାର । ପୂର୍ବତନ ଶାସନ ମୁଖ୍ୟ କହିଲେ—ଏଭଳି ହୀନ କାର୍ଯ୍ୟର କୌଣସି ବୈଧାନିକତା ନାହିଁ । କବି କହିଲେ—ବାଃ ରାଜା, ଆପଣ ଏତେଦିନ ଧରି ଓକିଲାତି କରୁଥିଲେ, ଜଣା ପଡ଼ୁଛି, ମାତ୍ର କୌଣସି ବହିରେ ଏଭଳି ଘଟଣା ଲିଖିତ ହୋଇନାହିଁ ।

ପୂର୍ବତନ ଶାସନ ମୁଖ୍ୟ ଲୁହା କବାଟକୁ ନିଜର ସବୁ ବଳ ଦେଇ ହଲାଇଲେ । ମାତ୍ର ତାହା ହଲିଲା ନାହିଁ କି ଫିଟିଲା ନାହିଁ । ତାପରେ ସେ 'ଏକଥା କେମିତି ହେଲା' ଭାବି ଭାବି ମୂର୍ଚ୍ଛିତ ହୋଇ ପଡ଼ିଥିଲେ । ସର୍ବ ସମର୍ଥିତ ସମ୍ବାଦାନୁସାରେ ସେ ଏବେ ଚିକିତ୍ସାଧୀନ । ଏହାର ଏକମାସ ପରେ ମାସିକ ପତ୍ରିକାରେ ଘଟଣା ସହିତ ସଂପୃକ୍ତ ବିଭିନ୍ନ ବ୍ୟକ୍ତିଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ସହିତ ସମ୍ପୂର୍ଣ୍ଣ ବିଷୟ ଇତିହାସ-ଯୋଗ୍ୟ ଶୈଳୀରେ ପ୍ରକାଶିତ ହେଲା । ଏଥିରୁ ଜଣାପଡ଼ିଲା ଯେ, ଶାସନ ପ୍ରାସାଦର ଅନେକ କର୍ମଚାରୀ

ସମେତ ମନ୍ତ୍ରୀ ନିର୍ମାତାଗଣ କବିଙ୍କୁ କ୍ଷମତାଧିକାର ପ୍ରଦାନ କରିବାରେ ବନ୍ଧୁ ଦିନରୁ ଲାଗି ପଡ଼ିଥିଲେ । ଶିତା ତଳେ ଗୋଟିଏ ବଡ଼ ନଳ ଖଞ୍ଜି ଦିଆଯାଇ ଥିଲା । ମାଟି ତଳେ ସୁଡ଼ଙ୍ଗ ଖୋଳାଯାଇଥିଲା । ପ୍ରଥମେ ଏହି ନଳ ବାଟ ଦେଇ ତଳକୁ ଓହ୍ଲାଇ କବି ସୁଡ଼ଙ୍ଗ ମାର୍ଗରେ ଯାଇ ପୂର୍ବତନ ଶାସନମୁଖ୍ୟ ଫେରିବା ପୂର୍ବରୁ ଶାସନାସନ ଅଧିକାର କରିନେଇ ଥିଲେ ।

ଘଟନା ଘଟିବାର ଏକ ବର୍ଷ ପରେ ଜଣାପଡ଼ିଲା ଯେ, କବିଙ୍କର ମୃତ୍ୟୁ ଦିନ ଶାସନ ପ୍ରାସାଦର ସମସ୍ତ କର୍ମଚାରୀ ଆଦେଶାନୁସାରେ ବଡ଼ ପଡ଼ିଆରେ ସେମାନଙ୍କ ସକାଶେ ଉଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ନ ଥିଲେ । କାଗଜ ପତ୍ରରୁ ସେମାନେ ସେଦିନ ଛୁଟିରେ ଥିଲେ ବୋଲି ଜଣାପଡ଼ୁଥିଲେ ହେଁ, ବାସ୍ତବରେ ସେମାନେ ସମସ୍ତେ ସେଦିନ ଶାସନ ପ୍ରାସାଦରେ ଉପସ୍ଥିତ ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଏବେ କବିଙ୍କର ପରାମର୍ଶଦାତା ରୂପେ ନିଯୁକ୍ତ ହୋଇଛନ୍ତି । ଏହି ବ୍ୟବସ୍ଥା କାଳକ୍ରମେ ରାଷ୍ଟ୍ର ସକାଶେ ହିତକର ହେବ ବୋଲି କବି କହୁଛନ୍ତି । ତାଙ୍କର ସେଇକଥା ହିଁ ଗତ ପାଞ୍ଚ ବର୍ଷ ଧରି ରାଷ୍ଟ୍ରର ପ୍ରତ୍ୟେକ ଦୈନିକ, ସାପ୍ତାହିକ ଓ ମାସିକ ପତ୍ରିକାର ପୃଷ୍ଠା ମଣ୍ଡନ କରୁଛି ।

ଏ ମଧ୍ୟରେ ଜଣେ ଆପେକ୍ଷିକ ସାହସୀ ସାମ୍ବାଦିକଙ୍କର ପ୍ରଶ୍ନର ଉତ୍ତର ଦେଇ କବି କହିଛନ୍ତି—କବି ମରେ ନାହିଁ । କବିତ୍ୱ ମରିଯାଏ । ମୁଁ ଗତ ଛଅ ବର୍ଷ ହେଲା କବିତା ଲେଖି ନାହିଁ ।

ପୂର୍ବତନ ଶାସକ କାହାନ୍ତି ?

ଏ ପ୍ରଶ୍ନର ଉତ୍ତର ଦେଇ କବି କହିଲେ—ତାଙ୍କର ଚେତା ଫେରିବା ପରେ ତାଙ୍କୁ ଚିକିତ୍ସାଳୟରୁ ମୁକ୍ତ ଦିଆଯାଇଥିଲା । ମାତ୍ର ଅଳ୍ପ କେତୋଟି ସପ୍ତାହ ରାଷ୍ଟ୍ର ସାରା ଗସ୍ତ କରି ନିଜ ସପକ୍ଷରେ ଜନମତ ଜାଗ୍ରତ କରାଇବାରେ ବିଫଳ ହେବା ପରେ ସେ ଶାସନ ପ୍ରାସାଦର ପଛ ପାଖରେ ଥିବା ଏକ ମାତ୍ର ମହୁଲ ଗଛ ତଳେ ବସି ବିପ୍ଳବୀ କବିତା ଲେଖୁଛନ୍ତି । ଚେତନାର ପ୍ରତ୍ୟାବର୍ତ୍ତନକୁ ଧୈର୍ଯ୍ୟର ସହ ପ୍ରତୀକ୍ଷା କରୁଛନ୍ତି ।

---

# ଫୁଲ ତୋଡ଼ା



**ଉମାଶଙ୍କର ମିଶ୍ର**

ଏଇ ଫୁଲ ତୋଡ଼ାଟି ସମ୍ପର୍କରେ କୁହାଯାଉ । ଆମ ସରକାରୀ ସଂସ୍ଥାର ସବୁଠଁ ଶକ୍ତିଶାଳୀ ବଡ଼ଘରର ହାକିମମାନଙ୍କ ଦ୍ୱାରା ପରିଚାଳିତ ଓ ପରିପାଳିତ ରାଜଧାନୀର ଉଦ୍ୟାନରୁ ସଂଗୃହୀତ ଯାଇ ଯୂଇ ମଲ୍ଲୀ ମନ୍ଦାର ଗେଣ୍ଡୁ ଗୋଲାପ ଓ ତାର ସାଜ ପାଇଁ ଏତେ ସୁନ୍ଦର ଚୂନା ଚୂନା ସରୁ ପତ୍ରଥିବା ଡାଳ ଭିତରେ ସଜା ହୋଇ ଫୁଲ ପତର ମନୋରମ ସ୍ତବକଟିଏ ସବୁଠୁଁ ପ୍ରବଣ ଆଉ ରସିକ ସରକାରୀ କର୍ମ ଧାରସ୍ଥ ମାଳୀ ତିଆରି କରିଛି । ତା ପୁଣି ଖୋଦ୍ ମସ୍ତ ମସ୍ତ ସାନ ବଡ଼ ମଝିଆଁ ହାକିମମାନଙ୍କର ବରାଦ୍ ଆଉ ତାଗିଦ୍‌ରେ । ଅସଲ କଥା ହେଲା ଯେ ନୂଆ ବର୍ଷର ଉପୋଦ୍‌ଘାତ ଅବସରରେ ନଗଦ ଶିଡ଼ି ଚଢି ଏଇ ଉଦ୍ୟୋଗ ସଂସ୍ଥାର ସର୍ବୋଚ୍ଚ ସରକାରୀ ଆସନ ଅଳଂକୃତ କରିଥିବା କର୍ତ୍ତାଙ୍କ ଆନୁଗତ୍ୟ ପ୍ରଜ୍ଞାପିତ କରିବା ପାଇଁ ଅଧସ୍ତନ କୁନି ହାକିମ ମାନେ ପରସ୍ପର ଭିତରେ ଧସ୍ତା ଧସ୍ତି ହୋଇ ତାଙ୍କୁ ଅଭିବାଦନ ଓ ଧଳାହାଡ଼ ସମ୍ପ୍ରଦାୟର ଚିର ଚରିତ କାୟଦାରେ କୁର୍ଣ୍ଣିସ କରିବା ପାଇଁ ଆଗଭର ହୁଅନ୍ତି । ଏଇଥିପାଇଁ ପ୍ରାପ୍ତ ବିଭିନ୍ନ ମହଲରୁ ଦେଢ଼ ଶହ ପର୍ଯ୍ୟନ୍ତ ପୁଷ୍ପ ସ୍ତବକ ବା 'ବୁକେ' ଏଇ ମାଳୀକୁ ବରାଦ୍ ଦିଆ ହୋଇଥିଲା । କିନ୍ତୁ ବୋଟାନିକାଲ ଗାର୍ଡ଼େନରେ ଫୁଲ ଉଠେଇବା ସମ୍ଭାବତ ଭାବେ ବର୍ଷକୁ ବର୍ଷ ସଙ୍କୁଚିତ ହୋଇ ଯାଉଥିବାରୁ ମାତ୍ର ଗୋଟିଏ ବୋଲି ସୁନ୍ଦର ଫୁଲ ତୋଡ଼ା ପ୍ରସ୍ତୁତ ହୋଇ ପାରିଲା ।

'କ ହେ ମାଳୀ ସାହେବ, କେମେ ତ ଆମକୁ ଭୁଲେଇଲ । ଏଇ ଗୋଟେ ଫୁଲ ତୋଡ଼ାରେ କାମ ଚଳେ କେମିତି ?

ବୁଦ୍ଧିମାନ ମାଳୀ ମୁରୁକ ହସି ରାଜ ସଭାର ବଜ୍ଞା ପଣ୍ଡିତ ଶିରୋମଣି ପରି କହିଲେ କଣ ଆଜ୍ଞା । ଇଏ କ ନୂଆ କଥା । କେତେ ନୂଆ ମନ୍ତ୍ରୀ ନୂଆ ହାକିମଙ୍କ ଆବାହନ କଲେଣି ସବୁ ବର୍ଷ ଏମିତି ଗୋଟେ ହଟା ମାତ୍ର ଫୁଲ ତୋଡ଼ା ଜରିଆରେ ଶହ ହେ କୁନ ହାକିମ ବରଷର ଜଣାଇ ବାହାବା' ପିଠି ଥାପୁଡ଼ା ନେଇଚନ୍ତି । ଆପଣ ବଡ଼ ହାକିମଙ୍କ ବ୍ୟକ୍ତିଗତ ସଚିବଙ୍କୁ ପଚାରନ୍ତୁ ସିଏ ବାଟ ବତେଇ ଦେବେ ।

ଅବଶ୍ୟ ପରମ୍ପରାର ବ୍ୟତିକ୍ରମ ନ କରି ଅନୁଗତ କୁନ ହାକିମମାନେ ପାହାଳ ରସଗୋଲା, ପାରଦ୍ୱୀପ ଚିଙ୍ଗୁଡ଼ି, ଚିଲିକା କଙ୍କଡ଼ା, କଲିକତା କେକ୍ ଇମ୍ପୋରଟେଡ୍ ଭଡ୍‌କା ଟେପ୍ ଇତ୍ୟାଦି ବଙ୍ଗଳାରେ ଖୋଦ୍ ସାମାଜ୍ଞୀଙ୍କ ହାତରେ ନୂଆ ବର୍ଷ ପ୍ରଭାତ ଆସିବାର ପୂର୍ବ ରଜନୀରେ ଉତ୍ସର୍ଗ କରି ସାରି ଥିଲେ । କିନ୍ତୁ ବାସ୍ତବ ଉପାସନା କେବଳ ସଫଳ କାମ ହୋଇପାରେ ଯଦି ଏ ଜାତିର ଐତିହ୍ୟ ସିକ୍ତ ପରମ୍ପରା ସମ୍ମତ ଫୁଲ ତୋଡ଼ା ଖୋଦ୍ ସର୍ବମୟ କର୍ତ୍ତାଙ୍କ ଶ୍ରୀହସ୍ତରେ ତାଙ୍କ ଦପ୍ତରର ମହିମାମୟ ପ୍ରକୋଷ୍ଠରେ ସକାଳ ଦଶଟା ବାଜୁ ନ ବାଜୁଣୁ ପ୍ରଦତ୍ତ ହୋଇପାରେ ।

ଦେଖାଗଲା ଯେ ବିଭିନ୍ନ ବିଭାଗର ଡିରେକ୍ଟ, କର୍ମଧାରଯ୍ୟମାନେ, ଯଥା ଯୋଗାଣି, ଯନ୍ତ୍ରୀ, ଗୃହ ବିଭାଗୀୟ, ରାଜନୈତିକ ଓ କର୍ମ ଉପରୁର ବିଭାଗୀୟ ଆରକ୍ଷୀ ଦେଖାଶୁଣା ବିଭାଗୀୟ ଭଲିକି ଭଲି ଚନ୍ଦା ପେଟୁଆ ନାଶୁଆ ଡେଙ୍ଗା ଲହକା ବିଭିନ୍ନ ବପୁ ଓ ଆକାରର କର୍ମଗୁରୁମାନେ ଯାଇ ରୁଣ୍ଡ ହେଲେ ସର୍ବୋଚ୍ଚ ହାକିମଙ୍କ ବ୍ୟକ୍ତିଗତ ସଚୀବଙ୍କ ଅଲିନ୍ଦ ସାମନାରେ । ଆଜି ସଚରାଚରର ହାକିମମାନେ କେମିତି କେଜାଣି ଖୋଲିବାର ଅଧଘଣ୍ଟାଏ ଆଗରୁ ହାଜର ।

ସଭିଙ୍କ ମୁହଁରେ ଗୋଟିଏ କଥା । 'କଣ କରିବା ?' ଗୋଟିଏ ମାତ୍ର ଫୁଲତୋଡ଼ାରେ କେମିତି କାମ ଚଳେ ଶହେ ଲୋକଙ୍କର । ସର୍ବୋଚ୍ଚ ଶକ୍ତି ଓ ସିଦ୍ଧିର ଅଧିକାରୀ ସମ୍ରାଟଙ୍କ ଅଙ୍ଗ ଲାଗି ନିର୍ଜୀବ ବୁଝେଇ ଦେଲେ

'ପରବାସ୍ତୁ ନାହିଁ ଭକ୍ତଗଣ । ବଡ଼ କଥା ନୁହେଁ ଆପଣ ସେଇ ପରମ ପ୍ରତାପୀ ଶ୍ରୀ ପୁରୁଷଙ୍କ ହାତରେ ସମର୍ପଣ କରିବେ ପୋକ୍‌ଶୁଙ୍ଘା, ନାଗଫେଣୀ, ପଳାଶ କ ଗୋଲାପ ଫୁଲ୍ । ଅସଲ୍ କଥା ହେଉଛି ଆପଣଙ୍କର ମୋହବନ୍ଧ ଆଉ ଆନ୍ତରିକତାରେ ପଖଲା ଆନୁଗତ୍ୟ । ସାହେବତ ସବ ଜାଣ । ସିଏ ଠିକ୍ ବୁଝିବେ । ମାର୍ଗଟା ହେଲା ଏଇଆ, ଜଣେ ଯାଇ ଫୁଲ-ତୋଡ଼ା ଦେଉଥିବ ଆଉ ଦେବସିଂ, ତାଙ୍କ ପରନ୍ମି ଅର୍ଡ଼ର୍‌ଲି ସେଇ ଫୁଲ ତୋଡ଼ାଟା ସାହେବଙ୍କ ଟେବୁଲ୍ ଉପରୁ ବାହାରକୁ ନେଇ ଆସୁଥିବ । ପୁଣି ଦ୍ୱିତୀୟ ବ୍ୟକ୍ତି, ତୃତୀୟ ବ୍ୟକ୍ତି, ଚତୁର୍ଥ ବ୍ୟକ୍ତି ଆଡ୍‌ଇନ୍‌ଫିନେଟମ୍ କ୍ରମେ ସେଇ ପନ୍ଥାରେ ସେଇ ଏକକ ଫୁଲ ତୋଡ଼ାକୁ ଠାକୁରଙ୍କ ହାତରେ ଜଣକ ପରେ ଜଣେ ଉତ୍ସର୍ଗ କରୁଥିବେ ଓ ସେଇ ଫୁଲତୋଡ଼ା ଫେରି ଆସୁଥିବ ଏଇ ବ୍ୟକ୍ତିଗତ ସଚିବଙ୍କ କୋଠରୀକୁ । ଅସୁବିଧା କଣ । ଇକୋ-ନୋମି ସମର୍ଥିତ ପନ୍ଥା । କ୍ଷତି କଣ ।

ଗୁହ୍ନି ଗୁହ୍ନି ସତରେ ସେଇଆ ଘଟିଗଲା ଓ ପୂର୍ବାପର ନିର୍ବିଘ୍ନରେ । 'ଆପଣ ଦୀର୍ଘାୟୁ ହୁଅନ୍ତୁ ସାର୍ । ପରମାନନ୍ଦରେ ପ୍ରଜା ପାଳନ୍ତୁ । ଟିକିଏ କରୁଣା କରୁଥିବେ ଏଇ ଅକିଞ୍ଚନ ଭୃତ୍ୟ ପ୍ରତି । 'ହେପ୍‌ପି ନିଉୟର୍ । ମୁଁ ମନେ ରଖିବି ।' ଆପଣ ଗାଦିରେ ବସିଲେ ରାମ ରାଜ୍ୟ ଆସିଗଲା ସାର୍ । ଦାସାନୁଦାସଙ୍କୁ କରୁଣାରୁ ବଞ୍ଚିତ କରିବେ ନାହିଁ ।' 'ହେପି- ନିଉୟର୍ । ମୁଁ ମନେ ରଖିବି ।'

'ଏ ମନ୍ତ୍ରୀ ଗୁଡ଼ାକ ସାର୍ ତେରଦିନିଆ ଯମ । କଣ ହୁଏ ବା ଏମାନଙ୍କ ହାତରେ । ଆପଣ ଯେମିତି ମୋଡ଼ିବେ ସେମିତି ଚାଲିବ । ଆପଣଙ୍କ ମୋଡ଼ା ମୋଡ଼ିରେ ସିଦ୍ଧ ହସ୍ତ । ମୁଁ ବି ମୋଡ଼ିବି । ମୋଡ଼ା ମୋଡ଼ିତ ମୁଁ ଆପଣଙ୍କଠୁ ଶିଖିଛି । ଆପଣ ଉପରୁକୁ ମୋଡ଼ିବେ ମୁଁ ଅକିଞ୍ଚନ ଭୃତ୍ୟ, ଆପଣଙ୍କୁ ତଳୁ ମୋଡ଼ିବି । ସବୁତ ଆପଣଙ୍କ କୃପା । 'ହେପ୍‌ପି ନ୍ୟୁ‌ୟର । ମୁଁ କିଛି ଭୁଲେ ନାହିଁ । ଗୋ ଅହେଡ଼ ।'

'ଏ ଦେଶର ଭାଗ୍ୟ ଆଜ୍ଞା । ଆପଣ ଫୁଲପରି ସବୁଦିନ ସୁନ୍ଦର ଆଉ ସତେଜ ଥାଆନ୍ତୁ । କଣ୍ଟାତକ ମୁଁ କାଢ଼ି ନେବି । ମୋର ଭାଗ୍ୟ, ଦେଶର

ଭାଗ୍ୟ । ଆପଣ ଜାତକ ଗଣକଙ୍କର ଶତେ କୋଡ଼ିଏ ବର୍ଷିଆ ପରମାୟୁ ପାଇ ବଞ୍ଚନ୍ତୁ । ଦୁଧ ମହୁରେ ପୃଥ୍ୱୀ ଭାସିଯାଉ । କୃପା କଣାଟିଏ ଖାଲି ମୋର ପ୍ରାପ୍ୟ ।'

'ଥ୍ୟାଙ୍କ୍ ୟୁ ଡିୟର୍ । ମୁଁ ଠିକ୍ ମନେ ରଖିବି ।' ଇମିତି ମଞ୍ଜାଭିନୟ ଚାଲିଲା ପୁରାପୁରି ଚବିଶି ଘଣ୍ଟା ।

ଯେତେ ଲୋକ ଯାଇଥିଲେ ସଲାମ ପ୍ରଜ୍ଞାପନ ପାଇଁ ସମସ୍ତେ କୃତାର୍ଥ । କିନ୍ତୁ ଫୁଲ ତୋଡ଼ାର ଭାଗ୍ୟରେ କଣ ଘଟିଲା ଜାଣନ୍ତି ? ପ୍ରଥମେ ବନ୍ଧା ହୋଇଥିବା ସୁନ୍ଦର ଗୁଚ୍ଛ ଗୁଚ୍ଛା ହୋଇଗଲା । ରଙ୍ଗ ବେରଙ୍ଗ ପତ୍ର ଓ ଫୁଲର ପାଖୁଡ଼ା ସବୁ ଝଡ଼ି ପଡ଼ିଲା । ଆଉ ସବା ଶେଷ ବ୍ୟକ୍ତି 'ବୁଟକ' ଉତ୍ସର୍ଗ କଲାବେଳକୁ ଥିଲା କେବଳ ଖୁଣ୍ଟା ଡାଙ୍ଗରେ ଦୁଇ ଚାରିଟା ମୁରୁକୁଟିଆ ପତ୍ର ଓ ମାତ୍ର ଚାରିଟି ପାଖୁଡ଼ା ଥିବା ମ୍ରିୟମାଣ ଗୋଲାପ ଫୁଲଟିଏ । ସମ୍ରାଟ କିନ୍ତୁ ତାଙ୍କ ଉଦାର ଗୁଣରେ ଫୁଲ ତୋଡ଼ାର ଏ କାକୁସ୍ଥ ରୂପକୁ ଅପମାନ ସୂଚକ ଭଙ୍ଗିମାରେ ଗ୍ରହଣ କରି ନ ଥିଲେ । କେହି ଜାଣନ୍ତି ନାହିଁ ଯେ ଭଲ କରି ବାସିବା ପାଇଁ ସେଇ ଫୁଲ ତୋଡ଼ା ଉପରେ ମୂଳରୁ ଅଧବୋତଲେ ଇଣ୍ଟିମେଟ୍ ପରଫିଉମ ଅଜାଡ଼ି ଦେଇଥିଲା, ବଙ୍କାମୀ ଉଦ୍ୟାନ ପାଳକ ମାଳୀଶ୍ରେଷ୍ଠ । କେହି କିନ୍ତୁ ଲକ୍ଷ୍ୟ କରି ନ ଥିବେ ଯେ ଜଣ ପିଛା ପାଞ୍ଚ ଟଙ୍କା କରି ପ୍ରଭୁଙ୍କ ଲାଗି ଅର୍ଡ଼ର୍ ଲା ପ୍ରାୟ ତିନିଶହ ଟଙ୍କା ଅସୁଲ କରି ସାରିଥିଲା ଓ ବ୍ୟକ୍ତିଗତ ସଚୀବ ମହାଶୟ ତାଙ୍କ ନୂତନ ଗୃହ ନିର୍ମାଣର ସମ୍ପୂର୍ଣ୍ଣ ଲୁହାଛଡ଼ ଓ ସିମେଣ୍ଟ ଖର୍ଚ୍ଚର ତିନି ଚତୁର୍ଥାଂଶ ସଂଗ୍ରହର ପ୍ରତିଶ୍ରୁତି ସଂଗ୍ରହ କରି ସାରିଥିଲେ ।

ଫୁଲ ତୋଡ଼ାଟିର ପ୍ରାୟଶଃ ମୃତାବସ୍ଥାରେ ବ୍ୟକ୍ତିଗତ ସଚୀବ ତାଙ୍କର ଏଗାରଟି ସନ୍ତତିଙ୍କ ଜନନୀଙ୍କୁ ନୂଆ ବର୍ଷର ଉପହାରରେ ଆପ୍ୟାୟିତ କରିବାକୁ ଉଦ୍ୟତ ହୁଅନ୍ତେ ଶୁଣିଲେ 'ବାଡପୋଡ଼ା, ଉଇଜଳା । ତତେ ଆଉ କିଛି ମିଳିଲାନି । ଖୁଣ୍ଟା ଡାଙ୍ଗ ଖଣ୍ଡେ ଆଣିଛୁ । ଶାଢୀ କାହିଁ, ବାସନା ତେଲ କାହିଁ !

'ଶୁଣ ସଖି, ଏଇ ଖୁଣ୍ଟା ଫୁଲ ତୋଡ଼ାର ଆଦ୍ୟ ଯୌବନରେ ଭରପୂର ଫୁଲ ଆଉ ମହମହ ବାସ୍ନାର ସମ୍ଭାବନା ମନେ ପକାଅ । ସ୍ୱା

ପଛରେ ଯେଉଁ କନକନଆଁ ସୁଆଦଆ ରୂପ ରସ ଗନ୍ଧ ଭରା ମନଟିଏ ଅଛି ତାକୁ ଖୋଜ । ଆମର ଏତେ ବଡ଼ ହାକିମ ତ ଏଇ ଗୋଟାଏ 'ବ୍ରିକେ'ରେ ହାତ ଅଣ୍ଡାଳ ଡରକ ଗଲେ ଶହେ ଲୋକଙ୍କ ପାଇଁ । ଆଉ ତମେ ଆମେ କବା ଘୁର —ଏଁ !'

ଆଶ୍ଚର୍ଯ୍ୟର କଥା ସବୁ ରାତିରେ କର୍ମ ଜଞ୍ଜାଳରେ କ୍ଲାନ୍ତ ହୋଇଥିବା ତାଙ୍କର ଏଗାରଟି ସନ୍ତତିର ଜନନୀ ଆଜ ରାତିରେ ତାଙ୍କ ଗୋଡ଼ ଘଷିବାକୁ ହାତ ବଢ଼ାଇ ଦେଲେ ଓ ପରମାନନ୍ଦରେ ବଢ଼ାଇ ଦେଲେ ପଯ୍ୟର ଖୋଦ୍ ମୁଖ୍ୟ ମନ୍ତ୍ରୀଙ୍କ ବ୍ୟକ୍ତିଗତ ସଚୀବ ଚନ୍ଦ୍ରଧର ସେଣ ।

ଦିନକର କଥା । ଚନ୍ଦ୍ରଧର ବାବୁ ଯେତେବେଳେ ଗୋଟିକଣ ଧନ୍ଦା କରି ନ ପାଇ ରାସ୍ତାଘାଟ ମାର୍ ଫଳରେ ଜୀବନ ଯାପନ କରୁଥିଲେ ସେତେବେଳେ ନଚ୍ଛ କଳା ରାତିକୁ ସୁକେଶୀ ଅନ୍ଧାର ବୋଲ କହି ପାରୁଥିଲେ । ବସନ୍ତ କାଳର ଉଲ୍ଲସିତ ହାଓ୍ୱାରେ ଆମ୍ବ ବଉଳ ଓଠରେ କଣକ ମିଠା ମିଠା ଶବ୍ଦ କେମିତି ତିଆରି ହୁଏ ତାହା ସନ୍ଧି ପାରୁଥିଲେ । ମନେ ମନେ ଗୁଣି ହେଉଥିଲେ ପିଲାଦିନର କଲ୍ପଣା ବେଣ୍ଡ ଓ ଲାଇ ଧୂଡ଼ ୁକର ଆପାତ ବୈପ୍ଳବିକ କାହାଣୀ ସବୁ । କିନ୍ତୁ ଯେତେବେଳେ କାମ ନ ଥିଲା, କିଛି ରହା ନ ଥିଲା, ରୋଜଗାରର ପନ୍ଥା ନ ଥିଲା ବା ଶଗ ପକେଟ ବା ସମ୍ପୂର୍ଣ୍ଣ ପକେଟ ବିହୀନତା ଭିତରେ ପ୍ରଭେଦ ନ ଥିଲା, ସେତେବେଳେ ନ ଥିଲା ମଧ୍ୟ ନିଜର ପରିଚୟ ଆକାର ଓଜନ ଓ ନିଜର ମୁହଁକୁ ବାରମ୍ବାର ଦର୍ପଣରେ ଦେଖିବାର ତନ୍ମୟତା । ଘର ଭଲ ଥିଲା ଖାଙ୍କା ପେଟ ଓ ଶଗ କମିଜର ଭିତରୁ ଭିତରୁ ଡେଇଁ ଆସୁଥିବା କନକନଆଁ ସ୍ମୃତିରେ ହିଲ୍ଲୋଳିତ ସେଇ ଦିନଗୁଡିକ । ମନ ଡାକୁଥିଲା ସବୁବେଳେ 'ଆକାଶରେ—ପବନରେ—ପକ୍ଷୀରେ । ତମେ ସବୁ ମୋର ଡେଣା ହୋଇଯାଅ । ମୁଁ ଉଡ଼ିବି ।' ବସନ୍ତ ପରେ ଗ୍ରୀଷ୍ମ ଆସିଲା । ଚୂତ ଡାଳରେ ବସି କୋଇଲି କୁହୁକୁହୁ ଗାଇଲା । ଆମ୍ବ ଗଛରେ ପଡ଼ କଅଁଳିଲା । ବଉଳ ମଣ୍ଡି ହେଲା, କୁହୁଡ଼ିରେ ଅଧେ ବଉଳ ଜଳିଗଲା । ବାକିଯାକ ଆମ୍ବ କଷି ହେଲା, ଫଳିଲା, ପାଚିଲା, ଝଡ଼ିଲା । ଗଛ ସବୁ ଦରବୁଢ଼ୀ ହୋଇଗଲା । ସିଏ କିନ୍ତୁ ଆସିଲା ନାହିଁ । ସିଏ କଏ ଜାଣନ୍ତି ? ଅନନ୍ୟା 'ଆନଜଉ୍' ସାଇବ ଝିଅର ନାଆଁ । ଗୋଟିକଣ ବାକିର ନ ଥିଲା

ବେଳେ ଚନ୍ଦ୍ରଧର ପୁଣି ରେଲ ଷ୍ଟେସନରେ ବସନେ ଏଇ କାରସ୍ଥାନ ଖୋଲି ମନ ଆଗଚଲି ଝିଅଟିକୁ ଆବିଷ୍କାର କରିଥିଲେ । ଦୁହେଁ ପରସ୍ପରକୁ ପସନ୍ଦ କରିଥିଲେ ଓ କିଛିଦିନ ହାତ ଧରାଧରି ହୋଇ ବିହ୍ୱଳ ଉନ୍ମନା ଅବସ୍ଥାରେ ସହରର ଗଳି କନ୍ଦି ସବୁଆଡେ ଚରି ବୁଲି ଥିଲେ । କଥା ଥିଲି ଆନଜଙ୍ ମାସଟେ ପାଇଁ ବ୍ୟାଙ୍ଗଲୋର୍ ଯାଇ ତାର ପରିବାର ସହିତ ବୈପ୍ଳବିକ ପଦ୍ଧତିରେ ସବୁ ସମ୍ପର୍କ ତୁଟାଇ ଫେରି ଆସିବ ଓ ତାପରେ ଦୁ'ଜଣ ଯାକ ଯାବତ୍ ଚନ୍ଦ୍ରାକେ ଏକାଠି ଜୋସ୍ନା ବିହାର କରିବେ ।

ସେତ ଆସିଲି ନାହିଁ । ଚିଠି ବା ଫୋନ୍‌ର ସମ୍ଭାବନା ବି ଆସିଲାନି । ତଥାପି 'ମାଙ୍କଡ଼ ଗଡ଼ୁ ଗଡ଼ୁ ବସି' ହବାର ନ୍ୟାୟରେ ପ୍ରତ୍ୟୟୀ ଚନ୍ଦ୍ରଧର ସଚରାଚରର ବସନ୍ତ କାଳ ଆଉ ଫୁଲଫୁଟା ମୁହୂର୍ତ୍ତକୁ ଅପେକ୍ଷା କଲେ । ସୁକେଶୀ ଅନ୍ଧାର ବେଳେ ବେଳେ ଉଗ୍ର ହୋଇ ତାଙ୍କ ଆଗରେ ଦୋଷ୍ଟ୍ରଣୀ ରାତି ପରି । ନିଜକୁ 'ପୁରୁଷୋର୍ଦ୍ଧ' ପାଣିରେ ସଜେଇ ସେ ପାଦ ପକେଇଲେ ସହରଠୁଁ ଖୁବ୍ ଦୂରରେ ଥିବା ଝାଉଁ ବଣ ଉହାଡ଼ରେ ସଳଖ ଠିଆ ହୋଇ ଥିବା ସେଇ ବିରାଟ ପଞ୍ଚ ତାରକା ବିଶିଷ୍ଟ ହୋଟେଲ୍ ଦୁଆରେ । ସେତେ-ବେଳକୁ ରାତି ତୃତୀୟ ପ୍ରହରର ଶେଷ ପାଦରେ ସବୁଆଡ଼ ଶୁନ୍‌ଶାନ୍ । କିନ୍ତୁ ସବା ଉପର ମହଲାର ତିନୋଟି କୋଠରୀରୁ ଖୋଲି ଝରକା ଦେଇ ତଥାପି ବିଜୁଳି ଆଲୁଅ ଛିଟିକି ପଡ଼ୁଚି କେଡ଼େ ସୁନ୍ଦର ସନ୍ତରଣ ଶାଳାର କାଚ କେନ୍ଦ୍ର ଗର୍ଭରେ । ତାରା ସବୁ ପାଣିରେ ଠେଲି ପେଲି ହୋଇ ଚୂରି ହେଉ ଥିଲେ । ପୋଖରୀ ଦାଡ଼ର ପାହାଚ ଉପରେ ବସିପଡ଼ି ଚନ୍ଦ୍ରଧର ଭାବୁଥିଲେ ସେଇ ତିନୋଟି ମହଲାର କୋଠରୀର ଝର୍କାକୁ କିଛି ଗୋଟାଏ ନୂଆ କଥା ଘଟିବାର ଚପଳ ଆଶା ଆଉ ବିଶ୍ୱାସରେ ।

ହେଇ ଦେଖୁଚ । ବାଁ ପଟରୁ ତିନ୍ ନମ୍ବର କୋଠରୀର ବାଲ୍-କୋନକୁ ଉଠିଲେଣି ତିନିଟା କଳାଛାଇ ! ଦୁଇଟା ଲୁଙ୍ଗି ପିନ୍ଧା ଲୋକ ବେଶ୍ ମୋଟା ଆଉ ଆର ଜଣକ ପାଇଜାମା ପିନ୍ଧା ଡେଙ୍ଗା ଓ ପତଳା । ସମସ୍ତେ ହିନ୍ଦି ମାରଓ୍ୱାଡି ଓଡ଼ିଆ ମିଶାମିଶି ଭାଷା କହୁଚନ୍ତି । ସିଧା ବାଲ୍‌କୋନି ତଳେ ସନ୍ତର୍ପଣରେ କାନ ଡେରିଚନ୍ତି ଚନ୍ଦ୍ରଧର ।

"ଯାଇବ ଆମର ପକ୍‌କା ଲୋକ । ଘର ମିଥିଳାରେ ବା ଭାଇ-ଜାଗ୍‌ରେ ହେଲେ କଣ ହବ । ଏଠି ସମସ୍ତଙ୍କୁ ଓଡ଼ିଆ ବୋଲି କହିବାକୁ

କହିବ । କଳାହାଣ୍ଡିରେ ତିନିଟା କୋଠା, ଭୁବନେଶ୍ୱରରେ ଦିଟା କୋଠା ଆଉ ଆଠଟା ପ୍ଲଟ୍ । ସ୍ତ୍ରୀ' ତା' ନାଁରେ । ପୁଣି ପିଲପିଳିକା ସବୁ ଅସଲ ବ୍ୟବସାୟ ଭିତରେ—ପୋତା ଯେତେ ଉଣ୍ଡ ସେତେ ହୋଇ ଅଛନ୍ତି । ଗୁଡ଼ିଏ ଟ୍ରକ୍, ଗୋଟାଏ ବସ୍, ପାରାଦ୍ୱୀପ୍‌ରେ ଦିଟା ଟ୍ରଲର୍, ଷାଠିଏ ଏକରର ଫାର୍ମ ପଛେ ଜର୍‌ସି ଗାଈ । ଉଦ୍ୟୋଗୀ ଲୋକ ।"

"ଆରେ ବାପ ! ସେ ତ ଖୋଦ ସରକାର ଚଳାଇବା ଲୋକ । ସବୁରି ହେବ ନମକ ସଚ୍ଚା ଓଡ଼ିଆ କର୍ମଗୁରୁଙ୍କ କାନ୍ଧରେ ପାଦ ଦେଇ ଉଠିଛି । ଆଜି ଏଇଲେ ଅଧା ଶାସନର ଦାୟିତ୍ୱ ତାରି ହାତରେ ସିଏ ନ ଥାନ୍ତା ତ ମନ୍ତ୍ରୀ ଏମ୍‌. ଏଲ୍‌. ଏ. ହବା ପୂର୍ବରୁ ଲୋକଙ୍କୁ ପ୍ଲେନ୍ ଟିକେଟ ଦିଅନ୍ତା କିଏ ? ସଉକ ମଉଜର ବ୍ୟବସ୍ଥା କରନ୍ତା କିଏ ? ଦେଖନ୍ତୁ କା'ର ଗାଈର କୁଣ୍ଡା, ପାଲ ଦରକାର ଡାକୁଇ ଖୋଜା । କା ଝିଅ ବାହାଘରକୁ ଦହି ମାଛ ଦରକାର ଡାକୁଇ ଖୋଜା । କାହାର ଭଜନ କୀର୍ତ୍ତନ ବ୍ୟବସ୍ଥା ପାଇଁ ଗୁନ୍ଦୁଆ ଟଙ୍ଗାଠୁ ଦରିଦ୍ର ନାରାୟଣ ପଙ୍ଗତ ସେଇ ଏକା ସମ୍ଭାଳି ପାରିବ । ସବୁଠୁଁ ବିଚକ୍ଷଣ ବହୁରୂପୀ ତୈଳାକ୍ତ କର୍ମଗୁରୁର ନମୁନା ।

ଦେଖିନା କି ତମେ ସଦର ଦରଜାରେ ମଟର ଗାଡ଼ି ରହିବା ମାତ୍ରେ ସିଏ କେମିତି ନବେ ଡ଼ିଗ୍ରୀ ଅଣ୍ଟା ଭାଙ୍ଗି ପଛ ଦରଜା ଖୋଲି ଭି. ଆଇ. ପି. ମାନଙ୍କୁ ସ୍ୱୟଂ ହାତରେ ଆହ୍ଲାଦ ମାରି ପାଛୋଟି ନିଏ । ସତରେ କରିତକର୍ମା ମଣିଷ, ତାର ଖୋଲକଳାରୁ ଗୋଟିଏ ଲେଖାଏଁ କଳା ପଦ୍ମ ସଭିଙ୍କ ପାଖରେ ଥାଆନ୍ତା, ଜଗତ ପଛକେ ନର୍କେ ପଡ଼ିଥାଉ ଶାସନ କଳର ସବୁ ପୁର୍ଜା ଉଦ୍ଧାର ହୋଇ ଯାଆନ୍ତେ । ଯେତେ ଚନ୍ଦନ କାଠ, ସାଗୁଆନ କାଠ, ଅଫିସ କିଣା ଆସବାବ ପତ୍ର ତା ଗାଁକୁ, ତା ପ୍ରଦେଶକୁ ବୋହିନେଉ—କିଛି ଯାଏ ଆସେ ନାହିଁ । ସବୁ ପରାକ୍ରମୀ ନେତୃବର୍ଗଙ୍କ ସାଙ୍ଗରେ ହର୍‌ଦମ୍ ତାରି ଫଟ ତ ବାହାରୁଛି ଆମର ଯେତେ ଓଡ଼ିଆ କାଗଜରେ !

ପତଳା ଲୋକଟା ପାଖ ଘରର କବାଟ ଖଡ଼୍‌ଖଡ଼୍ ଶବ୍ଦ ଶୁଣି ବଙ୍କା ବଙ୍କା ଓଡ଼ିଆ ଗୁଜୁରାଟୀ ମିଶା ଭାଷାରେ କହିଲି "ହୋଇ ପାଟି କରନି । ହାକିମ ଉଠିଲଣି ନା କଣ । ଆମ କାରବାର ତ ହୋଇ ସାରିଛି ।

ଚାରିଟାମୋକ ଅଡ଼ୁଆ ଅଫିସରଙ୍କୁ ତ ବଦଳି କରିଦେବ ବୋଲି କହୁଛି । ଟୋକିଟାକୁ ନେଇ ପୁଣି ବଡ଼ ଭୋର୍‌ରୁ ଛୁଟିବାକୁ ହେବ । ଚାଲ ଶୋଇପଡ଼ ।

ଏଇ ଦରଜାଟି ବନ୍ଦ ହେଲା ଏବଂ ପାଖ ଦିଟା କୋଠରୀ ଛାଡ଼ି ଅନ୍ୟଟିର ଆଲୋକିତ ଝରକା ଆଗକୁ ଦିଟା ଚାଲି ଆସି ଠିଆ ହେଲେ । ନିଶ୍ଚିତ ଭାବରେ ସେଥିରୁ ଗୋଟିଏ ସ୍ତ୍ରୀ ଲୋକ । ଗୁଣୁ ଗୁଣୁ କରି ଗାଉଛି ବେସୁରା 'ଡର୍‌ ଲଗେ ବାଲ୍‌ମା ହୋ' । ଆର ଲୋକଟି ତା କାନ୍ଧରେ ହାତ ପକେଇ ପଚାରୁଛି 'କଣ ଗୀତ ଗାଇଲଣି ?' 'ଶୁଣ ମୁଁ କାହିଁକି ଗାଉଛି । ଆଜି ସାରା ରାତି ଏଇ ଦାମୀ ହୋଟେଲ କକ୍ଷରେ ଚୌକାତ୍‌ ଶୟନ ବିଳାସରୁ ମୁକ୍ତ ଉନ୍ନିଦ୍ର ରହିବାକୁ ମନସ୍ଥ କରିଛି । ତମର ମୋର ମାସକ ଦରମା ମିଶି ଚେଜ ପାଣି ପାଇଁ ନିଅଣ୍ଟ । ଯେତେବେଳେ ଆମେ ଦିହେଁ ଠିକ୍ କଲେ ଯେ ସାରା ଜୀବନ କାଳର ଗୋଟିଏ ଦିନ ମାଲ୍‌ଦାର ବଡ଼ ଲୋକ ପରି ଏଇ ପଞ୍ଚତାରକା ବିଶିଷ୍ଟ ହୋଟେଲରେ ବିତାଇବାର ପହ୍ନକ କରି ବାକି ମାସର ଅଠର ଦିନ ମାଙ୍କଡ଼ ଚିତ୍ର ମାରୁଥିବା ହାଣ୍ଡିର ଉପହାସକୁ ନୈବେଦ୍ୟ ପରି ଗ୍ରହଣ କରିବା—ତେବେ ଆଜି ଶୋଇବା କାହିଁକି ! ଜାଗ ଧନମଣି ଜାଗ । ଗୀତ ବୋଲ । ଉତ୍ପାତ ହୁଅ ।'

'ଚାହୁଁ ଚାହୁଁ ଦେଖିବ । ପତ୍ର ସବୁ କଅଁଳିଲା, ପାକଳ ହେଲା, ଝଡ଼ିଗଲା । ପାଣିର ରୂପାଢେଉ ହ୍ରଦର ଉପରୁ ମାଳ ମାଳ ହଂସ ଉଡ଼ିଗଲେ ଦକ୍ଷିଣ ଦିଗର ଏକ ଲମ୍ବା ପାହାଡ଼ ଉପରକୁ । ଆଉ ନିର୍ଘାତ୍ ଖରା ତାତିରେ ଦାଉ ଦାଉ ତାତିଲା ଶିଳା ଶଯ୍ୟାରେ ସିଝି ସିଝି ଜଳିଗଲେ । ହାଣ୍ଡିରେ କେଡ଼େ ଯତ୍ନରେ ତିଆରି ସଜ ଖେଚୁଡ଼ି ଗଣ୍ଡିକ ଚାଉଳ ହେଲା । କାନ୍ଦିଲ ଡାଲି ହାଣ୍ଡିକ ଆମ୍ବିଳ ହୋଇଗଲା । ତାରାମାନେ ଆଖି ମିଟିକା ବନ୍ଦ କରି ଦେଲେ; ଆଉ ତାଙ୍କର ଥଣ୍ଡା ମୁନିଆଁ ଲୁହାଣିରୁ ଧାର ଧାର ଲୁହ ଝରି ଚୁଇଗଲା ଧରିତ୍ରୀର ମଉଳା ଫୁଲ ଶେଯରେ । ସେକେଣ୍ଡ ସୋ ସିନେମା ଫେରନ୍ତା ବୁର୍ଜୁଆ ମଧ୍ୟମ ଶ୍ରେଣୀସ୍ଥ ଦମ୍ପତିମାନେ ଘରର ରାହା ନ ଧରି ନଈ କୂଳକୁ ଚାଲିଲେ, ଆଉ ଶୀତ କାକରରେ ଥର ଥର ହେଲେ । କିରାଣୀ ଗୁମାସ୍ତା-ମାନେ ଅଧିକ ଦରମା ଦାବି ଓ ଦରଦାମ ସମ୍ପର୍କିତ ଧର୍ମଘଟ ବର୍ଜନ କରି 'ଗେଜେଟେଡ୍‌' ହେବାକୁ ମନ ବଳାଇଲେ । କବିତାର ଉଷ୍ମ ଚମକଟିକ ସରି

ଆସୁଚି । ଚନ୍ଦ୍ରା ପାଇଁ, ତମ ବେକରେ ତମ ବୁଢ଼ା ବୁଢ଼ୀ ବାପ ମା ଭାଇ ଭଗାରି ବନ୍ଧା । ମୋ ବେକରେ ଦି ଭାଇ ତିନି ଭଉଣୀ ରୋଗୀଣା ବାପର ଜଞ୍ଜାଳ ବନ୍ଧା । ଆମେ ଦିହିଁ ତ ବାଧା ହୋଇ ପାରିବାନି । ତଥାପି ଦେଖୁନା ବର୍ଷାର ପ୍ରଥମ ଜଳବିନ୍ଦୁଟି ଭୂଇଁରେ ପଡ଼ିବା ପୂର୍ବରୁ ଚାଆଙ୍କୁ କିମା ଗିଳି ଦେଇ ଶାମୁକାଟି ବାଲିରୁ ପାଣିକୁ କେତେ ସୁଖରେ ଗଡ଼ି ଗଡ଼ି ଯାଉଚି । ତା ପେଟ ଭିତରେ ମୁକ୍ତାଟିଏ ତିଆରି ହେଉଚି । ଗୃହହୀନ ଧନ ଗୃହହୀନ ବଇଭବ । ତୁମେ ଯେ କବି ସେଇ ମୋ ଗଉରବ' । ଏମିତି ମନକୁଆଁ କଥାଟିଏ କହିବା ପାଇଁ କବି ବଧୂଟିଏ କେବେ ଆସିବ ଆସିବ ବୋଲି ବାଟ ଚାହିଁ ବସିଚି । ଭଗବାନ ସତରେ ଆଜକାଲି ଭାରି ଅନ୍ୟମନସ୍କ ରହୁଚନ୍ତି । ଦେଖୁଚନ୍ତି ତମ ଆମ ଅବସ୍ଥା, ତେଣେ ମନ ଯାଇ ଗୋଟିପୁଅ ନାଚଠି । ହସ ପ୍ରିୟ ହସ । ସୁନ୍ଦର ଫାଟିବାକୁ ଆଉ ଅଳ୍ପ ସମୟ ବାକି, ଆମର ହସିବାକୁ ବା ଚିରଚିରେଇବାକୁ ମାତ୍ର ସେତିକି ସମୟ ବାକି ।

ସତକୁ ସତ ଦିହିଁଯାକ ସିଲହଟ୍ ଗ୍ଲାଇ କୋଳାକୋଳି ହୋଇ ବେଦମ ହସରେ ଅଜାଡ଼ି ହୋଇ ପଡ଼ିଲେ । 'ହେଃ ହେଃ ହେଃ—ହୋ ହୋ ହୋ—ହା ହା ହା'—ଆଖିକୁ ଲୁହ ଆସିଯିବା ପର୍ଯ୍ୟନ୍ତ । ଏଇ ଭୟଙ୍କର ହସରେ ଚମକି ଯାଇ ପଲେ କୁକୁର ଏକାବେଳେକେ ଭୋ ଭୋ କରି ଚିତ୍କାର କରିବାକୁ ଲାଗିଲେ ସମତାଳରେ । ସଙ୍ଗେ ସଙ୍ଗେ ଝର୍କାଟି ଧଡ଼୍ କରି ବନ୍ଦ ହୋଇଗଲା । କିନ୍ତୁ ଚକ୍ରଧରଙ୍କର କାନ୍ଧ ଉପରେ ପଡ଼ିଲା ଅଧା ମଉଳା ଚମ୍ପକ ବହ୍ନଗିଟିଏ । ସେଇ ହସକୁଶି ଝିଅଟିର ଗଭାରୁ ମୁକୁଳି ଯାଇ ଅସାବଧାନ ଝର୍କା ବାଟେ ଛିଟିକି ପଡ଼ିଚି ନିଶ୍ଚୟ । ଇଏ ବି ଏକ ଭିନ୍ନ ରୂପର ଫୁଲ ତୋଡ଼ା ସମର୍ପଣର ନମୁନା ଯାହା ଉତ୍ସର୍ଗ ହୁଏ ନାହିଁ, ଆକସ୍ମିକ ଭାବେ ପରିତ୍ୟକ୍ତ ହୁଏ, ଆଉ ଚକ୍ରଧର ପରି ହାଲ୍‌କା କାନ୍ଧର ଅଧିକାଂଶ ଯୁବକଙ୍କୁ ପାହାଡ଼ ପରି ଓଜନିଆ ଲାଗେ ।

ଚକ୍ରଧର ମଣିଷ ଜନ୍ମରୁ ପାରି ହୋଇ ପତଙ୍ଗୀପରି ପକ୍ଷ ବିସ୍ତାର କରୁଥିଲେ । ଏଇ ସମୟରେ ଗୋଟାଏ ବିଦେଶି ମଟର ଗାଡ଼ି ଖୁବ୍ ବେଗରେ ଆସି ହୋଟେଲର ସଦର ଦରଜାରେ ଅଟକିଲା । ଆଉ କାନଫଟା ଆୱାଜ୍‌ରେ ହର୍ଣ୍ଣ ମାରିଲା । ଯେଉଁ ତୃଷ୍ଣାପୁ କକ୍ଷଟିର ଝରକାରୁ ନୀଳ

ଆଲୋକ ଝରୁଥିଲା ଓ ଅନେକଙ୍କ ଉପରେ ଇନ୍ଦ୍ରପୁରୀର ଭ୍ରମ ଆଣୁଥିଲା, ସେହି କୋଠରୀରୁ ଯୋଡ଼ା ମଚ୍ ମଚ୍ କରି ଓହ୍ଲାଇ ଆସିଲେ ଦୁଇଜଣ ଲୋକ ମଟରଗାଡ଼ି ପାଖକୁ । ଆଗେ ଆଗେ 'ବବ୍'ବାଳ ଆଉ ଡ଼ିଲା ଗାଉନ୍ ପିନ୍ଧା ମେମ୍ ଜଣଙ୍କୁ ଦେଖି ଚକ୍ରଧର ଗୁପ୍ତ ମାରିଲା ପରି ପୋଖରୀ ପାହାଚରୁ ଉଠି ପଡ଼ି ଦଉଡ଼ି ଆସିଲା ମଟରଗାଡ଼ି ପାଖକୁ, ଠିକ୍ ସେ ଚିହ୍ନିଲା । ଏଇ ସିଏ ଆନଜଲ୍ ଯାକୁ ବହୁଦିନରୁ ସେ ପ୍ରତୀକ୍ଷା କରି ଅସୁମାରୀ ରାତି ବଡ଼ ଚାଣି ଯିବାର ବାଟ ଚାହିଁ ବସିଛନ୍ତି । ଆନଜଲ୍ ଡାହାଣ ହାତରୁ ଗ୍ଲୋଭସ୍ ଖୋଲି ତାଙ୍କ ହାତରେ ଧଳା ଆଙ୍ଗୁଠି ଗୁଡ଼ିକ ବଢ଼ାଇ ଦେଇ ଚୁମ୍ବନ କରିବାକୁ ସଙ୍କେତ ଦେଲେ । କିନ୍ତୁ ନିଷ୍ଠୁର ବାକ୍‌ରୁଦ୍ଧ ଚକ୍ରଧର କାଠ ପିତୁଳା ପରି ଠିଆ ହୋଇ ଚାହିଁଥିଲେ ଜକ୍‌ଜକ୍ । ଝିଅଟି ପଛରେ ସେହିଁ ପଟା ପଟା ଘରି ପୋଷାକ ପିନ୍ଧା ଭଦ୍ରଲୋକ ତାଙ୍କର ସନ୍ନିକଟ ହେଲେ ସେ ସମ୍ଭବତଃ ପୂର୍ବୋକ୍ତ ପ୍ରଥମ କୋଠରୀର ତିନିଜଣ ଅତିଥିଙ୍କର ଆଲୋଚ୍ୟ ପଦସ୍ଥ କରିତ୍କର୍ମୀ ସରକାରୀ କର୍ମଧାରପୁ ।

ବେଶ୍ ହାକିମି ଗଳାରେ ସେ ଗାଡ଼ି ଚାଳକଙ୍କୁ ଆଦେଶ ଦେଲେ ଯେ ସାହେବଙ୍କୁ ନିର୍ଦ୍ଧାରିତ ସ୍ଥାନରେ ସମ୍ପୂର୍ଣ୍ଣ ପ୍ରମାଦ ମୁକ୍ତ ଭାବେ ପହଞ୍ଚାଇ ଦିଅ । ଗାଡ଼ି ଚାଲିଯିବା ପରେ ବିମ୍ବିତ ହୋଇ ସେ ଏଇ ଅର୍ବାଚୀନ ଚକ୍ରଧରଙ୍କୁ କଡ଼ା ଗଳାରେ ପଚାରିଲେ ଯେ ତାଙ୍କର ଏଠି କଣ ଦରକାର । ମୌକା ସବୁବେଳେ ଆସେ ନାହିଁ । ଏହା ଈଶ୍ୱର ଦତ୍ତ ପଦାର୍ଥ । ଚକ୍ରଧର ସୂଚନା କ୍ରମେ ବୁଝାଇ ଦେଲେ ଯେ ସେ ହାକିମଙ୍କୁ ଏଠିକି ଆସିବାର ଓ ମେମ୍ ସାହେବଙ୍କ ସାନ୍ନିଧ୍ୟ ଲାଭ କରିବାର ତଥା ଏ ସବୁର ଉପରିଚରକ ତିନିଜଣ ମତ୍‌ଲବୀ ପ୍ରଥମ କୋଠରୀର ଲୋକଙ୍କ ବିଷୟରେ ସବୁ ଜାଣନ୍ତି; ଏବଂ ଏକ୍‌ବାରେ ଲଗାମ୍ ଛଡ଼ା ହୋଇଥିବାରୁ ସେ ଯଥା ସ୍ଥାନରେ ଓ କାଳରେ ଏସବୁ ପ୍ରକାଶ କରିବାକୁ କୁଣ୍ଠାବୋଧ କରିବେ ନାହିଁ ।

ପାଠକେ ! କହିବା ବାହୁଲ୍ୟ ଯେ ଉକ୍ତ ପରାକ୍ରମୀ ରାଜ କର୍ମଚାରୀଙ୍କ ପ୍ରସାଦରୁ ଅବିଳମ୍ବେ ଚକ୍ରଧର ଚାକିରିଟିଏ ପାଇଲେ ଓ ସର୍ବୋଚ୍ଚ ହାକିମଙ୍କ ବ୍ୟକ୍ତିଗତ ସଚୀବ ଭାବରେ ପରମ ରାଜଭକ୍ତରେ ପରିଣତ ହେଲେ । ତାଙ୍କର ଘର ସଂସାର ଏଗାରଟି ସନ୍ତାନ ସନ୍ତତି ସତ୍ତ୍ୱେ ସମ୍ପୂର୍ଣ୍ଣ ତୈଳାକ୍ତ ଓ ସୁରକ୍ଷିତ ।

ତଥାପି ଚନ୍ଦ୍ରଧର ଯେ କୌଣସି ଫୁଲ ବା ଫୁଲତୋଡ଼ାର ଅଂଶ ବିଶେଷ ଦେଖିଲା ମାତ୍ରେ ନିଜକୁ କ୍ଷଣକ ପାଇଁ ହେଲେ ବି ଅସ୍ଥିର ଓ ଅସହାୟ ମନେ କରିଛନ୍ତି ।

ବୃନ୍ତରୁ ଛିଣ୍ଡିବା ପରେ ଫୁଲ ଆଉ ଡ଼ାଳରୁ ଛିଣ୍ଡିବା ପରେ ପତ୍ର ବିରହ ବିବର୍ଜିତ ପ୍ରେମପତ୍ର ଏଇମିତି ସାଦା ସାଦା ନିରସ ଫିକା ହୋଇଯାଏ; ଜୀବନ ଦର୍ଶନର ଏଇ ପୌଗଣ୍ଡ ଅବସ୍ଥା ସାଥିରେ ସେ ସାଲିସ୍ କରିପାରୁ ନଥିଲେ କସ୍ମିନ୍ କାଳେ ।



# ସକାଳର କେତେକ ଧ୍ୱନିମାନଙ୍କ ସଂପର୍କରେ



**ବିଜୟକୃଷ୍ଣ ମହାନ୍ତି**

ରଙ୍ଗନାଥ ବାବୁ ପ୍ରତିବେଶୀ ଭାବେ ଆସି ରହିବା ପରେ ଆମ୍ଭମାନଙ୍କର ଯନ୍ତ୍ରଣା ଆରମ୍ଭ ହୋଇଛି । ରଙ୍ଗନାଥ ବାବୁ ସମ୍ବଲପୁରରୁ ବଦଳି ହୋଇ ଆସିଛନ୍ତି ବୋର୍ଡ ଅଫ ରେଭିନ୍ୟୁ ଅଫିସର ଅଣ୍ଡର ସେକ୍ରେଟେରୀ ଭାବେ । ଆମର ପଡ଼ୋଶୀ ଭାବେ ସେ ଆସି ରହିବାର ସପ୍ତାହେ ହୋଇଗଲା । ଏକମାତ୍ର ଝିଅ ତାଙ୍କର ପ୍ରୀତି ରାତିର ଶେଷ ପ୍ରହରରେ ସ୍ୱର ସାଧୁଛି, ଗୀତ ଗାଉଛି । ତା'ର ଗୀତ ଗାଇବାରେ ଆମ୍ଭମାନଙ୍କର ଆପତ୍ତି କରିବାର କିଛି ନଥିଲା, ଯଦି ସେ କଣ୍ଠରେ ଏତେ ଟିକେ ଲାଳିତ୍ୟ ଥାଆନ୍ତା । ଅତ୍ୟନ୍ତ ଶ୍ରୁତିକଟୁ ସେ କଣ୍ଠ ସ୍ୱରରେ ଆମ୍ଭେମାନେ ସମସ୍ତେ ଅତିଷ୍ଠ ହୋଇ ଉଠିଥିଲୁ । ମାତ୍ର ପ୍ରତିବାଦ କରାଯିବ କପରି ?

ମୁଁ ରାଗରେ ତମ୍ ତମ୍ ହୋଇ ଦିନେ ବାହାରିଥିଲି । ବାପା ମୋ ହାତ ଧରି ଅଟକାଇ ଦେଲେ, "ନୀରବରେ ସହିବା ଛଡ଼ା ଅନ୍ୟ ଉପାୟ ନାହିଁ । ତୁ କ'ଣ ଯାଇ ତାଙ୍କ ଝିଅର ଗୀତ ବନ୍ଦ କରି ଦେଇ ପାରିବୁ ? ଆମ ଆଡୁ ବିରକ୍ତି ପ୍ରକାଶ କରାଗଲେ ତୁ କ'ଣ ଭାବୁଛୁ ରଙ୍ଗନାଥ ବାବୁ ସୁଖି ହେବେ ?"

ବାପାଙ୍କର ଯୁକ୍ତିକୁ ମୁଁ ଗ୍ରହଣ କରି ନେଇଥିଲି । ବିଛଣାରେ ପଡ଼ିରହି ପ୍ରୀତିର ଗୀତ ଶୁଣୁଛି । ମୋ ମୁଖ ନିଦ୍ରାରେ ଚାବୁକ ମାରି ମୋତେ ଜାଗ୍ରତ କରି ଦେଇଛି ବ୍ରାହ୍ମ ମୁହୂର୍ତ୍ତରେ । ମୋ ଧୈର୍ଯ୍ୟର ପରୀକ୍ଷା ଚାଲିଛି ।

ସକାଳର ସୂର୍ଯ୍ୟ ଆସିବ ଆସିବ ହେଲାଣି । ଗୀତ ବନ୍ଦ ହେଲା । ମୁଁ କେବଳ ନୁହେଁ, ଅନେକ ଆଶ୍ୱସ୍ତ ହୋଇଥିବେ । ପାଣି ପାଇପ୍ ଖୋଲି ଗଲାଣି । ଗଳ୍ ଗଳ୍ ହୋଇ ପାଣି ପଡ଼ୁଛି । ମୋ ସାନ ଭଉଣୀ ମୀନା ରେଡ଼ିଓରେ କଟକ ସେଣ୍ଟର ଧରାଇଛି । ଗୃହର ପିଲା ଖ୍ରୀମ ସଶବ୍ଦେ ବାସନ ମାଜିବାରେ ବ୍ୟସ୍ତ । ଭଜନ ଶୁଣିବାରେ ବାଧା ଉପୁଜିଲେ ମଧ୍ୟ ନିରୁପାୟ ଅବସ୍ଥା । ଏକଥ ସବୁ ଚାଲିଛି । ସବୁ ପ୍ରୟୋଜନ ।

ଦାନ୍ତ ଘଷୁଛି ବସି, ହଠାତ ଝଣାତ୍ କରି ଏକ ଶବ୍ଦ । କ'ଣ ଗୋଟାଏ ଭାଙ୍ଗିଲା । ଉଠିଯାଇ ଦେଖିଲି ଖ୍ରୀମ ହାତରୁ କାଚ ଗ୍ଲାସଟା ପଡ଼ି ଭାଙ୍ଗି ଯାଇଛି ଓ ସେ ବିଷର୍ଣ୍ଣ ହୋଇ ଯାଇଛି । ଧାଇଁ ଆସିଛି ବୋଉ, "ଏହାକୁ ମିଶାଇ ଏ ମାସରେ କେତୋଟା କାଚ ଜିନିଷ ଭାଙ୍ଗିଲୁ ?" ଦୁମ୍ କରି ଖ୍ରୀମ ପିଠିରେ ଗୋଟେ । ମୋର ମନେ ହେଲା ମୋ ପିଠିରେ କିଏ ଗୋଟେ ଥୋଇଦେଲା ।

ବୋଉର ଭାରି ଖରାପ ପ୍ରକୃତି । ଆଗ ହାତ ଉଠାଇ ଦେବ । ମାତ୍ର ପ୍ରତିବାଦ କରି ପାରିଲିନି । କାରଣ ବୋଉ କଥା ଉପରେ କଥା କହିବାର କାହାର ସାହସ ଅଛି ଏ ଘରେ ?

ବାପା ଘର ଭିତରୁ ବାହାରି ଆସି ଜିଣ୍ଡି ଦେଇ ପୁଣି ଘର ଭିତରକୁ ଚାଲିଗଲେ । ଖ୍ରୀମ କାନ୍ଦୁଛି । ତାର ବାପ, ମା' ଉପସ୍ଥିତ ଥିଲେ ବୋଉ ସେମାନଙ୍କ ସାମ୍ନାରେ ମାରି ପାରିଥାନ୍ତା ଖ୍ରୀମଙ୍କୁ ? ଏ ଯୁଗରେ ଏମିତି ପିଲାଟିଏ ପାଇବା କେଡେ କଷ୍ଟ ବୋଉ କ'ଣ ତା ବୁଝେ ? ବାପା ଥରେ ତାକୁ ବୁଝାଇବାକୁ ଚେଷ୍ଟା କରିଥିଲେ, ମାତ୍ର ଧମକ ଖାଇ ଚୂପ୍ ହୋଇ ଯାଇଛନ୍ତି । ଲୁହ ପୋଛୁ ପୋଛୁ ବାସନ ମଜା ହାତର କଳା ଲାଗି ଯାଇଛି ଖ୍ରୀମ ମୁହଁରେ । କାନ୍ଦୁ କାନ୍ଦୁ ଗାଁ । ବାପ, ମା, ଭାଇ, ଭଉଣୀ ହୁଏତ ମନେ ପଡୁଛନ୍ତି । ଗାଁରେ ଥିଲେ ଏତେ ସକାଳୁ ସେ କ'ଣ ନିଦରୁ ଉଠିଥାଆନ୍ତା ? ପାଠ ପଢିଲା ନାହିଁ, ପେଟ ପୋଷିବା ଲାଗି ସହରକୁ ଆସି ଏ ଦଶା ।

ବୋଉ କ୍ରୋଧରେ ପଞ୍ଚମ । ତା' ଦରମାରୁ ଗ୍ଲାସ ପଇସା ନିଶ୍ଚୟ କାଟିବ । ଦରମା ତା'ର ମାସକୁ ଦଶ ଟଙ୍କା । ଗ୍ଲାସର ଦାମ୍ ଦେଢ଼ ଟଙ୍କାରୁ ନିଶ୍ଚୟ କମ୍ ନୁହେଁ । ଖ୍ରୀମର ଯଦି ପ୍ରତି ମାସରେ ଏମିତି ଭୁଲ୍ କେତେଥର ହୁଏ, ତେବେ ଦରମା ଟଙ୍କା ଆଉ ତା ଘରକୁ ଯିବ ନାହିଁ ।

ବୋଉ ଗୁଳଗଲାଣି ଟେକେଇ ଘରକୁ । ବୋଉର ଅନୁପସ୍ଥିତିର ସୁଯୋଗ ନେଇ ବାପା ଘର ଭିତରୁ ବାହାରି ଆସିଛନ୍ତି । ଆଖି ତାଙ୍କର ଛଳ ଛଳ । ସହାନୁଭୂତି ଜଣାଇବାକୁ ଆଗେଇ ଯାଇ ପାରୁ ନାହାନ୍ତି କିନ୍ତୁ, ବୋଉକୁ ଡର । ଆଖିରୁ ଲୁହ ପୋଛୁ ପୋଛୁ ହଠାତ୍ ବୋଉ ପାଟିରେ ଘୁନଆ ହୋଇ ଖ୍ରାମ ପୁଣି ବାସନ ମାଜିଲାଣି ।

ସଙ୍ଗେ ସଙ୍ଗେ ବାପା ବୁଲପଡ଼ି ଘର ଭିତରକୁ ପଶି ଯାଇଛନ୍ତି । କାନ୍ଦଣା ଶୁଭୁଛି । ବାହୁନି ବାହୁନି କାନ୍ଦୁଛନ୍ତି ରଜନୀ ବାବୁଙ୍କ ପତ୍ନୀ ଉଷସୀ । ସେ ବାହୁନାରେ ଅନେକ କାରୁଣ୍ୟ । ଦୁଇ ଦିନ ତଳେ ଅଫିସରୁ ଫେରିବାବେଳେ ଟ୍ରକ ଏକ୍‌ସିଡେଣ୍ଟରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ ରଜନୀ ବାବୁ । ଆମ ଘର ଠାରୁ ଦୁଇ ଘର ଛାଡ଼ି ତାଙ୍କ ଘର । ବର୍ଷେ ହେଲା ପ୍ରେମ ବିବାହ କରିଥିଲେ ସେମାନେ । ଚଣ୍ଡୀ ମନ୍ଦିରରେ ମାଳା ବଦଳ କରି ।

କୁଳୀନ ବ୍ରାହ୍ମଣ ଗୋବର୍ଦ୍ଧନ ରଥଙ୍କ ଦ୍ୱିତୀୟ କନ୍ୟା ଉଷସୀ । ଘରୁ ଲୁଚି ପଳାଇ ଆସି ରଜନୀ ଗଉଡ଼କୁ ବିବାହ କରିଥିଲା । ଗୋବର୍ଦ୍ଧନ କୁଆଡ଼େ ପ୍ରଚଣ୍ଡ କ୍ରୋଧରେ ପଇତା ଛିଣ୍ଡାଇ ପକାଇଥିଲେ, "ମୁଁ ଯଦି ଠିକ୍ ବ୍ରାହ୍ମଣ ସନ୍ତାନ ହୋଇଥାଏ········ ।" ଭୀଷଣ ଅଭିସମ୍ପାତ । ସେଇ ଅଭିସମ୍ପାତ କୁଆଡ଼େ ଫଳିଗଲା । ଶବ କାନ୍ଧେଇ ଶ୍ମଶାନକୁ ଯାଇଥିଲି । ସେଠାରେ ସବୁ ଶୁଣିଲି ମୁଁ । ପ୍ରକୃତରେ ଗୋବର୍ଦ୍ଧନଙ୍କ ଅଭିସଂପାତରୁ ଏ ବିପର୍ଯ୍ୟୟ ଘଟିଛି କି ନାହିଁ ସେ ସମ୍ପର୍କରେ ଭାବୁ ନ ଥିଲି ମୁଁ । ଭାବୁଥିଲି ପିତା ହୋଇ କନ୍ୟାର ଏପରି ଅକଲ୍ୟାଣ ଚିନ୍ତା କେହି କରିପାରେ ?

ସ୍ନେହ, ଶ୍ରଦ୍ଧା ଏବଂ ସହାନୁଭୂତି ଅପେକ୍ଷା ନିଜର କୌଳୀନ୍ୟବୋଧର ଅହଙ୍କାର କେଡ଼େ ଭୟଙ୍କର ସତେ ! ଚରମ ସ୍ୱାର୍ଥପର ହେବା ଦ୍ୱାରା ନିଜର ହୃଦୟର କୋମଳ ବୃତ୍ତିମାନଙ୍କୁ କ'ଣ ନିର୍ଦ୍ଦୟଭାବେ ଜଳାଞ୍ଜଳି ଦିଆ ହୋଇଥାଏ ?

ଏହି ସବୁ ଧ୍ୱନିମାନଙ୍କ ସହ ଅନ୍ୟ ଯେଉଁ ବିକଳ ଧ୍ୱନିଟି ମିଶି ରହିଥିଲା, ତା ଥିଲା ପପିର । ଆମ ପୋଷା କୁକୁରର । ସେ ତ କୁକୁର ନୁହେଁ, ଆମ ପରିବାର ଭିତରର ଜଣେ । ଦୀର୍ଘ ଚାରି ବର୍ଷ ଧରି ଏ ଘରର ଜଗୁଆଳି ! ଏ

ଘରେ ପଡି ସମସ୍ତଙ୍କ ପ୍ରାଣର । ବୋଉ ପର ଶୁଚିବାଇ ଲୋକର ବଛଣାରେ ଶୁଏ । ବୋଉ ଖାଇ ବସିଲେ, ତା ପାଖରେ ତାର ଖାଇବାର କଥା ! ବୋଉ ପଛ ଆଡେ ସମସ୍ତେ ଫୁସ୍ ଫାସ୍ ହୋଇ କଥାବାର୍ତ୍ତା ହୁଅନ୍ତି, ଏତେ ଛୁଆଁ ବେମାର ଯାହାର ପଡି ଷେତରେ ତାହା ଯାଏ କୁଆଡେ ? ସେ ବୋଉ କୋଳରେ ପଶେ । ବୋଉର ମୁହଁ ଗୁଡେ ! ବଉଁଙ୍କ ଘରେ ବୋଉ ପୂଜା କରୁଥିଲେ ଗେଞ୍ଜି ହୋଇ ବସିଥିବ ତା' ପାଖରେ ଫୁଲ, ପାଣି, ଭୋଗ କଛୁ ମାଗୁଛୁ ଏ ନାହିଁ । ଅଥଚ ଅନ୍ୟମାନଙ୍କ ବେଳକୁ ସବୁ ବାରଣ ।

ବାପାଙ୍କ ସଙ୍ଗେ ନିତ ସକାଳୁ ପଡିର ବୁଲିଟିବା କଥା । ସାନଭାଇ ରମୁ ସଙ୍ଗେ ଘନିଷ୍ଠ ସମ୍ପର୍କ ପଡିର । ରମୁ ବାହାରୁ ଫେରିବାବେଳେ କଛିନା କଛି ଖାଇବା ଜିନିଷ ଆଣିଥିବ ସାଙ୍ଗରେ । ନ ହେଲେ ସରିଲ କଥା । ପଡି ଭୀ ଗୋଡ଼ ଖିମି ପକାଇ ତାକୁ ଘରେ ପୂରାଇ ଦେବନି । ସେଇ ପଡି ଅସମୟରେ ରୋଗିଣା ହୋଇଗଲା । ଦେହସାକ ତାର ଘା । ଘୁସୁରି ଘୁସୁରି ଅନେକ ଦିନ ଏପଟ ସେପଟ ହେଲା । ତା' ପରେ କ୍ରମେ ରହିଗଲା ସେ ।

ସାନ ଭାଇ ରମୁ ଘରେ ତା'ର ଶେଷ ଶଯ୍ୟା ରଚନା କରା ହୋଇଥିଲା । ପଡିର ଯନ୍ତ୍ରଣା ଲକ୍ଷ୍ୟ କଲେ ଆଖିରେ ଲୁହ ରହିବନି । ବୋଉତ ନିତି ଲୁହ ଗଡ଼ାଏ ପଡିପାଇଁ । ବାପା ପଡିକୁ ଦେଖିବାକୁ ଆସନ୍ତି ଓ ଫେରିଟିବା ବେଳେ ଆଖିରୁ ଚଷମା କାଢି ଲୁଗା କାନରେ ଲୁହ ପୋଛନ୍ତି । ଆଉ ରମୁ, ସେ ମନକୁ ଟାଣ କରି ଦେଇଥିଲା । ପଡିର ଯନ୍ତ୍ରଣା ନିଜ ମଧ୍ୟରେ ଗଭୀର ଭାବେ ଅନୁଭବ କରି ଦାନ୍ତ ଚିପି ସହୁଥିଲା ସବୁ ।

ଦିନେ ତା'ର ମୋର ପଡିକୁ ଦେଖି ଘର ଭିତରୁ ବାହାରି ଆସୁଛୁ, ରମୁ ମୋତେ ନିସ୍ତେଜ କଣ୍ଠରେ କହିଲା, "ପଡିର ଏ ଅସହ୍ୟ କଷ୍ଟ ସହ୍ୟ କରିବା ମୋ ପକ୍ଷେ ଅସମ୍ଭବ । ଭାବୁଛୁ······ ।" କ'ଣ ସେ ଭାବୁଛୁ, ତାହା ଯେତେବେଳେ ସ୍ପଷ୍ଟ କଣ୍ଠରେ ବ୍ୟକ୍ତ କରି ଦେଲା, ମୁଁ ଚମକି ପଡ଼ିଲି । ମାତ୍ର ନିଜକୁ ସମ୍ଭରଣ କରି ନେଇ କହିଲି, "ପଡିର ପ୍ରାରବ୍ଧ ଭୋଗ ହେଉଛୁ, ଭୋଗିଯାଉ, ତାପରେ ତ ସେ ଆପେ ଆପେ ମୁକ୍ତି ପାଇଯିବ । ତୁ ତାକୁ ମୁକ୍ତି ଦେବାକୁ କିଏ ? ଜୀବନ ତ କାହାକୁ ଦେଇ ପାରିବୁ ନା, ତେବେ ତା'ର ମୃତ୍ୟୁ ସମ୍ପର୍କରେ ଚିନ୍ତା କରିବା କାହିଁକି ?

ଗାଧୋଇ ସାରି ବାଥ୍ ରୁମର ଦ୍ୱାର ଖୋଲି ବାହାରି ଆସୁଛି, ସାମ୍ନାରେ ଦେଖିନେଲି ରମୁ ଠିଆ ହୋଇଛି । ମୁହଁ ଉପରେ ତାର ଆସନ୍ନ ଚମକର ଛାୟା । ମୁଁ ଚମକି ପଡ଼ିଲି, "ବାପା ବୋଉ ପପି ପାଖରେ ଜଲଦି ଆସ ।" ବୁଝିବାକୁ କିଛି ଆଉ ବାକି ରହିଲା ନାହିଁ । ଦ୍ରୁତ ପଦକ୍ଷେପ ପରେ ମୁଁ ରମୁକୁ ଅନୁସରଣ କଲି । ପପି ମୁଣ୍ଡ ପାଖେ ବାପା ବସିଛନ୍ତି, ଆଉ ବୋଉ ବସିଛି ପପି ଦେହକୁ ଲାଗି । ଆଖି ପୋଛୁଛି । ମୋ ସାନ ଭଉଣୀ ମୀନା କାନ୍ଦ କାନ୍ଦ ମୁହଁରେ ଠିଆ ହୋଇ ରହିଛି ପପିକୁ ଅନାଇ । ଘୋର ନିର୍ବାକ । ହିକ୍‌କା ଉଠୁଛି ପପିର । ଅନ୍ତିମ ମୁହୂର୍ତ୍ତ ଆସନ୍ନ । ରମୁର "ଜଲଦି ଆସ"ର ଅର୍ଥ ଅବଶ୍ୟ ଅନୁମାନ କରି ପାରିଥିଲି । ପପିର ଅର୍ଦ୍ଧ ନିମିଳିତ ଦୁଇ ଆଖିରୁ ଦି ଧାର ଲୁହ ଗଡ଼ି ପଡ଼ୁଛି । ବାପା ଫେରି ପଡ଼ି ଆମ୍ଭମାନଙ୍କୁ ଚାହିଁ ଏକ ଦୀର୍ଘଶ୍ୱାସ ତ୍ୟାଗ କରି କହିଲେ, "ପପି ଆମ୍ଭମାନଙ୍କୁ ଛାଡ଼ି ଚାଲି ଯାଉଛି, ସମସ୍ତେ ପାଖକୁ ଆସ ।"

ବାପାଙ୍କ ନିର୍ଦ୍ଦେଶ ଅନୁଯାୟୀ ନିକଟକୁ ଯିବାରୁ ପୁନଶ୍ଚରେ କହିଲେ, ମୁଁ ଓ ବୋଉ ପପି ତୁଣ୍ଡରେ ମାହାର୍ଦ୍ଦ ଦେଇ ସାରିଲୁଣି । ତମମାନଙ୍କ ହାତକୁ ସେ ଅନାଇଛି ।" ଆମେ ସମସ୍ତେ ଜଣ ଜଣ କରି ନିର୍ମାଲ୍ୟ ଦେଲୁ ତା ତୁଣ୍ଡରେ । ଘୋର ନି । ତାପରେ ଆମେ ସମସ୍ତେ ପପିର ସେଇ ଅନ୍ତିମ ମୁହୂର୍ତ୍ତକୁ ସ୍ତବ୍ଧ ଦୃଷ୍ଟିରେ ଅପେକ୍ଷା କରିବାକୁ ଲାଗିଲୁ । ଜୀବନ ଦୀପ ତାର ଧିରେ ଧିରେ ଲିଭି ଆସୁଛି । ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟିକୁ ବାପା ଠିକ୍ ବୁଝି ପାରିଥିଲେ । ପପିର କାନପାଖେ ନଇଁ ପଡ଼ି ଅଶ୍ରୁ ଗଦ୍‌ଗଦ୍ କଣ୍ଠରେ କହି ଉଠିଲେ, "କୃଷ୍ଣଦେ, ରାଧା ମାଧବ ।"

ତାପରେ ପଲକ ମଧ୍ୟରେ ସବୁ ଶେଷ । ପୂର୍ଣ୍ଣଚ୍ଛେଦ । ହିକ୍‌କାର ପରି ସମାପ୍ତି ଘଟିଛି । ଅର୍ଦ୍ଧ ନିମିଳିତ ନୟନ ସ୍ଥିର ହୋଇ ଯାଇଛି । ଆଖିରେ ଲୁହ ଜାକି ବୋଉ କଇଁ କଇଁ ହୋଇ କାନ୍ଦୁଛି । ମୀନା ବି ଯୋଗ ଦେଇଛି ବୋଉ ସଙ୍ଗେ । ମୋ ଆଖିରେ ଲୁହ ନାହିଁ । ଆଉ ରମୁ, ସେ ଯେପରି ପାଷାଣ ମୂର୍ତ୍ତି ପାଲଟି ଯାଇଛି, ବାପା ନିଜ ହାତରେ ଧଳା ଚାଦର ଖଣ୍ଡେ ଘୋଡାଇ ଦେଲେ ପପି ଉପରେ ।

ଧଳା ଖଦର ତଳେ ମଢ଼ି ନିଃଶବ୍ଦ ନିଦରେ ଶୋଇଛୁ, ଆଉ ଉଠିବନି ।

ଆଜି ଦିନକ ଛୁଟି ନେବା ଲାଗି ମୁଁ ଅଫିସକୁ ଛୁଟି ଦରଖାସ୍ତ ପଠାଇ ଦେଇଥିଲି । ଉକ୍ତ ଦରଖାସ୍ତରେ ପତିର ମୃତ୍ୟୁ ଯେ ମୋର ହଠାତ୍ ଛୁଟି ନେବାର ହେତୁ, ତାହା କିନ୍ତୁ ଉଲ୍ଲେଖ ନଥିଲି ।

---



# ଖଣ୍ଡିଏ ହାଫ୍ ପ୍ୟାଣ୍ଟ

ରମେଶ ଚନ୍ଦ୍ର ଧଳ

ରାଜଧାନୀର ଆକାଶ ବର୍ଷା ବାଦଲରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇନାହିଁ । ଝରକା ଦେଇ ସେ ଚାହିଁଲେ ରାସ୍ତାକୁ । ଏବେ ମଧ୍ୟ ରାଜଧାନୀର ଜୀବନ ଚଞ୍ଚଳ, ଦଉଡ଼ାଦୌଡ଼ା ଆଜି ଖଣ୍ଡିଏ ବଡ଼ରେ ସେ ନିଆଁ ଧରାଇଲେ । ମନେ ହସିଲେ, କହିଲେ ଧନ୍ୟରେ ରାଜଧାନୀ । ବଡ଼ ବିଚିତ୍ର ଏ ସ୍ଥାନ । ତାଙ୍କର ମନେ ହେଲା ସତେ ଯେପରି ଏଠାରେ ନିଃସଙ୍ଗତାର ସୀମା ସରହଦ ସେ ଅତିକ୍ରମ ଆଉ କରି ପାରିବେ ନାହିଁ । ସମସ୍ୟାର ସମାଧାନ କେବଳ ତାଙ୍କୁଇ କରିବାକୁ ହେବ । କାହାର ସହାନୁଭୂତି, ପରାମର୍ଶ ଅପେକ୍ଷାରେ ରହିବା ପାଗଳାମି ବ୍ୟତୀତ ଅନ୍ୟ କିଛି ନୁହେଁ ।

ନିରାକାର ମନକୁ ମନ ସାନ୍ତ୍ୱନା ଦେଇ କହିଲେ ସେ ତ ସେଦିନ ମହାତ୍ମା ହୋଇ ନ ଥିଲେ । ଆଣ୍ଠୁ ନ ଲୁଚୁ ଲୁଗା ଖଣ୍ଡିଏ ପିନ୍ଧି ସେଦିନ ପଦାକୁ ଯାଇଥିବେ ତାହା ଦେଖି ଅନ୍ୟମାନେ ନିଶ୍ଚୟ ନାକ ଟେକିଥିବେ, କହିଥିବେ ଭଲ ମାନୁଷଟି ଦେଖ । ଅସଭ୍ୟଟା । ମାତ୍ର ପରେ ଏହି ପରିଚ୍ଛଦହିଁ ତାଙ୍କୁ ଅନ୍ୟମାନଙ୍କ ଠାରୁ ଚିହ୍ନିବାରେ, ଚିହ୍ନାଇବାରେ ସହାୟକ ହୋଇଥିଲା । ସେ ନିଜେ ତାଙ୍କପରି ମହାତ୍ମା ନ ହୋଇ ପାରନ୍ତୁ ତେବେ ଜଣେ ସାଧାରଣ ମଣିଷ ଭାବେ ଏତିକ କରି ପାରିବେ ନାହିଁ କାହିଁକି ?

ଆଜି ଥରେ ସେ ହାଫ୍ ପ୍ୟାଣ୍ଟଟିକୁ ହାତରେ ଧରି ମନକୁ ମନ କହିଲେ, ଅଫିସ ପିନ୍ଧି ଯିବା ପରି ଧୋତି ଦାମ୍ ତୁଳନାରେ ଏହା ନିଶ୍ଚିତ ଭାବେ ଶସ୍ତା । ଧୋଇବା ଓ ଇସ୍ତ୍ରୀକରି ଖର୍ଚ୍ଚ ମଧ୍ୟ କମ୍ । ଦାମ୍ ଯାହାହେଉ ନା କାହିଁକି ତାଙ୍କ ପାଇଁ ଅନ୍ୟ ଉପାୟ ନାହିଁ । ଧୋତି ଖଣ୍ଡିଏ କ୍ରୟ କରିବାର ଶକ୍ତି ମଧ୍ୟ ନାହିଁ । ତେଣୁ ତାଙ୍କୁ ଖଣ୍ଡିଏ ହାଫ୍ପ୍ୟାଣ୍ଟ ପରିଧାନ କରି ଅଫିସ ଯିବାକୁ ହେବ । ହାଫ୍ସାର୍ଟକୁ ଭିତରେ ଭର୍ତ୍ତି କରି ପିନ୍ଧିବାକୁ ପଡ଼ିବ । ପ୍ୟାଣ୍ଟ ଉପରେ ବେଲ୍ଟ ବାନ୍ଧିବାକୁ ହୋଇପାରେ । ତାପରେ ମୋଜା ପିନ୍ଧିବା ଯୋତା ପିନ୍ଧିବା ପ୍ରଶ୍ନ ଉଠୁ ନାହିଁ । ସେଥି ହାଓ୍ୱାଇ ସ୍ଲିପର । କେତେବେଳେ କେଉଁଠାରେ ଫିତା ଛୁଡ଼ିବ ତା'ର ଠିକଣା ନାହିଁ । ସ୍ଲେଟ ମେସ୍‌ଟିରେ ଯେତେ ଜଣ ଥାଆନ୍ତି ଏହି ସ୍ଲିପର ଉପରେ ସମସ୍ତଙ୍କର ଅଧିକାର । ଯିଏ ଯେତେବେଳେ ମେସ୍ ପାଖ ପାନ ଦୋକାନକୁ ଯାଏ ପାଦରେ ଗଳାଇ ଦେଇ ଯାଏ । ନିରାକାର ଏଥିପାଇଁ କେବେ ବିରକ୍ତ ହୁଅନ୍ତି ନାହିଁ । ବରଂ କୁହନ୍ତି ତାଙ୍କ ମେସ ଜୀବନରେ ଏହା ଏକ ସ୍ଥାୟୀ ଫିଚର୍ । ଅନ୍ୟମାନଙ୍କୁ ଦେବା ପରି ତ ତାଙ୍କର ଆଉ କିଛି ନାହିଁ । ତେବେ ସେ ପାଟି ଖୋଲି ଅନ୍ତତଃ ପଚାରି ପାରିବେ ହେ' ହେ' ମୋ ସ୍ଲିପର ହଳକ କିଏ ନେଇଛ ? ମୋ ପାନଆଁ ମୋ ସ୍ଲିପର ଯିଏ ନେଇଛ ନିଅ ତେବେ କାମ ସାରି ଆଣି ଠିକ୍ ସ୍ଥାନରେ ରଖିଦିଅ । ତାଙ୍କ କହିବା ଭଙ୍ଗୀରେ ଅଭିଯୋଗ ନ ଥାଏ ବରଂ ନିରାକାର ଏହା ଯେପରି କହନ୍ତି ସମସ୍ତେ ଉପଭୋଗ କରନ୍ତି । ନିରାକାର ଅଭାବ ସତ କିନ୍ତୁ ଅଭାବ ତାଙ୍କୁ ଅମଣିଷ କରି ନାହିଁ । ଅନ୍ୟ ପାଇଁ ତାଙ୍କ ପ୍ରାଣରେ ଅସୁମାରି ଦରଦ । ହସଖୁସିର ମଣିଷ ସେ ।

ସେ ଖାଇ ପି, ସାରି ହାଫ୍ ପ୍ୟାଣ୍ଟ ପିନ୍ଧି ପ୍ରସ୍ତୁତ ହେଲେ ଅଫିସ ଯିବାକୁ । ରଙ୍ଗ ଗୁଡ଼ି ଯାଇଥିବା ଓ ବରବର ଚେନ୍ ଖସୁଥିବା ସାଇକେଲଟି ଧରି । ଅଫିସ ସଇକେଲ ଷ୍ଟାଣ୍ଡରେ ସାଇକେଲଟି ଥୋଇ ଦେଇ ଅଫିସ ଉପରକୁ ଯିବା ପାଇଁ ସେ ଲିଫ୍ଟ ନିକଟରେ ଠିଆ ହୋଇ ରହିଲେ ।

ଉପରୁ ଲିଫ୍ଟ ଖସିଲା । ଲିଫ୍ଟବୟ୍ ପରିଚିତ । ସେ ନିରାକାରଙ୍କୁ ବସ୍ତୁପୂର୍ବ ବୃହାଣିରେ ବୃହିଁବାର ଦେଖି ସେ କିଛି କହିବା ପୂର୍ବରୁ ନିରାକାର

ପ୍ରଶ୍ନ କଲେ ମେନେଜରଙ୍କ ଆସିଲେଣି ? ଉତ୍ତର ମିଳିଲା 'ସାଢ଼େ ନଅଟାରୁ ଆସିଲେଣି ।' ନବୀନବାବୁ ମନକୁ ମନ କହିଲେ ହଁ ଆସିଥିବେ, ଆଜି କନ୍‌ଫରେନ୍‌ସ ଥିଲା । ଅନ୍ୟ କେତେ ଜଣ ଯେଉଁମାନେ ଲିଫ୍‌ଟରେ ଥିଲେ ସେମାନେ ନବୀନବାବୁଙ୍କୁ ତାଙ୍କଠୁ ତଳିପା ପର୍ଯ୍ୟନ୍ତ କଟମଟ କରି ଗୌରବରେ କେବଳ ନିରୀକ୍ଷଣ କରି ନେଉ ଥାଆନ୍ତି । ସତେ ଯେପରି କୌଣସି ଗୋଟିଏ ନୂତନ ଜୀବ ଆଜି ଲିଫ୍‌ଟରେ ଉଠି ଅଫିସ ଆଟେଣ୍ଡ କରିବାକୁ ଆସୁଛି । ନବୀନବାବୁ ମନେ ମନେ କହୁ ଥାଆନ୍ତି—ଆବେ ବୁଝୁଛ କ'ଣ ? ତୁମେ କ'ଣ ବୁଝିପାରିବ ଏ ହେଉଛି ଅଭିନବ ମଣିଷର ପୋଷାକ ! ଦରମା ଯାହାର ମୋଟେ ତିନିଶହ ସେ ସେଥିଂ ଦେବ ଏକଶହ ଟଙ୍କା, ଘର ଭଡ଼ା ଟଙ୍କା, ବାକି ଧାରି ସୁଝିବ ମାସକୁ ପଚାଶ । ତା ବ୍ୟତୀତ ଗାଁର ପରିବାରର ସାମାନ୍ୟ ଗୁଜୁରାଣ ମେଣ୍ଟାଇବାକୁ ହେବ । ଏଥିରୁ ଆଉ କେତେ ବଳିବ ଯେ ସୁଟ୍‌ବୁଟ୍‌ ହୋଇ ସେ ଅଫିସ ଆସିବ । ଠିକ୍ ଅଛି ତୁମେ କେତେ ବୁଝିବ କ'ଣ କହିବ ବୁଦ୍ଧ । ମୁଁ ସବୁଥିପାଇଁ ପ୍ରସ୍ତୁତ ହୋଇ ଆସିଛି ।

ଲିଫ୍‌ଟ ଥାର୍ଡ଼ ଫ୍ଲୋରରେ ଅଟକିଲା । ନବୀନବାବୁ ବାରଣ୍ଡାରେ ଆଗେଇଲେ । ଦୁଇଟି ଡ଼ିପାର୍ଟମେଣ୍ଟ ଅତିକ୍ରମ କରିଗଲେ ଯାଇ ତାଙ୍କ ଅଫିସ ।

ନବୀନବାବୁ ଚାଲିଥାନ୍ତି । ତାଙ୍କୁ କିଏ କିପରି ଚାହୁଁଛି ସେ ଗୌରବରେ ଲକ୍ଷ୍ୟ କରୁଥାଆନ୍ତି । ଅନ୍ୟ ଯେଉଁମାନେ ଦ୍ରୁତ ପଦରେ ଚାଲିଥାଆନ୍ତି ସେମାନେ କିପରି ବେଶଭୂଷା ହୋଇ ଥାଆନ୍ତି ତାହା ମଧ୍ୟ ସେ ନିରୀକ୍ଷଣ କରୁଥାଆନ୍ତି । ସେ ଅପେକ୍ଷା କରି ଥାଆନ୍ତି ତାଙ୍କୁ ହାପ୍‌ପ୍ୟାଣ୍ଟ ପିନ୍ଧିଥିବାର ଦେଖି କିଏ କ'ଣ କହୁଛି । ପ୍ରଥମେ ଅଫିସ ପିଅନ ଶ୍ୟାମଳ ବାବୁଙ୍କୁ ଦେଖି ସାମାନ୍ୟ ହସି କହିଲା—ବାବୁ ଆଜି ଏ କ'ଣ ? ବଡ଼ବାବୁ ଆପଣଙ୍କୁ କାହିଁକି ଖୋଜୁଥିଲେ । ସଙ୍ଗେ ସଙ୍ଗେ ତାଙ୍କୁ ଯାଇ ଅଣ୍ଡର ସେକ୍ରେଟାରୀଙ୍କ ରୁମ୍‌ରେ ଭେଟିବେ । ସେଠାରେ ସେ କ'ଣ ଆଲୋଚନା କରୁଛନ୍ତି । କହିଯାଇଛନ୍ତି ।

ତାପରେ ଅଫିସ ଭିତରେ ଦୁଇଟି ରୋ'ରେ ଧାଡ଼ି ହୋଇ ବସିଥିବା ବନ୍ଧୁମାନେ ହଠାତ୍‌ ପାଟି କରି ଉଠିଲେ—'ଆରେ'ରେ ନବୁ ବାବୁ ଯେ, ଆଜି ଏ କି ରୂପ ଦେଖାଇଲ ହେ ।' ସୁନ୍ଦର କହିଲା କ'ଣ ଘଟଣା ଆଜି

ସିଧା ଏଠାରୁ କ୍ଲବକୁ ଯିବ ନା କ'ଣ ? ମନ୍ଦ ନୁହେଁ ତେବେ ! ସୁରବାବୁ ପିଅନକୁ ଡ଼ାକ କହିଲେ ଯାଜୁ ଯା' ନରୁବାବୁଙ୍କ ନାମ କହି ପାଞ୍ଚ କପ୍ ଚା ନେଇ ଆସିବୁ । ସେ ଫ୍ୟାଣ୍ଟପିନ୍ଧି ଆସିଛନ୍ତି—ନବ ରୂପ ନବକାନ୍ତି, ଏଠାରେ ଆଜ ସେଲିବ୍ରେଟ୍ କରାହେବ । କ'ଣ କହୁଛନ୍ତି ? ନବକାର ବାବୁ ସାମାନ୍ୟ ହସି କହିଲେ ହଁ ଆସୁ କିଏ ମନା କରୁଛି । ମନେ ମନେ ସାମାନ୍ୟ ବିରକ୍ତ ହେଲେ । ଅଭିବରୁ ଯିଏ ଧୋତି ଛାଡ଼ି ହାଫ୍ ପ୍ୟାଣ୍ଟକୁ ଆସିଲାଣି ତାଠୁ ଚା' ଖାଇ ସେଲିବ୍ରେଟ୍ ନ କଲେ ଆଉ ହେଉଛି । ଗୁଡ଼ାଏ ମାଗଣାଖିଆ ମଣିଗ୍ରେଷ ଯୁଟିଛନ୍ତି । ହାଫ୍ ପ୍ୟାଣ୍ଟ ଉପରେ କିଛି ସମୟ ଟିପ୍‌ପଣୀ ଚାଲିଲା । କିଏ କହିଲା ଏହି ଡ୍ରେସ ସମସ୍ତେ ପିନ୍ଧି ଅଫିସ ଆସିବା ଉଚିତ । ଟପର୍ ଦାନ୍ ଅଦର ଡ୍ରେସେସ୍ । ହରିବାବୁ କହିଲେ ଚଢ଼ି ଏବଂ ହାତକଟା ଗଞ୍ଜି ଏହାଠାରୁ ଆହୁରି ଶସ୍ତା ପଡ଼ିବ । ତେବେ ସମସ୍ତେ କ'ଣ ସେଇଥି ପରିଧାନ କରି ଆସିବେ । ଏକଥା ଶୁଣି ନବକାରଙ୍କ ଦେହରେ ନିଆଁ ଲାଗିଲା ପରି ମନେ ହେଲା । ମନକୁ ମନ ସେ କହିଲେ ସ୍ତ୍ରୀ ପିଲାଙ୍କୁ ପୋଷି ନପାରି ବର୍ଷରେ ଆଠମାସ ଯେ ନେଇ ଶଶୁର ଘରେ ଛାଡ଼େ ସେ ପୁଣି ବଡ଼ ବଡ଼ କଥା କହେ ବେଶ ପୋଷାକ ପରିଚ୍ଛଦ ନେଇ । ହରିବାବୁ ପୁଣି କହିଲେ, କ'ଣ ପଚାରୁଛି କେହି କିଛି କହୁନାହାଁ ଯେ ? ରୁଷିଆରେ କ'ଣ ପିନ୍ଧିଲେ, ଚାଇନାରେ କ'ଣ ପିନ୍ଧି ସମସ୍ତେ ଅଫିସ ଆସନ୍ତି ସେଥିରୁ କ'ଣ ମିଳିବ ? ମୁଁ କ'ଣ ପଚାରୁଛି କିଛି କହୁନାହଁ ଯେ । କୃଷ୍ଣବାବୁ ପାଟିରେ ପାନଖିଲେ ପୂରାଇ ବଡ଼ବାବୁଙ୍କ ଆଡ଼କୁ ଚାହିଁ କହିଲେ ହଁ ଚାଲିବ । କିଛି ଅସୁବିଧା ହେବ ନାହିଁ । କିଛି ଅସୁବିଧା ହେବ 'ନାହିଁତ ? ଭବଚନ୍ଦ୍ର କୁହନ୍ତୁ । ଚଢ଼ି ଆଉ ଗଞ୍ଜି ପିନ୍ଧି ମୁହାଁମୁହିଁ ହୋଇ ବଡ଼ବାବୁ ଓ କୁମ୍‌କୁମ୍ ବସି ଏ ଅଫିସରେ କାମ କରି ପାରିବେତ ? ନବକାର କୁମ୍‌କୁମ୍ କଥା ପୂରା ଭୁଲି ଯାଇଥିଲା । ତାଙ୍କ ଅଫିସରେ ସେ ଏକମାତ୍ର ଲେଡ଼ି ଅସିଷ୍ଟାଣ୍ଟ୍ । ବେଶ୍ ସୁନ୍ଦରୀ ପାତଳ ଝିଅଟିଏ । ଅବିବାହିତା । ସବୁଦିନ ବେଶ୍ ନିଜକୁ ସଜାଇ ସେ ନବବଧୂଟି ପରି ଅଫିସ ଆସେ । ସାରା ଅଫିସ ସହକାରୀ ବନ୍ଧୁମାନେ ତାକୁ ସାହାଯ୍ୟ କରିବା ନିମନ୍ତେ କେବେ ବିମୁଖ ହୁଅନ୍ତି ନାହିଁ । ହଠାତ୍ ନବକାର କୁମ୍‌କୁମ୍ ସମ୍ପର୍କରେ ସଚେତନ ହୋଇ ଉଠିଲେ । ସେ ଆଉଥରେ ଦୃଷ୍ଟି ଫେରାଇଲେ କୁମ୍‌କୁମ୍ ଏପର୍ଯ୍ୟନ୍ତ ଆସି ନାହିଁ । ଟିକିଏ ବିବ୍ରତ ହୋଇ ଉଠିଲେ, ସତରେ

କୁମ୍ କୁମ୍ ଦେଖି ତାଙ୍କୁ କ'ଣ କହିବ ହୁଏତ କିଛି କହିପାରେ କିଛି ନକହିବ ପାରେ । ସତରେ କୁମ୍‌କୁମ୍ ମିନାକରୀ ନବବଧୂଟିପରି ବେଶ ହୋଇ ଅଫିସ ଆସେ । ସଜାଇ ହୋଇ ଆସିବାକୁ ସେ ସମୟ ପାଏ କିପରି ? ତା ସ୍ତ୍ରୀ ଭାଗ୍ୟରେ କ'ଣ ଏମିତି ସଜାଇ ହୋଇ ଦିନେ ପଦାକୁ ବାହାରିବାର ସୌଭାଗ୍ୟ କେବେ ଆସିବ ନାହିଁ । କୁମ୍‌କୁମ୍ ଭାଗ୍ୟବତୀ । ବଡ଼ ଲୋକର ଝିଅ । ବିଏ ପାଶ୍ ପରେ ସମୟ କଟାଇବାକୁ ଅଫିସରେ ଯୋଗ ଦେଇଛନ୍ତି । ହଠାତ୍ କରି କେଉଁଦିନ ଅଫିସ ଛାଡ଼ି ଚାଲିଯିବ । ତାଙ୍କ ପାଇଁତ ଜୀବନର ଆହ୍ୱାନ ନାହିଁ । ସଂଗ୍ରାମ ନାହିଁ । ଆକାଶର ଉଡ଼ନ୍ତା ପକ୍ଷୀ ସେମାନେ । ଉଦ୍‌ମାନଙ୍କ ତାରା, ତା ସାଙ୍ଗରେ ନିଜ ସ୍ତ୍ରୀ କଳାବତୀର ତୁଳନା କରି ଲାଭ ବା କ'ଣ ? ସେ କଲମ ଧରି କାମରେ ମନ ଦେଲେ ତେବେ ଦୃଷ୍ଟି ତାଙ୍କର ଅସ୍ଥିର । କାନ ତାଙ୍କର ଚଞ୍ଚଳ । ତାଙ୍କୁ କିଏ ଚାହୁଁଛି କି ? କିଏ ତାଙ୍କ ପୋଷାକ ଉପରେ ଟିପ୍ପଣୀ କରୁଛି କି ?

ହଠାତ୍ ଅଫିସ ଭିତରକୁ ପଶି ଆସିଲେ ଅଣ୍ଡର ସେକ୍ରେଟେରୀ । ଅଫିସ୍‌ରେ ଯିଏ ଯେପରି ପଦେ ଅଧେ ଗପସପ କରୁଥିଲେ ବନ୍ଦ ହୋଇଗଲା । ସତେ ଯେପରି ଝିଣା ଧୂଆଁ ଖାଇ ମଶାମାନେ ଉଡ଼ି ପଳାଇ ଗଲେ । ଚାଲି ଚାଲି ହୋଇ ଅଣ୍ଡର ସେକ୍ରେଟାରୀ ନରକାରଙ୍କ ସିଟ୍ ପର୍ଯ୍ୟନ୍ତ ଆସିଲେ । ଅନ୍ୟମାନେ କଲମ ଛାଡ଼ି ସହାସ୍ୟ ବଦନରେ ତାଙ୍କ ଆଡ଼କୁ ଚାହିଁ ରହିଲେ । ଏପରି ଏକ କୌତୂହଳ ପରିବେଶ ଦେଖି ଅଣ୍ଡରସେକ୍ରେଟାରୀ ପ୍ରଶ୍ନ କଲେ କ'ଣ ହୋଇଛି ତୁମେ ସମସ୍ତେ ଆଜି ହସୁଛ କାହିଁକି ? କ'ଣ ହୋଇଛି । ସାମାନ୍ୟ ନୀରବତା ପରେ ଧନବାବୁ କହିଲେ—ସାର୍ ନରକାରବାବୁ ଆଜି ହାଫ୍ ପ୍ୟାଣ୍ଟ ପିନ୍ଧି ଆସିଛନ୍ତି । ଏହାକୁ ଅଫିସିଆଲ୍ ଡ୍ରେସ କରି ପାରିଲେ ଭଲ ହୁଅନ୍ତା ଆମେ ସମସ୍ତେ ବୁଝୁ । ଏକଥା ଶୁଣି ଅଣ୍ଡରସେକ୍ରେଟାରୀ କହିଲେ, ସତେନା' ନରକାରବାବୁ ହାଫ୍ ପ୍ୟାଣ୍ଟ ପିନ୍ଧି ଆସିଛନ୍ତି । ଭଲ କଥା । ଏହି ଧୋତି ପଞ୍ଜାବୀ, ଜାମାଯୋଡ଼ ହୋଇ ଆସୁ ଆସୁ ଅନେକ ସମୟ ଯାଉଛି । ଏ ସବୁର ପରିବର୍ତ୍ତନ ହେଲେ ଭଲ ହୁଅନ୍ତା ।

ବିଳମ୍ବର କାରଣ କ'ଣ କେଜାଣି ? ଶେଷରେ କୁମ୍‌କୁମ୍ ଆସି ଅଫିସରେ ପହଞ୍ଚି ନିଜ କାମରେ ମନ ଦେଲା । ଅଣ୍ଡରସେକ୍ରେଟାରୀ ଗଲେ ।

ମତାମତ ମନ୍ଦ ନୁହେଁ । ନବକାର କହିଲେ ବାକି କୁମ୍‌କୁମ୍‌ କ'ଣ କହିବ ଶୁଣିବା ପାଇଁ ଏମାନେ ଚାହିଁ ରହିଛନ୍ତି ।

ପାନ ପାଇଁ ଯିବା ଲାଗି ନବକାରବାବୁ ଠିଆ ହେଲେ । ପାର୍ଶ୍ୱସ୍ଥ ସିଟ୍‌ରୁ ମୁହଁ ଉଠାଇ କୁମ୍‌କୁମ୍‌ ଚାହିଁଲେ ନବକାରଙ୍କୁ । ସାମାନ୍ୟ ହସି ଗମ୍ଭୀର ହୋଇଗଲେ । ନବକାର ସେଦିନ ପ୍ରସ୍ତୁତ ଥିଲେ ଯଦି କୁମ୍‌କୁମ୍‌ ମୁହଁ ଖୋଲି କିଛି କହେ ଜବାବ ଦେବା ଲାଗି । କହିଲେ କୁମ୍‌କୁମ୍‌ ଦେବୀ ! ଆପଣମାନେ ସବୁ ଉପମାନକା ତାରି ମାଟିର ବ୍ୟଥା ବେଦନା ବୁଝି ପାରିବେ ନାହିଁ । ଆପଣଙ୍କ ପରି ଶାଢ଼ୀ ବ୍ଲାଉଜ୍ ନେକ୍‌ଲେସ୍ କିଣି ଦେବା ନିମନ୍ତେ ବାପ ଭାଇ ମୋର ନାହାନ୍ତି । ମୋ ଜଞ୍ଜାଳ, ଦୁଃଖ, ଦୁର୍ଦ୍ଦଶା ଆପଣ ଅନୁମାନ କରି ପାରିବେ ନାହିଁ । ଆପଣ ଯେପରି ପରୀଟିଏ ପରି ସଜାଇ ହୋଇ ଆସୁଛନ୍ତି ସେହିପରି ଅନେକଙ୍କୁ ଆସିବାକୁ ଇଚ୍ଛା ହୁଏ । ମୋ ପରି ଅନେକ ଯୁବକ ରାଜକୁମାର ପରି ଆପଣାକୁ ସଜାଇ ଘୋଡ଼ାରେ ବସି ଆସିବାକୁ ଚାହାଁନ୍ତି ଆପଣଙ୍କ ପରି ଫୁଲରାଣୀମାନଙ୍କୁ ସଙ୍ଗରେ ନେଇ କାନନ ବିହାରରେ ଯିବାକୁ ଚାହାଁନ୍ତି । ମାତ୍ର.... ନବକାର କୁମ୍‌କୁମ୍‌ଙ୍କ ଉଦ୍ଦେଶ୍ୟରେ ଥରଟିଏ କଟାକ୍ଷପାତ କରି ଦୃଷ୍ଟି ଫେରାଇ ନେଲେ । ସେ କାହିଁକି କ'ଣ ବା କୁହନ୍ତା । ଆପଣା ଭୁଲ ତାଙ୍କୁ ବିବ୍ରତ କରାଇଥିଲା ।

ବାକି ଯେଉଁମାନେ ଅଫିସ ଆସି ନଥିଲେ ତା ପରଦିନ ନବକାରଙ୍କୁ ଦେଖି କିଏ କିପରି ପଦେ ଅଧେ କହିଲେ । ହାସ୍ୟ ରସିକ ବନ୍ଧୁ ଶ୍ୟାମକାନ୍ତ କହିଲେ ଅନେକ ଦିନଧରି ହାପ୍‌ପ୍ୟାଣ୍ଟ ପିନ୍ଧି ଅଫିସ ଆସିବି ବୋଲି ଭାବୁଥିଲି । ମାତ୍ର ସାହାସ କରୁନଥିଲି । ଏବେ ନରୁଭାଇଙ୍କୁ ଗୁରୁମାନିଲି । ମୁଁ ବି କାଲିଠାରୁ ଆସିବି । ନରୁଭାଇ ଥ୍ରି ଚିୟର୍‌ସ୍ ।

ନବକାର ଗୋଟାଏ ଗଡ଼ ଜିଣିଲାପରି ମନେ କଲେ । ଅନେକ ଭାବିଲେ ନୂଆ କିଛି କରିବା ଗୋଟାଏ ଫେସନ୍ । ଷ୍ଟାଇଲରେ ଆଜି ପରିଣତ ହୋଇଗଲାଣି । ନବକାର ଷ୍ଟାଇଲ୍ କରୁଛନ୍ତି । ନକରିବେ କାହିଁକି ? ବୟସ ଅଛି । କରନ୍ତୁ ଯାହା ତାଙ୍କୁ ପସନ୍ଦ ହେଉଛି । ଲୁଗାଛାଡ଼ି ହାପ୍‌ପ୍ୟାଣ୍ଟ୍, ହାପ୍‌ପ୍ୟାଣ୍ଟ ଛାଡ଼ି ଆଉ କିଛି ପରିଧାନ କରିପାରନ୍ତି । ମାତ୍ର

କିଏ କିପରି ବୁଝିବ ନିର୍ବିକାରଙ୍କର ଆର୍ଥିକ ଅନାଟନ ମାନସିକ ବ୍ୟଥା । ଅର୍ଥାଭାବରୁ ଫ୍ୟାଣ୍ଟ ସିଲେଇ ମଜୁରି ମଧ୍ୟ ପରିଶୋଧ କରାଯାଇ ପାରିନାହିଁ ।

ତାପରେ ନିର୍ବିକାର ଆଜି କିଛି ଅସ୍ୱାଭାବିକ ଅନୁଭବ କରୁନାହାନ୍ତି । ସବୁ ସ୍ୱାଭାବିକ, ସାଧାରଣ, ଅବଲୀଳା କ୍ରମେ ଗତି କରିଛି । ସେ ହାଫ୍‌ପ୍ୟାଣ୍ଟ ପିନ୍ଧି ଅଫିସ ଯାଇଛନ୍ତି । ଆସିଛନ୍ତି । ସାଧାରଣ ସଭା ସମିତିକୁ ମଧ୍ୟ ଯାଇଛନ୍ତି । ସେହି ହାଫପ୍ୟାଣ୍ଟ ନିର୍ବିକାରଙ୍କ ସଙ୍କେତ ହୋଇ ଯାଇଛି ।

ଅନେକ ଦିନପରେ ଥରେ ସାଗରବାବୁ ନିର୍ବିକାରବାବୁଙ୍କୁ ଅଟକାଇ ପଚାରିଦେଲ କିଛି ଭାବିବେ ନାହିଁ ଯଦି ଗୋଟିଏ କଥା ପଚାରିବି । ପଚାରୁ ନାହାନ୍ତି। ବିଚାର ବିଭାଗ ମାଜିଷ୍ଟ୍ରେଟ୍ ଆପଣ । ଖୁସିରେ ନକହିଲେ କୋର୍ଟକୁ ଟାଣି ଶପଥ ଦେଇ ପଚାରିବେ । ମୁଁ କହିବାକୁ ବାଧ୍ୟ ହେବି । ଏବେ ଖୁସିରେ ନକହିବି କାହିଁକି ? ପରିହାସ କରି କହିଲେ ନିର୍ବିକାରବାବୁ ।

ସାଗରବାବୁ କହିଲେ ମୁଁ ଦେଖେ ଆପଣ ବେଶ୍ ଦାମି ପୋଷାକ ପିନ୍ଧି ଫିଟ୍‌ଫାଟ୍ ହୋଇ ସେଣ୍ଟବୋଳ ହୋଇ ବୁଲନ୍ତି । ମାତ୍ର ମଝିରେ ମଝିରେ ଏହିପରି ଶସ୍ତାକନାର ହାଫ୍ ପ୍ୟାଣ୍ଟ ହାଫ୍ ହାଓ୍ୱାଇନ ଇନ୍‌ସାର୍ଟ କରି ସ୍ଲିପର ପିନ୍ଧି ପୁରୁଣା ସାଇକେଲରେ ଚଢି ବୁଲନ୍ତି । କଥା କ'ଣ ? କୌଣସି ଗୋପନୀୟ ରହସ୍ୟ ଯଦି ଥାଏ କହିବାରେ ଆପତ୍ତି ଯଦି ନଥାଏ ତେବେ କହନ୍ତୁ ।

ସାମାନ୍ୟ ଚୁପ୍ ହୋଇଯାଇ ନିର୍ବିକାର କହିଥିଲେ, ଆଜିତ ମୁଁ ଅନେକ ଧନୀ ହୋଇ ଯାଇଛି । ମାତ୍ର ଦିନଥିଲା ଯେତେବେଳେ ମୁଁ ମାତ୍ର ତିରିଶ ଟଙ୍କାର କିରାଣୀ, ଭଲ ପୋଷାକ ଖଣ୍ଡିଏ କିଣି ପିନ୍ଧି ଅଫିସ ଯିବାର ତାକତ ନଥିଲା । ଶସ୍ତାକନାର ହାଫ୍‌ପ୍ୟାଣ୍ଟ ଖଣ୍ଡିଏ କରାଇଥିଲି । ସିଲାଇ ମଜୁରି ଦେଇ ପାରି ନଥିଲି । ଆଜି ଭଲ ଦିନରେ ମଧ୍ୟ ମୁଁ ସେସବୁ ଭୁଲି ଯାଇନାହିଁ ସେହି କଥାକୁ ଭୁଲି ନଯିବା ପାଇଁ ମୁଁ ମଝିରେ ମଝିରେ ହାଫ୍ ପ୍ୟାଣ୍ଟ ପିନ୍ଧି ପଦାକୁ ବାହାରେ । ମନେ ମନେ ଭାବେ, ମୋପରି ଅନେକ ଲୋକ

ଅସୁବିଧା ହେଉ ଅନିଚ୍ଛା ସତ୍ତ୍ୱେ ଏହିପରି କିଛି ନା କିଛି ନକଲିବା କାମ କରିଥିବେ । ସେମାନଙ୍କ ଭୁଲ୍ ବୁଝିବା ଅନୁଚିତ । ଟୁମ୍‌କରେ ହାପ୍ ପ୍ୟାଣ୍ଟ ଇତିବୃତ୍ତ ଶୁଣାଇ ସାମାନ୍ୟ ହସିଲେ ନିରାକାରବାବୁ । ସାଗରବାବୁ ଭୁଲି ଯାଇଥିଲେ ସେ କଥା ।

ପାର୍ଟ ହାର୍ଡ଼ନିକସ୍ ଶୁଣାଣି ଚାଲିଥାଏ । ପ୍ରସିକ୍ୟୁଟର ଗୋଟିଏ ହାପ୍-ପ୍ୟାଣ୍ଟ ଦେଖାଇ ସାକ୍ଷୀକୁ ପଚାରିଲେ ଅନ୍ୟାନ୍ୟ ଜିନିଷ, ବେଡ୍‌ସିଟ୍ ଶାଢ଼ୀ, ହାଓ୍ୱାନ ସହିତ ଏହି ହାପ୍ ପ୍ୟାଣ୍ଟଟି ମଧ୍ୟ ଜବତ ହୋଇଥିଲା ।

ହଠାତ୍ ସାଗରବାବୁ ଜୁଡ଼ିସିଆଲ୍ ମାଜିଷ୍ଟ୍ରେଟ୍ ଅନ୍ୟମନସ୍କ ହୋଇ ଉଠିଲେ । ସମ୍ମୁଖରେ ତାଙ୍କର ଉଷାବାଦଲ ପରି ଅନେକ ସ୍ମୃତି ଝଲସି ଉଠିଲା । ସତେ ଯେପରି ସେକ୍ରେଟାରିଏଟ୍ ସମ୍ମୁଖରେ ହସଖୁସିର ମଣିଷ ନିରାକାରବାବୁ ଠିଆ ହୋଇ ତାଙ୍କୁ କହୁଛନ୍ତି ଏହି ହାପ୍ ପ୍ୟାଣ୍ଟ ମୋ ଦୁର୍ଦ୍ଦିନର ସାକ୍ଷୀ ଆଜି ମୁଁ ଅନେକ ଧନୀ ହୋଇ ଯାଇଛି । ମାତ୍ର ମୁଁ ଅତୀତର ସେହିଦିନ ଗୁଡ଼ିକୁ ଭୁଲି ଦିବାକୁ ଚାହେଁନା ସେହି ଦୁଃଖର ଦିନଗୁଡିକ ମୋପାଇଁ ବହୁମୂଲ୍ୟ-ବାନ୍ । ମାଜିଷ୍ଟ୍ରେଟ୍ ପଚାରିଲେ, କେଶ୍‌ର ଅଭିଯୋଗକାରୀ କିଏ ? ନିରାକାର ମହାନ୍ତି ? ଉତ୍ତର କଲେ ପ୍ରସ୍ୟୁକ୍ୟୁଟର—ହଁ ସାର୍ । ମାଜିଷ୍ଟ୍ରେଟ୍ ଆଉଥରେ ସମ୍ମୁଖ ଟେବୁଲ୍ ଉପରକୁ ଦୃଷ୍ଟି ନିକ୍ଷେପ କଲେ । ଚୋରି ହୋଇ ଜବତ ହୋଇଥିବା ତିନି ଚାରଟି ଦାମି ସିଲକ୍ ଶାଢ଼ୀ ଦୁଇଟି ବେଡ୍ ସିଟ୍ ତିନି ଚାରିଟି ହାଓ୍ୱାନ ସାର୍ଟ ଭିତରେ ସ୍ୱଳ୍ପ ଦାମ୍‌ର ହାପ୍ ପ୍ୟାଣ୍ଟ ଖଣ୍ଡି ଅତି ଅବହେଳିତ ଅବସ୍ଥାରେ ପଡ଼ିଥିଲା । ସେ କିଛି କହିବାକୁ ଚାହିଁ କହି ପାରୁ ନଥିଲେ । କେବଳ ସାକ୍ଷୀଙ୍କ ସାକ୍ଷ୍ୟ ଲିପିବଦ୍ଧ କରି ଚାଲିଥିଲେ । କୋର୍ଟ କକ୍ଷରେ ଗୋଟିଏ ପରିଚିତ ସ୍ୱର ପ୍ରତିଧ୍ୱନିତ ହେଉ ଥିବାର ସେ କେବଳ ଶୁଣି ପାରୁଥିଲେ । ସେ ସ୍ୱରଟି ହେଲା – ଏ ହାପ୍ ପ୍ୟାଣ୍ଟ ମୋ ଦୁଃଖ ଦୁର୍ଦ୍ଦିନର ସାକ୍ଷୀ । ଆଜି ମୁଁ ଅନେକ ଧନୀ ହୋଇ ପାରିଛି, ମାତ୍ର ମୁଁ ମୋର ସେହି ଦିନଗୁଡିକୁ ଭୁଲି ଯିବାକୁ ଚାହେଁ ନାହିଁ ।



# ଗୋଲନେୟାର୍



ଶ୍ରୀ ବସନ୍ତ କୁମାର ସାମଲ

ଅହମ୍ମଦ ନଗର ।

ରାଜ ଅନ୍ତଃପୁର

ବାତାୟନ ଫାଙ୍କରେ ଶୂନ୍ୟ ଆକାଶକୁ ଚାହିଁ ଦୀର୍ଘଶ୍ୱାସ ଛାଡ଼ିଲେ ଗୋଲନେୟାର । ନୀଡ଼କୁ ଫେରି ଆସୁଥିଲେ ପକ୍ଷୀ ଦଳ ରକ୍ତାଭ ଡେଣା ପିନ୍ଧି ଚଞ୍ଚଳ ଗତିରେ । ଅସ୍ତ ସୂର୍ଯ୍ୟର ରକ୍ତରାଗ ସବୁଜ ଅରଣ୍ୟର ନୀଳାଭ ଅଞ୍ଚଳରେ ।

ଉଦାସ ଗୋଧୂଳି ସଙ୍ଗୀତ ବାଜୁଥିଲା ବେଗମଙ୍କ ଶୂନ୍ୟ ପ୍ରାଣରେ । ନୟନ ପ୍ରାନ୍ତରେ ଲୋତକର ଝରଣା ଫିଟି ପଡ଼ୁଥିଲା । ବାସ୍ତବିକ ହୃଦୟର ଏକ ଅବ୍ୟକ୍ତ ଯନ୍ତ୍ରଣାରେ ବେଗମ ଅତିଷ୍ଠ ହୋଇ ଉଠୁଥିଲେ ।

କେଶମୁକ୍ତ । ଦୀର୍ଘଧାର ଗର୍ବ ନେଇ ଲୋଟି ପଡ଼ୁଛି ଜଘନ ଉପରକୁ ।

ଦୀର୍ଘ ନେତ୍ରରେ କଜ୍ଜଳରେଖା ।

ଯମୁନାର ନୀଳ ନୀର ବେଣୀଭଳି ଖସି ପଡ଼ିଛି କର୍ଣ୍ଣ ଦେଶ ଓ ଚିବୁକ ଦେଇ, ରେଖାଙ୍କିତ ଯୋଥି ପ୍ରତିମାପରି ମାପଚୁପ ଅଙ୍ଗ ସୌଷ୍ଠବ ! କି ଉଜ୍ଜଳ ! ଅସାମାନ୍ୟ । ଅତୁଳନୀୟ ସୌନ୍ଦର୍ଯ୍ୟର ଅଧିକାରିଣୀ ବେଗମ ଗୋଲନେୟାର ।

ଅଥଚ ବସନ୍ତର ପଳାଶବନ ପରି ଅଧର ଉଷ୍ଣ । ଅଧର ଖୋଜୁଚି ଅଧର, ନେତ୍ର ଖୋଜୁଚି ନେତ୍ର, ବାହୁ ଖୋଜୁଚି ବାହୁ, ବୁକୁ ଖୋଜୁଚି ବୁକୁ । ଅଥଚ ଅଲଭ୍ୟ ବେଦନାରେ ଯନ୍ତ୍ରଣା-ଜର୍ଜରିତ ବେଗମ ଗୋଲନେୟାର ଥରି ଉଠୁଥିଲେ ।

ଅହମ୍ମଦନଗରର ରାଜପ୍ରାସାଦର ଅନ୍ତଃପୁରରେ ସେ ଯେମିତି ବନ୍ଦିନୀ । ଭାରତର ଏକଚ୍ଛତ୍ରାଧିପତି ମୋଗଲ ସମ୍ରାଟ ଔରଙ୍ଗଜେବଙ୍କ ହସ୍ତର କ୍ରୀଡ଼ନକ ପିଞ୍ଜରାବଦ୍ଧ ପକ୍ଷୀ । ଯୁଦ୍ଧରତ ସମ୍ରାଟ ଭୁଲି ଯାଇଛନ୍ତି ପ୍ରାଣସମା ପତ୍ନୀ ରୂପସୀ ଗୋଲ ନେୟାରଙ୍କର ପ୍ରେମ ନିବେଦନ । ନାରୀ ରୂପସୀ । ସେ ଚାହେଁ ମିଳନ ।

ରାଜଅନ୍ତଃପୁରର ସୁସଜ୍ଜିତ ସୁଷମାମଣ୍ଡିତ ବିଳାସ-ନିକେତନ ସମ୍ରାଟ ଅନୁପସ୍ଥିତିରେ ହୋଇ ଉଠୁଚି ଶୂନ୍ୟ ବ୍ୟର୍ଥ । ବ୍ୟର୍ଥ ହୋଇ ଉଠୁଛି ଯୌବନ । ମାନସ ପଟରେ ଅଜସ୍ର କାମନାର ଉଚ୍ଛଳ ତରଙ୍ଗ ପିଷ୍ଟ ହୋଇ ଯାଉଛି ।

ସେଇ ଅନୁଶୋଚନା, ଅନୁତାପ, ବ୍ୟର୍ଥତା, କାଳକ୍ରମେ କ୍ରୋଧାଗ୍ନିରେ ପରିଣତ ହୋଇ ଉଠିଛି । ସୁଗଠିତ ତନୁରେ ବେପଥୁ । ଅଜସ୍ର ପ୍ରତୀକ୍ଷା ପରେ ବିଦ୍ରୋହିଣୀ ପ୍ରେମିକା ବେଗମ ଗୋଲନେୟାର ନେଇଛନ୍ତି ସଙ୍ଗୀବର ଆଶ୍ରୟ । ଆଜ ରୋଷକଷାୟିତ ନେତ୍ରର କଟାକ୍ଷରୁ ସୃଷ୍ଟି ହୋଇ ଚାଲିଛି ବଡ଼ବାନଳ । ସମଗ୍ର ଭାରତ ବର୍ଷକୁ ଜାଳପୋଡ଼ ଦେବାର ସାମର୍ଥ୍ୟ ସୁସ୍ପଷ୍ଟ ।

କିଏ ବା ବିଶ୍ୱାସ କରିବ ସାମ୍ରାଜ୍ଞୀ ଗୋଲନେୟାରଙ୍କ ଆତ୍ମ-ଅସନ୍ତୋଷର କାରଣ । ସମ୍ରାଟ ବାରମ୍ବାର ଯୁଦ୍ଧର ଘନଘଟା ଭିତରେ ଭୁଲି ଯାଇଛନ୍ତି ରୂପସୀପତ୍ନୀ ଗୋଲନେୟାରଙ୍କୁ । ନାରୀର କଟାକ୍ଷପାତରେ ସମଗ୍ର ସାମ୍ରାଜ୍ୟ ଧ୍ୱଂସ ହୋଇ ଯାଇପାରେ । ଏହାର ଭୂରି ଭୂରି ପ୍ରମାଣ ରହିଛି ଇତିହାସରେ ।

ବାତାୟନର ଲୌହରେଲିଂକୁ ଧରି ଗୋଲନେୟାର ନୟନରୁ ଲୋତକ ଗଡ଼ାଉଥିଲେ । ସେ ଲୋତକ ଭିତରେ ଭାସି ଉଠୁଥିଲା ତାଜମହଲ ।

ସେଇ ବଣ୍‌ସିକ୍ତ ରାତର ଆକାଶରେ ପ୍ରେମିକର ଶାଶ୍ୱତ ହୃଦୟର ତାରକା ଝଲମଲ କରି ଉଠୁଥିଲା । ଧନ୍ୟ ସାହାଜାହାନ, ଧନ୍ୟ ମମତାଜ । ତୁମକୁ ବନ୍ଦୀ କରି ଯେଉଁ ପୁତ୍ର ହତ୍ୟାକରି ଆନନ୍ଦଲାଭ କରିଥିଲା ସାମ୍ରାଜ୍ୟ ଲୋଭରେ ସେ କେବେ ବୁଝିବ ନାରୀର ହୃଦୟ ? ନାରୀର ବେଦନା ।

ଆଃ ସରାବ ! ସରାବହିଁ ରକ୍ତିମ ଓଠରେ ଭରି ଦେଇପାରେ ଉଷ୍ଣତା, ହଃ ହଃ—ପାଗଳିନୀପରି ହସି ଉଠିଲେ ବେଗମ । ସେଇ ଶୂନ୍ୟହସର ପ୍ରତିଧ୍ୱନୀ ମୂଲ୍ୟବାନ ଶୟନକକ୍ଷର ସ୍ଫଟିକ କାନ୍ଥରେ ବାଜି ଅସ୍ପଷ୍ଟ ହୋଇ ଉଠିଲା ।

ଶଯ୍ୟାରେ ଅଳସ ତନୁକୁ ଲେଟାଇ ଦେଲେ, କିନ୍ତୁ ଆକସ୍ମିକ ଭାବରେ ପ୍ରବେଶ କଲେ ମୋଗଲ ସମ୍ରାଟ ଆଓରଙ୍ଗଜେବ । ସ୍ଫଟିକଆଡ଼େ ବିକ୍ଷିପ୍ତ ଭାବେ ଲେଟିଥିବା ସରାବ ପାତ୍ର ଦେଖି ଘୃଣାରେ ଥରି ଉଠିଲେ ସେ । ଏ କ’ଣ, ଗୋଲନେୟାର ?

ଗୋଲନେୟାର ସମ୍ରାଟଙ୍କ ମୁହଁକୁ ଥରେ ଚାହିଁଲେ, ତା’ପରେ ଉଦ୍ଧତ କଣ୍ଠରେ କହିଉଠିଲେ—ମନେରଖ ସମ୍ରାଟ ! ଏ ଯୌବନ ମୋତେ ଉଦ୍ଧତା ଆଜି ସୃଷ୍ଟିକରୁଛି । ଯୌବନକୁ ଉପଭୋଗ କରିବାର ମସ୍ତବଡ଼ କାମନା ନେଇ ମୁଁ ଆସିଥିଲି ସମ୍ରାଟ । ପ୍ରତ୍ୟେକ ମୂହୂର୍ତ୍ତ ମୋର ଉଜୁଡ଼ି ଯାଉଛି— ଏଇ ଉଜୁଡ଼ା ବସନ୍ତର ସମ୍ମୋହନ ତୁମ ଭିତରେ ମୂହୂର୍ତ୍ତିକ ପାଇଁ ଶିହରଣ ସୃଷ୍ଟି କଲନାହିଁ । ମୁଁ ଏହାର ପ୍ରତିଶୋଧ ନେବି ସମ୍ରାଟ । ତୁମକୁ ମୁଁ ମଧ୍ୟ ଦେଖାଇପାରେ ମୃତ୍ୟୁର ତାଣ୍ଡବ ନୃତ୍ୟ । ସମର ବିଭୀଷିକା । ତୁମର ସାମ୍ରାଜ୍ୟର ପତନର ଅନିବାର୍ଯ୍ୟ ଦୃଶ୍ୟ ।

ସମ୍ରାଟ ଆଉରଙ୍ଗଜେବ ହସି ଉଠିଲେ···ଗୋଲନେୟାର ତୁମର ପ୍ରେମିକ ରାଠୋର ଦୁର୍ଗାଦାସ ବର୍ତ୍ତମାନ ବନ୍ଦୀ । ତାର ବୀରତ୍ୱ ବଳବୀର୍ଯ୍ୟ ଶୌର୍ଯ୍ୟ ଅଜି ନଷ୍ଟ୍ରଭ ହୋଇ ଯାଇଛି । ତୁମେ କଣ ଜାଣନି ତୁମକୁହିଁ କେନ୍ଦ୍ରକରି ମୋର ଏ ଦାକ୍ଷିଣାତ୍ୟ ଅଭିଯାନ । ଗୋଲନେୟାର ପ୍ରଗଲ୍‌ଭ କଣ୍ଠରେକହିଲେ—ଦୁର୍ଗାଦାସ ବନ୍ଦୀ ! ବିସ୍ମୟ ହେବାର କାରଣ ନାହିଁ ଗୋଲନେୟାର ସେଥିପାଇଁ କାବଲେଶ ଖାଁ ପୁରସ୍କୃତ ହୋଇଛି ।

'ଏହା କଣ ସତ୍ୟ ଜାହାଁପନା'

"ହନବନ୍ତ ପରି ସତ୍ୟ"

ଗୋଲନେସ୍ସାର ଶୂନ୍ୟ ଦୃଷ୍ଟିରେ ଗୃହିଁରହିଲେ—ଆଖି ଆଗରେ ଭାସି ଉଠିଲା ଅଶାତର ଏକ ସ୍ମରଣୀୟ ଘଟଣା । ସେଦିନ ସ୍ୱହସ୍ତରେ ଶୃଙ୍ଖଳ ମୁକ୍ତ କରି ପ୍ରହସ୍ତ ଭାବରେ ଅଶ୍ୱ ପୃଷ୍ଠରେ ଦୀର୍ଘ ପଥ ଅତିକ୍ରମ କରାଇ ଠିଆ କରାଇଥିଲେ ସୁପୁରୁଷ ଦୁର୍ଗାଦାସ ଦିଲ୍ଲୀ ରାଜପ୍ରସାଦ ପାଖରେ । ସେହିଦିନ ଥିଲା ଦୁର୍ଗାଦାସର ସୁଦୀର୍ଘ-ବପୁ, ପ୍ରଶସ୍ତ କପାଳ, ସ୍ମିତହାସ୍ୟ ଯୁକ୍ତ ଅଧରପ୍ରାନ୍ତ । ଆଃ ପୌରୁଷର ଦମ୍ଭ ଅହଂକାର ନେଇ ମତେ ଥରେ ସ୍ପର୍ଶ କରିପାରିଲା ନାହିଁ—ଭୀରୁ କାପୁରୁଷ । ମୋର ଅସାଧାରଣ ସୌନ୍ଦର୍ଯ୍ୟ ପରାଜିତ ହୋଇ ଯାଇଥିଲା ତାର ଉପୁଙ୍କର ଧୈର୍ଯ୍ୟ ପାଖରେ ।

ଗୋଲନେସ୍ସାର !

ଜାହାଁପନା

ତୁମେ ନାରୀ ହୋଇ ସୁରାପାତ୍ରରେ ଦେଖୁଛ ଯୌବନର ପ୍ରତିବିମ୍ୱ । ତୁମେ ଧର୍ମଭ୍ରଷ୍ଟା ।

କ୍ରୋଧ ତ୍ୟାଗ କରନ୍ତୁ ସମ୍ରାଟ । ଥରେ ଗୃହିଁ ମତେ । ମୋର ଅସାମାନ୍ୟ ଜ୍ୱଳନ୍ତା ରୂପରେ ପତଙ୍ଗଭଳି ଝାସ ଦେଇ ନାହାନ୍ତି ଦୁର୍ଗାଦାସ, ଆଉ ତୁମେ । ନାରୀର ଯୌବନ ଗବ ଖବ ହୋଇ ଯାଇଛି । କଣ ଦରକାର ଏ ଅସାମାନ୍ୟ ସୌନ୍ଦର୍ଯ୍ୟର, କଣ ଦରକାର ଆଜାନୁଲମ୍ବିତ ଘନକେଶଗୁଚ୍ଛର, କଣ ଦରକାର ସୁଦୀର୍ଘ ନେତ୍ର ଆଉ ଚନ୍ଦ୍ରସମ ସୁଷମ ମୁଖମଣ୍ଡଳର; କଣ ବା ଲୋଡ଼ା ସ୍ୱର୍ଣ୍ଣାଭ ବାହୁଯୁଗଳ ଆଉ ଅଧରପ୍ରାନ୍ତରେ ଆଶ୍ଚର୍ଯ୍ୟ ହାସ୍ୟରେଖାର । ଆପଣମାନେ ପୁରୁଷ ହୋଇ କଣ ଗୃହାନ୍ତି—ନାରୀ ନା ଧର୍ମ ।

ସମ୍ରାଟ ଆଉରଙ୍ଗଜେବ ନିରୁତ୍ତର । ବିଶ୍ରାମ ନେବାକୁ ଉପଦେଶ ଦେଇ ସେ ଗ୍ଳଲିଗଲେ । ତାଙ୍କର ପ୍ରସ୍ଥାନ ପଥକୁ ଗୃହିଁ ହସି ଉଠିଲେ ଗୋଲନେସ୍ସାର । ପ୍ରତିହିଂସା, ପ୍ରତିଶୋଧର କାମନାରେ ସେ ହୋଇ ଉଠିଲେ ପାଗଳିନୀ । ତାଙ୍କର ରକ୍ତରେ ଅପୂର୍ବ ରୋମାଞ୍ଚ—ମସ୍ତକରେ

ଶାନ୍ତିର ଅନନ୍ତ ଝଣ୍ଡ । ସେ ଫେରି ଆସିଲେ ସୁକୋମଳ ଦୁଗ୍ଧ ଫେନନିଭ ଶଯ୍ୟାଧାରକୁ । ଆଃ ! କି ନିଷ୍ଠୁର, କି ହୃଦୟହୀନ ପାଷାଣ ଓ ରାଜ୍ୟଲୋଭୀ ଆଉରଙ୍ଗଜେବ । ଦିଲ୍ଲୀର ବାଦଶାହା, ଲକ୍ଷାଧିକ ସେନାର ସେନାନାୟକ । ଯିଏ କ୍ଷମତାର ପ୍ରଲୋଭନରେ ନିଜର ରକ୍ତର ସମ୍ପର୍କିତ ଭାଇମାନଙ୍କୁ ହତ୍ୟା କରିପାରେ—ସେ କଣ ବୁଝିବ ନାରୀର ହୃଦୟ, ଯାହାର ରାଗରଞ୍ଜିତ ନେତ୍ର ଆଜି ରକ୍ତ ରଞ୍ଜିତ ଚିରବାଗ ପ୍ରତିମୋହ, ଯିଏ ସୃଷ୍ଟି କରିପାରେ ରାଜ୍ୟ ରାଜ୍ୟରେ ରକ୍ତର କରାଳ ସମୁଦ୍ର । ସେହି ଧର୍ମାନ୍ଧ ମୋଗଲ ସମ୍ରାଟର ଦମ୍ଭ ଅହଂକାରକୁ ମୁଁ ଧୂଳିସାତ୍ କରିବାକୁ ଚାହେଁ । ବିଶ୍ରାମ । ବିଶ୍ରାମ କାହିଁ ? ଯେ ପର୍ଯ୍ୟନ୍ତ ସ୍ୱର୍ଣ୍ଣ-ଖଚିତ ରାଜମୁକୁଟ ଉଠାଇ "ରାଜପୂତ ବୀର ଦୁର୍ଗାଦାସ ମଥାରେ ପିନ୍ଧାଇ ନ ଦେଇଛି ସେ ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ, ବିଶ୍ରାମନାହିଁ, ଆଜି ପୂରଣ ହୋଇନି ମୋର ଲକ୍ଷ୍ୟ । ଦୁର୍ଗାଦାସ । ତୁମେ ଜାଣନା ଗୋଲନେୟାରକୁ—ଥରେ ବୁଝିବାକୁ ଚେଷ୍ଟା କରନା । ତଥାପି ମୁଁ ତୁମକୁ ଭଲ ପାଏ । ତୁମକୁ ଦିଲ୍ଲୀ ସିଂହାସନରେ ସମ୍ରାଟପଦରେ ଅଭିଷିକ୍ତ କରାଇ ମୁଁ ହେବାକୁ ଚାହେଁ ତୁମର ସାମ୍ରାଜ୍ଞୀ । ସନ୍ଦେହୀ ଧର୍ମାନ୍ଧ ରାଜ୍ୟଲୋଭୀ ବାଦଶାହା—ପ୍ରସ୍ତୁତ ରହ ।

ରାତ୍ରୀର ଅନ୍ଧକାର । ଅବସାଦର ଅନ୍ଧକାର ।

ଉଜ୍ଜ୍ୱଳ ଆଲୋକରେ ସମଗ୍ର ପୃଥିବୀ ହସି ଉଠିବା ପର୍ଯ୍ୟନ୍ତ ମଦ୍ୟପାୟିନୀ ଗୋଲନେୟାର ଶୋଇଗଲେ; ଅଥଚ ଶୋଇପାରିଲେ ନାହିଁ । ଉତ୍ତେଜନାରେ ଉଠି ସେ ଗଭୀର ନିସ୍ତବ୍ଧ ରାତ୍ରୀରେ ଛଦ୍ମବେଶରେ ଆଗେଇ ଗଲେ ।

ଅଦୂର ବେତସକୁଞ୍ଜରୁ ଶୁଭୁଥିଲା ହିଂସ୍ର ପଶୁର ଗର୍ଜନ—ଶିବିର ସମୀପସ୍ଥ ବଂଶକୁଞ୍ଜରୁ ଶୁଭୁଥିଲା ନିଶାଚର ପେଚକ ଗୁରୁଗମ୍ଭୀର ଅଶୁଭସ୍ୱର ।

ବିଶାଳ କାରାକକ୍ଷର କ୍ଷୁଦ୍ର ବାତାୟନ ଭିତର ଦେଇ ଦୃଷ୍ଟି ନିକ୍ଷେପ କଲେ ସୁନ୍ଦରୀ ଗୋଲନେୟାର । ଅନ୍ଧକାର ମଧ୍ୟରେ ପ୍ରେତଚ୍ଛାୟାପରି ଦେଖାଗଲେ ଦୁର୍ଗାଦାସ । କପାଟ ଦ୍ୱୟ ଉନ୍ମୁକ୍ତ କରି ଗୋଲନେୟାର ରାଠୋର ସେନାନାୟକ ଦୁର୍ଗାଦାସ ନିକଟକୁ ଗଲେ । କିନ୍ତୁ ସେ ବିଧର୍ମୀର କାରାଗାରରେ

କେବଳ ବିଶ୍ୱାସଘାତକ ଶମ୍ଭୁଜୀଙ୍କ କଥା ଭାବୁଥିଲେ । ମାତ୍ର ହଠାତ୍ ନାରୀକଣ୍ଠ ବାଣୀ ସେ ଉତ୍କର୍ଣ୍ଣ ହେଲେ—

--କିଏ ?

—ମୁଁ ବେଗମ ଗୋଲନୟ୍ୟୋର

—ଗୋଲନୟ୍ୟୋର ।

—ଚିହ୍ନି ପାରୁନ ମୁଁ ମୋଗଲ ସମ୍ରାଟ ଆଉରଙ୍ଗଜେବଙ୍କ ସାମ୍ରାଜ୍ଞୀ

—ମନେ ଅଛି

—ତମର ସେଇ ଗୋଲନେୟାର ଆଜ ପ୍ରେମପ୍ରାର୍ଥିନୀ

—ପ୍ରେମପ୍ରାର୍ଥିନୀ

—ଆଶ୍ଚର୍ଯ୍ୟ ହେବାର କଣ ଅଛି

—ପରିହାସ ନୁହେଁ ତ ବେଗମ

—ପ୍ରାଣର ଅକୃତ୍ରିମ କଥା ଦୁର୍ଗାଦାସ

--ତା ହେଲେ ମୁକ୍ତି ମିଳିବ ପୂର୍ବର ଉପକାର ପାଇଁ

—ନିଶ୍ଚୟ, କିନ୍ତୁ···

—କିନ୍ତୁ ?

—ଆଜୀବନ ଶତ୍ରୁ ରାଠୋର ସେନାନାୟକଙ୍କୁ ମୁକ୍ତି ନାହିଁ

—ତେବେ ଶାସ୍ତି

—ସେ ଶାସ୍ତି ସମ୍ରାଟଙ୍କର ନୁହେଁ ସାମ୍ରାଜ୍ଞୀଙ୍କର, ସାମ୍ରାଜ୍ଞୀଙ୍କର ଅଭିଳାଷ ପୂରଣ କରିବାକୁ ପଡ଼ିବ, ଦୁର୍ଗାଦାସ ।

—ବେଗମ ସାହେବା ।

—ମୋତେ ପ୍ରେମଦାନ କରି ମୋର କାମାଶକ୍ତ ଶୁଷ୍କପ୍ରାଣରେ ରସର ଫଲଗୁ ଛୁଟାଇଦିଅ । ତିଳ ତିଳ କରି ମୋର ସୌନ୍ଦର୍ଯ୍ୟ ପାନ କର ଦୁର୍ଗାଦାସ । ନାରୀ ହୃଦୟର ବେଦନା ବୁଝିବ ନିଶ୍ଚୟ !

—ବେଗମ ସାହେବା ।

—ତୁମେ ଘୃଣ୍ଣ ଯାଜିତ ଭୟରେ ଦୁର୍ଗାଦାସ । ମୋର ପ୍ରେମପ୍ରାର୍ଥନାକୁ ବୀର ହୋଇ ଖାରୁ ଭଳି ପାଦରେ ଦଳି ଦେଇ ପାରୁଚ ? ମୁଁ

ବିଶାଳ ସାମ୍ରାଜ୍ୟର ସାମ୍ରାଜ୍ଞୀ ହୋଇ ସାମାନ୍ୟ ଜଣେ ସେନାପତି ପାଖରେ ପ୍ରେମ ଭିକ୍ଷା କରି ପରାଜିତା ହେଲେ···

—ନା, ନା—ଗୋଲନେୟାର । ମୃତ୍ୟୁକୁ କେବେ ଭୟ କରେନା ଦୁର୍ଗାଦାସ ।

—ଦୁର୍ଗାଦାସ, ତୁମେ କଣ ଚାହଁନା, ଦିଲ୍ଲୀ ସିଂହାସନ । ତୁମେ କଣ ଚାହଁନା—ଅପୂର୍ବ ରୂପସୀ ଗୋଲନେୟାରକୁ ?

—ମୁଁ ସମ୍ରାଟ ହେବାକୁ ଚାହେନା—ଚାହେନା ତୁମକୁ ଗୋଲ-ନେୟାର । ରାଜପୁତ ଜାତି ନାରୀକୁ ସମ୍ମାନ ଦେଇ ଶିଖିଛି···

—କଣ ହେବ ଏହାର ପରିଣତି ଦୁର୍ଗାଦାସ, କ୍ରୁଦ୍ଧ ପ୍ରେମ ଚାହଁନା ମୃତ୍ୟୁ

—ଜାଣେ ମୃତ୍ୟୁ ମୋର ଅନିବାର୍ଯ୍ୟ ।

—କାମଜକସ ।

—ମୋତେ ଡାକିଲେ ବେଗମ ସାହେବା ।

—ଏଇ ମୁହୂର୍ତ୍ତରେ ମୋଗଲ ଶତ୍ରୁ ଦୁର୍ଗାଦାସକୁ ହତ୍ୟାକର ।

—ନା, ମୁଁ ପାରିବି ନାହିଁ ।

—ତମେ ପାରିବନି ? ମୋଗଲ ସାମ୍ରାଜ୍ଞୀର ଆଦେଶ ପାଳିବ ନାହିଁ ?

—କ୍ଷମା କରିବେ ସାମ୍ରାଜ୍ଞୀ !

ଗୋଲନେୟାର ଅଧର ଚିପିଲେ କ୍ରୋଧରେ । ହୁଏତ କଣ କରିବେ ସେ । ଠିକ୍ ଏହି ସମୟରେ ପଦଶବ୍ଦ ଶୁଭିଲା—ସେ ଫେରି ଚାହିଁଲେ କିଏ ?

—ମୁଁ ସମ୍ରାଟଙ୍କର ବିଶ୍ୱସ୍ତ ସେନାପତି ଦିଲ୍ଲୀର ଖାଁ ।

—ଦିଲ୍ଲୀର ଖାଁ ।

—ତମକୁ ପଡ଼ନ୍ତୁ ନାହିଁ ବେଗମ ସାହେବା ମୁଁ ସବୁ ଶୁଣିଛି

—ତଥାପି ତୁମକୁ ନିର୍ଦ୍ଦେଶ, ସାମ୍ରାଜ୍ଞୀଙ୍କର ଆଦେଶ ଦୁର୍ଗାଦାସକୁ ହତ୍ୟାକର ।

—ତୁମେ ଏ ଆଦେଶ ଦେଇ ପାରିବ ନାହିଁ ସାମ୍ରାଜ୍ଞୀ ।

—ଆଦେଶ ମାନିବ ନାହିଁ

—ନା

—ଦିଲ୍ଲୀର ଖାଁ । ।

—ଜଣେ ମଦ୍ୟପାୟିନୀ, ବିଶ୍ୱାସଘାତିନୀ, ଭ୍ରଷ୍ଟାଚାରିଣୀ ରାଜ-
ଦ୍ରୋହିଣୀର ଆଦେଶ ମାନିବାକୁ ମୋଗଲ ସେନାପତି ଦିଲ୍ଲୀର ଖାଁ
ବାଧ୍ୟ ନୁହେଁ ବେଗମ ସାହେବା ।

—ଦିଲ୍ଲୀର ଖାଁ ?

—କିଏ ଅଛ ?

—କେହିନାହାନ୍ତି ବେଗମ ।

—ତା ହେଲେ, ଅସହାୟା ଗୋଲନେୟାର ବିଚଳିତ ହୋଇ ଉଠିଲେ
ବାରମ୍ବାର ଅଧରଦଂଶନ କରି ଅଳ୍ପ ଖଣ୍ଡିଏ ଖୋଜିଲେ—ମାତ୍ର
ନ ପାଇ କହି ଉଠିଲେ, ମାନିବ ନାହିଁ ଦିଲ୍ଲୀର ଖାଁ ?

—ଅନ୍ୟାୟ ଆଦେଶ ପାଳିବାକୁ ମୁଁ ବାଧ୍ୟ ନୁହେଁ ।

ବେଗମ ସାହେବା କାହାକଥାରୁ ନିଷ୍କ୍ରାନ୍ତ ହେବାକୁ ଚେଷ୍ଟାକଲେ ମାତ୍ର ଦୁର୍ଗାଦାସଙ୍କୁ ବନ୍ଦୀମୁକ୍ତ କରିବାକୁ ପ୍ରବଳ ଇଚ୍ଛା ନେଇ ଫେରିଲେ– ତା ନହେଲେ ସମସ୍ତ ରହସ୍ୟ ଉଦ୍‌ଘାଟିତ ହୋଇଯିବ । ମାତ୍ର ଏ କ'ଣ ? ଦିଲ୍ଲୀର ଖାଁ ଦୁର୍ଗାଦାସଙ୍କ ନିକଟକୁ ଯାଇ ମଥା ଅବନତ କଲେ ।

ବୀରକୁଳ ସୂର୍ଯ୍ୟ, ରାଠୋର ସେନାପତି ଦୁର୍ଗାଦାସ । ତୁମର ବୀରତ୍ୱର ପରିଚୟ ପାଇଥିଲୁ । ଏବେ ରାଜପୁତ ଜାତିର ଚରିତ୍ର ସମ୍ପର୍କରେ ଆଉ ଅଜ୍ଞ ନୁହେ । ବେଗମ ସାହେବାଙ୍କର ଏଇ ପାପପୂର୍ଣ୍ଣ ପ୍ରଣୟଭିକ୍ଷା ମୋତେ ଆହତ କରିଛି । ମୁଁ ମୁସଲମାନ ସେନାପତି, ଶତ୍ରୁ । କିନ୍ତୁ ତୁମର ସେଇ ଚରିତ୍ରବତ୍ତାରେ ମୁଁ ଅଭିଭୂତ । ଆଜିଠାରୁ ତୁମେ ମୁକ୍ତ । ରାଠୋରବୀର ଦୁର୍ଗାଦାସ ! ଆସ, ଆଜି ତୁମେ ମୁକ୍ତ । ଆଜି ରାତିରେ ତୁମେ ମୋର ସଜ୍ଜିତ ଘୋଡ଼ାକରେ ନିରାପଦରେ ରାଜ୍ୟକୁ ଫେରିଯାଅ । ଆମର ଶତ୍ରୁ କିନ୍ତୁ ମରହଟ୍ଟା ବୀର କେମୁଣ୍ଡା, ଆସ ଦୁର୍ଗାଦାସ, ତୁମର ମହତ୍ତ୍ୱ ନିକଟରେ ମୁଁ ସହସ୍ରବାର ସଲାମ କରୁଛି । ଆଉ ବିଳମ୍ବ ନିଷ୍ପ୍ରୟୋଜନ । ଗୋଲନେୟାର ବିଚଳିତା ହୋଇ ଚିତ୍କାର କଲେ ଦିଲ୍ଲୀର ଖାଁ । କିନ୍ତୁ ଅଶ୍ୱ ଖୁରାର ଶବ୍ଦ ଧୀରେ ଧୀରେ ନିରବଚ୍ଛିନ୍ନ ଅନ୍ଧକାରରେ ମିଳେଇ ଯାଉଥିଲା । ରାତିର ଅନ୍ଧକାର ଭେଦକରି ଦୃଷ୍ଟି ଆଉ ଲମ୍ବି ଯାଉନଥିଲା ଦୂରକୁ । ଆଖି ଗ୍ଲାନିର ଲୁହରେ ଅନ୍ଧ ହୋଇ ଯାଉଥିଲା ।



# ଛାଇ

## ସତ୍ୟନାରାୟଣ ପଣ୍ଡା

ଅପରାହ୍ନ ମଉଳିବାକୁ ଆହୁରି ଅନେକ ସମୟ ବାକି ଥିଲେ ବି ସୂର୍ଯ୍ୟକିରଣରେ କେମିତି ଏକ ନିସ୍ତେଜ କ୍ଳୀବତା ସ୍ପଷ୍ଟ ଅନୁଭବ କରି ହେଉଥିଲା । ଖାଲି ଦେହରେତ ଦୂରର କଥା, ଲୁଙ୍ଗି ପଞ୍ଜାବୀ ପିନ୍ଧି ଖରାରେ ଚୌକି ପକାଇ ବସିଲେ ମଧ୍ୟ ଆରାମ ଲାଗୁନଥିଲା । କେଉଁଠି ବୋଧହୁଏ ବର୍ଷା ହୋଇ ଯାଇଛି । ବର୍ଷା ତ ଠିକ୍ ନୁହେଁ, କୌଣସି ଗୋଟିଏ ନାମହୀନ ହିମ-ପ୍ରବାହ ଗତିପଥ ପରିତ୍ୟାଗ କରି ଏ ଅଞ୍ଚଳ ଦେଇ ମାଡ଼ି ଆସିଛି । ନହେଲେ ପବନ ଏତେ କଣ କଣିଆ ହୁଅନ୍ତା କାହିଁକି ? ମୋର ତ ଅବସ୍ଥା ଏଇଆ···ପ୍ରୌଢ଼ା ପ୍ରୌଢ଼ଙ୍କ ପାଇଁ ଏ ବାୟୁଆ ଶୀତଟା ସତେ କେତେ ହାଡ଼ ଫଟା ହୋଇ ନଥିବ ।

ଦେହ ହାତ କେମିତି ଫାଙ୍ଗିଣିଆ ଦିଶୁଛି । ଗୋଡ ତଳପା ଫାଟିବାକୁ ଆରମ୍ଭ କଲାଣି । ତଳ ଓଠରୁ ଆଜି ସକାଳେ ରକ୍ତ ଝରୁଥିଲା । ଅଇନାରେ ମୁହଁ ଦେଖିଲାବେଳେ ମୋର ମନେପଡ଼ିଲା ମୋ ସାଙ୍ଗରେ ସେକେଣ୍ଡ ଇୟରରେ ପଢୁଥିବା 'ପ୍ରଶାନ୍ତ' କଥା, ଯାହାର ଦୁଇ କଳ ପାଟି ସବୁବେଳେ ଫାଟୁଥିଲା ଆଉ ନଫାଟିବା ପାଇଁ ସେ କଣ ଗୋଟାଏ ଧଳା ମଲମ ଲଗାଉଥିଲା । ଆଜି ସେ ଏଠି ଥାଆନ୍ତା କି, ତାଠୁଁ ମଲମ ଟିକିଏ ନେଇ ଓଠରେ ଲଗାନ୍ତି । ସିଏ ପାଖରେ ଥିଲେ ଆଜି ଏଇ ଅପରାହ୍ଣରେ ବି କିଛିଟା

ଜମି ଯାଆନ୍ତା । ଗୁଡ଼, ତା' କଥା ଛାଡ଼ ଆଜ ଏବେ ପଇସାକର ଲାଭ ନାହିଁ । ସେ ହୁଏତ ତା ଅଫିସ ଫେରନ୍ତା ସ୍ୱାମୀଙ୍କୁ ଲ'ନରେ ଅପେକ୍ଷା କରିଥିବ କମ୍ବା ପୁଅ ଝିଅଙ୍କୁ ଖୁଆଇ ପିଆଇ ସାମନା ସଡ଼କରେ ଟହଲ ମାରୁଥିବ, ଅଥବା ନିଜ ସନ୍ତାନ୍ତର ଡେଙ୍ଗୁଲୁଟାକୁ କେକରେ ପକାଇ ଅତୀତର ସ୍ମୃତି ପଙ୍ଗପାଳ ଗୁଡ଼ାକୁ ହୁରୁଡ଼ ଦେବା ପାଇଁ ବର୍ତ୍ତମାନ ଢ଼ଂ ଢ଼ଂ ବାଡ଼ଉ ଥିବ । ଆଉ ନହେଲା ?

ଓଃ ପୁଣି ଚରମ୍ପେ ଶୀତ ଦେହରେ ଲେସି ହୋଇ ଗଲା । ବାହାରଟା ସେମିତି । ଘୁସ୍ତାଘାଟ ଶୁନ୍‌ଶାନ୍ । ଲୋକବାକ ଗାଡ଼ିଘୋଡ଼ା କାହାର ସୋ ଶବଦ ନାହିଁ । ଶ୍ମଶାନ ଶୂନ୍ୟତା । ଠିକ୍ ତା' ନୁହେଁ, ଏହାକୁ ଏକ ପ୍ରକାର ହ୍ୱକଲ ପଙ୍ଗୁତା କହିଲେ ବରଂ ଯୁକ୍ତିଯୁକ୍ତ ହେବ ।

ତେବେ ମୁଁ ଏବେ କରେ କ'ଣ ? ଯାଏ କୁଆଡେ ?? ଏତେ ବଡ଼ ଡାକବଙ୍ଗଳାରେ ଏକା ବସି ବସି ଏଇ ନପୁଂସକ ପରିବେଶର ମୁକାବିଲା କରିବି କେମିତି ? ନିକମ୍ମା ଭଳି ବସିଥିବି ନା, ପିଲାଟିଏ ଭଳି ଧୂଳିଘର ଖେଳ ତା ଦେହରେ କଟ୍ଟା ଫୁଲ କଟ୍ଟା ପତ୍ର ଦେଇ ସଜାସଜ୍ଜି ଆରମ୍ଭ କରିଦେବି ? ପୁଣି ସେଇ ପ୍ରଶ୍ନ । ଏକା ଏକା କେମିତି ଖେଳିବି ଯେ ! ମୁଁ ସିନା ଯାବତୀୟ ଘରକରଣା ଜିନିଷ ସବୁ ଆଣିଦେବି—ଡାଲି ଚାଉଳରୁ ଆରମ୍ଭ କରି ମସଲା, ମସଲା ସତ୍ତେଇ ପର୍ଯ୍ୟନ୍ତ ହେଲେ ରାନ୍ଧିବ କିଏ ? ନହେଲା ଥାଆନ୍ତା କି ?

ବହୁରୂପୀ ସମୟଟା ବଡ଼ ଫାଜିଲ । କେବେକେବେ ସେ ଆଖି ଆଗରେ ଦର୍ପଣ ହୋଇ ଛିଡ଼ାହୁଏ । ଘଗରେ ମୁହଁ ଫେରାଇ ନେଲେ ବି ହଟରିକ କସମର ନାଲି ନେଳୀ ଧୂପ ଗୁଞ୍ଜି ଛବି ଆଣି ଥୋଇ ଦିଏ, ରଙ୍ଗ ବେରଙ୍ଗ ପ୍ରଜାପତି ଗୁଡ଼ାକୁ ଉଡ଼ାଏ ଆଉ ମନ ଯଦି ମାନି ଯାଇଛି ତାହା ହେଲେ ଦେହମନର ଲୁଚିଛପା ଇଲାକାରେ ହାକମାରି ସୁଡୁକରି ଦେବାକୁ ମୋଟେ ପଛାଏ ନାହିଁ । ଆଉ ଏ କାମ ପାଇଁ ଶୀତ ତା'ର ଏକାନ୍ତ ବୋଲକରା । ଦରକାର ପଡିଲେ ମନର କ୍ଳାନ୍ତିକୁ ଧୋଇ ପୋଛି ସଫା

କଣବଦଏ ଏବଂ କେତେଟା ଉତ୍ତେଜନା, କେତେଟା ଉନ୍ମାଦନା ଫଗୁର କରି ଦନ୍ତୁରା ଗୋବରା ଦେହରେ ବି ଅପୂର୍ବ ବର୍ଣ୍ଣାଳୀର ବିନ୍ୟାସ ଭରିଦଏ ।

କଲେଜ ଜୀବନର ଦୀର୍ଘ ବାଇଶବର୍ଷ ପରେ ମୋର ହଠାତ୍ ନନ୍ଦିତା ସହିତ ଇଷ୍ଟର୍ଣ୍ଣ ଟାଓ୍ୱାର ମାର୍କେଟରେ ସେଦିନ ଦେଖା ହେଲା । ସିଏ ବି ଥିଲା ଆଜି ଭଳି ଗୋଟାଏ ମେଘୁଆ ସନ୍ଧ୍ୟା । ଠିକ୍ ମୋତେ ଯେମିତି ଆଜି ଶୀତ କାମ୍ପି କରୁଛି ସେମିତି ଦି' ପାଞ୍ଚଟା ବୁଢ଼ା ଦରବୁଢ଼ା ରାସ୍ତାରେ ସେଦିନ ସ୍ୱେଦର ଯୋଡ଼ ବା ଦ୍ରୁଇ ହାତକୁ ପକେଟରେ ପୂରାଇ ଉଷୁମ ଟାଣୁଥିଲେ । ଅଥଚ ମୁଁ ଙ୍କ ନନ୍ଦିତା କେହି ମୋଟେ ଶୀତକୁ ଖାତିର କରୁନଥିଲୁ । ଦୀର୍ଘ ଦିନ ପରେ ତା' ସହିତ ସାକ୍ଷାତ୍ ହୋଇ ଥିଲେ ବି ତା ଉପସ୍ଥିତି ହଠାତ୍ ମୋ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରି ନଥିଲା । ଅବଶ୍ୟ ପରେ ତାର ଇଙ୍ଗିତ ଧର୍ମୀ କଥା ବାର୍ତ୍ତାରୁ ମୁଁ ଅନୁଭବ କଲି ଯେମିତି ବାରହେ ବର୍ଷର ଖୋଳପ ଛଡ଼ା ନାଗସାପ ବିଚ୍ଛେଦ କ୍ଳେଶରେ ଘାଏଲା ହୋଇ ମୋ ଚେତନାର ମୂଳାଧାରକୁ ବାର୍‌ବାର ଷ୍ଟ୍ରୋକ ମାରୁଛି । ମୁଁ ତାର ସେଇ ପଦ୍ମତ ଲାରେ ଟାଣି ହୋଇଗଲି । ତା ପରର ସାନ୍ନିଧ ଥିଲା ଆଳାପ, ବିଳାପ, ଅନୁଜ୍ଞା ଅବଜ୍ଞା, ପ୍ରତୀକ୍ଷା ଓ ପ୍ରତିଶ୍ରୁତିର ଗୋଟାଏ ଗୋଟାଏ ଅସଂଲଗ୍ନ କକ୍‌ଟେଲ୍, ଅବଶୋଷର ଗୋଟାଏ ନିର୍ଲ୍ଲ ସ୍ୱୀକାରୋକ୍ତି···ଏକ ବଦ୍ଧ ପାଗଳର ଅଳୀକ ପ୍ରଳାପ ।

ନନ୍ଦିତା···ନନ୍ଦିତା···ନନ୍ଦିତା । ଅଢ଼ଚାଳିଶ ବର୍ଷର ଏଇ ନିଃସଙ୍ଗ ଜୀବନ ମଞ୍ଚ ଉପରକୁ କୌଣସି ଅଭିନେତ୍ରୀ କେବେ ଧାରାବାହିକ ଭାବରେ ନାୟିକା ହୋଇ ଆସିପାରେନି । ନନ୍ଦିତା ବି ଚେଷ୍ଟାକରି ଫେଲ୍ ମାରିଛି । କେବଳ ଗୋଟାଏ ଗେଷ୍ଟ ଆର୍ଟିଷ୍ଟ ଭାବେ ମଞ୍ଚ ପ୍ରବେଶ କରୁକରୁ ଯବନିକା ତଳେ ଲୁଚି ଯାଇଛି । ଏ ବି ତାର ଗୋଟିଏ ପାଗଳାମି । ବିବାହ ବୟସ ଗଡ଼ିଗଲେ କ'ଣ ସବୁ ପୁରୁଷ, ସବୁନାରୀ ଏମିତି ଗୋଟିଏ ଗୋଟିଏ ପାଗଳ ଚରିତ୍ରକୁ ରୂପାନ୍ତରିତ ହୁଅନ୍ତି ?

ଆଚ୍ଛା, ଏ ସଂସାରରେ ଭଲ ଲୋକର ଖୋଳପା ନ ପିନ୍ଧି ପାଗଳ ଭଳି ସାତ ପିଆଁ କଳପୁଳୀ ମାରି ଅଧା ଲଙ୍ଗଳା ରହିଲେ କ୍ଷତି କଣ ?

ମିଛୁମିଛିକା ଆଳାପ ନକରି ନିଛକ ବିଳାପ ଭିତରେ ବୁଡ଼ି ରହିଲେ କେଉଁ ମହାଭାରତ ଅଶୁଦ୍ଧ ହୋଇଯାଆନ୍ତା । ସତରେ ଏ ଶଠତାପୂର୍ଣ୍ଣ ସରସ ସଂଳାପ ଅପେକ୍ଷା ପାଗଳର ଲଗାମହୀନ ପ୍ରଳାପ ବରଂ ଶତଗୁଣରେ ଭଲ । ଉଦ୍ଦେଶ୍ୟ ବିଜଡ଼ିତ ଅଳୀକ ଆଳାପଠାରୁ ସତେ କଣ ସ୍ୱାର୍ଥହୀନ ପ୍ରଳାପ ଶ୍ରେୟ ନୁହେଁ ।

ମନଟା କେମିତି ଲଗାମଛଡ଼ା ହୋଇ ଉଠୁଥାଏ ବହୁ ପ୍ରଶ୍ନ ଓ ପ୍ରତି ପ୍ରଶ୍ନର ପରିଧି ଭିତରେ କିଛି କୂଳ କିନାରା ପାଉ ନଥାଏ । ନିରାଟ ନିଃସଙ୍ଗତାର ଗୁରୁଭାର ଦେହଟାକୁ ଅବଶ କରି ଦେଉଥାଏ । ମନେ ହେଉଥାଏ ଏ ସାମାଜିକତା, ଅଭିଜାତ୍ୟ, ପରଂପରାକୁ ପରିହାର କରି ସନ୍ନ୍ୟାସୀ ହୋଇଯାଆନ୍ତି । ବାବା ଫାବା କିଛି ଗୋଟାଏ ହୋଇ ବାକି ଜୀବନଟାକୁ ଆରାମରେ କଟାଇ ଦିଅନ୍ତି । ସେଠିକି ଭୟ ରହୁଛି—ଭକ୍ତ ମାନଙ୍କର ଘିଅ ଦୁଧ ଦହି ଛେନା ଫଳ ମୂଳରେ ନୈବେଦ୍ୟ ମ ତାଙ୍କ ମାନଙ୍କର ଚିରାଚରିତ ଢଙ୍ଗରଙ୍ଗ—ଏଥିରୁ ମୁକ୍ତ ପାଇବି କିପରି ? ସାଧୁ ବ୍ରହ୍ମଚାରୀଙ୍କ ସଂଖ୍ୟା କ୍ରମେ ବଢ଼ିବ, ଦେଶ ବିଦେଶରେ ମୋର ପ୍ରତିଭା ପ୍ରସାରିତ ହେବ—ମୋ ମଠ ଗୋଟାଏ ଆନ୍ତର୍ଜାତିକ ସ୍ତରର କାରବାର ପୀଠ ହୋଇ ଉଠିବ—ତାପରେ କମିଶନ ବସିବ । ଜେଲ ଯିବି କିମ୍ବା ଜେଲ ଭୟରେ ରାତି ଅଧରୁ ଉଠି ସମସ୍ତ ଚୋରମାଲ ଗଣ୍ଠିଲି ବାନ୍ଧି ସହରର ସୀମାପାର ହୋଇଯିବି ଭକ୍ତ ମାନଙ୍କ ଆଖିରେ ଧୂଳି ପକେଇ ଇତ୍ୟାଦି ଇତ୍ୟାଦି । କେଉଁଠି ହେଲେ ନିସ୍ତାର ନାହିଁ ମୋ ପାଇଁ ସଂସାରୀ ହେବା ଯେପରି କଷ୍ଟକର, ସନ୍ନ୍ୟାସୀ ହେବା ସେମିତି ଅସମ୍ଭବ । ସଂସାରୀ ହୁଏତ ହୋଇ ପାରିଥାନ୍ତି କିନ୍ତୁ ମା' ନାମକ ବିଧବାଟିର ମୁଖାଗ୍ନି ଦେଇ ସରିଲି ପରଠୁ ଆଜି କୌଣସି ଦ୍ୱିତୀୟ ଆକର୍ଷଣ ମୋ ମନରେ ବସା ବାନ୍ଧି ପାରିଲା ନାହିଁ । ମୁଁ ସଂପୂର୍ଣ୍ଣ ମୁକ୍ତ ।

ଏମିତି ଜିଦ୍‌ଖୋର ପ୍ରକୃତିର ପୁନରୁଦ୍ରେକ ହେଲା ବେଳକୁ ଦେଖିଲି ଝଡ଼ ପରି ପଶି ଆସିଲା ପାଗଳୀଟିଏ ଏବଂ ଡ଼ାକ ବଙ୍ଗଳାର ଆମ୍ବଗଛ ତଳେ ଜମେଇ କରି ବସିଗଲା । ମୁଁ କାହିଁକି ନିଜର ଆପାତତଃ ଜଟିଳ ପରିସ୍ଥିତିରୁ ନିଜକୁ ମୁକ୍ତ କରିବାପାଇଁ ତା ପାଖକୁ ଆଗେଇ ଯିବାକୁ ବ୍ୟସ୍ତ

ହୋଇ ଉଠିଲା । ତା ସାଙ୍ଗରେ ପଦେ ଦ'ପଦ କଥାବାର୍ତ୍ତା କଲେ ହୁଏତ ମୋର କେତୋଟି ଜିଜ୍ଞାସାର ସମାଧାନ ହୋଇପାରେ । ସେତେବେଳେ ମୁଁ ଚିନ୍ତା କରି ନଥିଲି ଯେ କେଇ ଘଣ୍ଟା ସେ ପାଗଳୀ ସାଙ୍ଗରେ ଗପସପ କଲେ ଲାଭ ଦାୟକ ହେବ କିମ୍ବା ମୋ ଅଧସ୍ତନ ଅଫିସରଙ୍କ ଚାଟୁବାକ୍ୟ ଅଧିକ ସୁଖରୁଚକ ହେବ । ଜନ୍ ଷ୍ଟୁଆର୍ଟ ମିଲ ନାମକ ସାହେବ ଏଠିଥିଲେ, ସାଙ୍ଗେ ସାଙ୍ଗେ ନିକିତିଟିଏ ଆଣି ଲାଭ କ୍ଷତିର ପରିମାଣ ମାପି ବସନ୍ତେ ଆଉ କେତେ ନିର୍ଦ୍ଦେଶ ଦେବା ଭଙ୍ଗୀରେ କହନ୍ତେ—ଯା' ପାଗଳୀ ଘରକୁ । ତା ଦୁଃଖରେ ପଦେ ଆହା କର !

ପାଗଳୀ ମୋର ନିକଟରୁ ଆହୁରି ନିକଟତର ହୁଅନ୍ତେ ତାର ମାନଚିତ୍ର କ୍ରମଶଃ ସ୍ପଷ୍ଟ ହୋଇ ଉଠିଲା । ବୟସ ତିରିଶ ଭିତରେ । ଫରସା ରଙ୍ଗ । ସଭ୍ୟତାର ପୃଷ୍ଠ ଦେଇ ଆତ୍ମିକତାର ଦର୍ପଣରେ ଦେଖିଲେ ସେ ଯେ ଆଭିଜାତ୍ୟର ନିଖୁଣ ପ୍ରତିମାଟିଏ ହେବ ଏଥିରେ ସନ୍ଦେହ ନାହିଁ । ମୋର ଉପସ୍ଥିତି ତା'ର ବ୍ୟବହାରରେ କୌଣସି ଗୁରୁତର ପ୍ରତିକ୍ରିୟା ସୃଷ୍ଟି ନ କଲେ ବି ମୋ ଆଗରେ ସେ ତା'ର ପିନ୍ଧା ଲୁଗା ଶାର୍ଟ ଓ ଫୁଲପ୍ୟାଣ୍ଟକୁ କାଳୁତ ଟଣା ଟଣି କଲା । ତହିଁରୁ ମୁଁ ଅନୁଭବ କଲି ଯେ ଅଜ୍ଞାତରେ ବି ସେ ତାର ନାରୀତ୍ୱ ସମ୍ପର୍କରେ ଅଚେତନ ନୁହେଁ ।

ତାର ପ୍ରତ୍ୟେକଟି ଅସଂଯତ ଓ ଖଣ୍ଡିତ ସଂଳାପ ଉପରେ ମୁଁ ସଚେତନ ଥିଲି । ଆପାତତଃ କେଇ ମିନିଟ ପାଇଁ ମୋ ମନର ଅହଂ ପୁରୁଷ ସେଇ ନାରୀର ସ୍ୱଗତୋକ୍ତି ଭିତରେ ଗଙ୍ଗାସ୍ନାନ କରିଥିଲା ଓ ମୋ ଭିତରେ ଦସ୍ୟୁ ରତ୍ନାକର ହଠାତ୍ ବାଲ୍ମୀକି ରୂପରେ ଅବତୀର୍ଣ୍ଣ ହୋଇ ମରା ମରାର ସମାଧି ଉପରେ ରାମଚନ୍ଦ୍ରଙ୍କ କମନୀୟ ମୂର୍ତ୍ତି ଅବଲୋକନ କଲା । ମୁଁ ତାର ଅସଲଗ୍ନ ସଂଳାପ ଭିତରୁ ଅନ୍ତର୍ନିହିତ ଯେଉଁ ତଥ୍ୟର ସନ୍ଧାନ ପାଇଛି ତାକୁ ଯଦି ସୁସଜ୍ଜିତ କରି ଏକ ଆଖ୍ୟାୟିକାକୁ ରୂପାନ୍ତରିତ କରାଯାଏ ତାର ପ୍ରାଣ କିମ୍ବା ପ୍ରକାରର ହେବ ।

ଝିଅଟିର ନାଁ ଅମୃତା । ଘର ତାର ହରିଆଣାର ଭିୱାନୀ । ବାପା ମାଆଙ୍କର ଏକମାତ୍ର ଝିଅ । ସ୍ୱାମୀ ତାର ସେଇ ଗାଁର ଜଣେ ଚାଷୀ, ଯେ କି

ସ୍ୱରଷ୍ଟିଅ ଓ ଷନଚୂଅ ମଲ୍ଲପରେ ସେ ଅଷ୍ଟମ ଗର୍ଭରେ ଭୂମିଷ୍ଠ ହୋଇଥିଲା । ତେଣୁ ବାପା ମା ତା ନାଁ ରଖିଲେ କଣନ । ଅମୃତା ନୂଆବୋହୂ ହୋଇ ଆସିଥାଏ । ପ୍ରାୟ ବର୍ଷ ଛ' ମାସ ପରେ ଶାସନ ମହଲରୁ ଏକ ନୂଆ ଧରଣର ସ୍ଲୋଗାନ ଶୁଭିଲା···ଛୁଆ କମ୍, ଗଛ ବେଶୀ । ସ୍ଲୋଗାନର ପ୍ରତିଧ୍ୱନୀରେ କଣନର ଗାଁ ବି ବାଦ ଯାଇ ନଥିଲା । ସେ ନିଜେ ବି ସେଥିରେ ଚହଲି ଯାଇଥିଲା···ପୂରାପୂରି ମାତି ଯାଇଥିଲା । ତା ଜମି ହୁଡ଼ାରେ ଖିଲଖିଲ ହସି ଉଠିଲା କେଇଟି ଛୋଟ ଛୋଟ ଚାରାଗଛ । ତା ଭିଟାମାଟିର ଶରହଦ ଭିତରେ ନୂଆ ଜୀବନର ସଞ୍ଚାର ଘଟିଥିଲା । ନୂଆ ବୋହୂଟି ସେଇ ଛନଛନିଆ ଗ୍ବ ଗଛ ଉପରେ ପାଣି ଢାଳୁଥିଲା ବେଳେ ସ୍ୱାମୀଙ୍କ ସ୍ପର୍ଶର ଦୂରର କଥା ତାଙ୍କ ଗୁଇରେ ବି ଚମକ ଉଠୁଥିଲା, ଗତରାତିର ଅନୁଭୂତିକୁ ମନେ ପକାଇ ।

କିନ୍ତୁ ମାସକ ପରେ ସ୍ଲୋଗାନର ପ୍ରଥମ ପର୍ଯ୍ୟାୟ କାର୍ଯ୍ୟକାରୀ ହେଲା । କେବଳ ପ୍ରବୀଣ ଜନନାୟକମାନେ ନୁହଁନ୍ତି କିମ୍ବା ଯୁବନେତା ନୁହଁନ୍ତି, ପ୍ରତ୍ୟେକ ସରକାରୀ ବେସରକାରୀ ଦପ୍ତରର କର୍ମଚାରୀ ତଥା ବିଭିନ୍ନ ସମାଜ ସେବୀ ଅନୁଷ୍ଠାନର ମୁଖପାତ୍ରମାନେ ମଧ୍ୟ ପରିବାର ନିୟନ୍ତ୍ରଣ ପାଇଁ ଆହ୍ୱାନ ଦେଲେ । ହଜାର ହଜାର ଡାକ୍ତର ନିଯୁକ୍ତି ପାଇଲେ ଏଇ କାମରେ । ଡାକ୍ତରଖାନା ଭ୍ୟାନଠୁ ଆରମ୍ଭ କରି ପ୍ରାଇଭେଟ ବସ ଟ୍ରକ ପର୍ଯ୍ୟନ୍ତ ଦଉଡ଼ିଲା ନାରୀ ପୁରୁଷଙ୍କୁ ଭର୍ତ୍ତି କରି । ଗଛମୂଳ ବି ଠାଏ ଠାଏ ଅପରେସନ ଥିଏଟରରେ ପରିଣତ ହେଲା । ଏଇ ଧାଉଡ଼ି ଭିତରୁ ତିରିଶ ବର୍ଷ ବୟସ୍କ କଣନ ଚନ୍ଦର ଓ ପଚିଶ ବର୍ଷୀୟା 'ଅମୃତା' ବାଦ ଯାଇ ନଥିଲେ । ପରିବାର ନିୟନ୍ତ୍ରଣ ଯୋଜନାର ପଶା ଖେଳରେ କଣନର ପୌରୁଷ ଗୋଟାଏ ସାଧାରଣ ସୋଲଜର ଭଳି ଟଳିପଡ଼ିଲା । ସେ ଦିନ ଅମୃତାର ବିକଳ ବିଳାପ କାହାରି କର୍ଣ୍ଣକୁହରରେ ପ୍ରବେଶ କରି ନଥିଲା କିମ୍ବା ସେଇ ଅଷ୍ଟମ ଗର୍ଭ ସଂଭୂତ ବିଶାଳ ଧ୍ୱସଧ୍ୱସ୍ତ ଯଦୁବଂଶର ନୂଆ ସର୍ଜନା କରିବାକୁ ଯେତେ ବ୍ୟାକୁଳ ମିନତି କଲେ ବି ତାହା କାହାରି ପିତୃ ସୁଲଭ ପ୍ରାଣରେ ରେଖାପାତ କରି ନଥିଲା । ଦିଗନ୍ତ

ସେ ପଟରୁ ବଣୁଥିଲି : ଗୋଟାଏ ଜୀବନ୍ୟମାନ ବାଳସୂର୍ଯ୍ୟର ଅସ୍ତାୟମାନ ବର୍ଣ୍ଣିଛଟା ।

ମୁଁ ସେଇ ସଧବା ପାଗଳୀର ବୈଧବ୍ୟ ଭିତରେ ମାତୃତ୍ୱର ଏକ ମହାଯାତ୍ରା ପର୍ବ ଅବଲୋକନ କରୁଥିଲି ଏବଂ ତା ପ୍ରଳାପର ଛନ୍ଦପତନ ଭିତରେ ନିଜ ପଦୋନ୍ନତି ପାଇଁ ପାଣ୍ଠି ସଂଗ୍ରହ କରିବାକୁ ମୋ ଦପ୍ତରର ସମସ୍ତ କର୍ମଚାରୀଙ୍କୁ ନେଇ ଅଫିସରେ ଆୟୋଜନ କରିଥିବା ଭାଇସେଗ୍ଲୋମୀ ଅପେରାର କନସର୍ଟ ବାଜଣା ଶୁଣୁଥିଲି ।

ମନ୍ତ୍ରୀ ବା ନେତାଙ୍କ ହାତରୁ ଫଳରସ ପିଇ ଅନଶନ ଭଙ୍ଗ କଲା ପରି ଏଇ ପାଗଳୀଟିର ହାତ ଧରି ଶର କୁମାର ବ୍ରତର ଉଦ୍‌ଯାପନ ପର୍ବ ପାଳନ କଲେ କ୍ଷତି କଣ ?

---



# ଯା' ହେବାର ଥିଲା

ରାମଚନ୍ଦ୍ର ମହାନ୍ତି

ଅମରଜିତ୍ ଜନ୍ମଦିନ ହେଲା କେଉଁଠିକୁ ଯାଇଛି ତାର କ'ଣ କିଛି ଖବର ଅଛି ? ବାଇଶି ତେଇଶି ବର୍ଷର ପିଲା ହେଲଣି, ହେଲେ କ'ଣ ବାପ ମାଆଙ୍କ କଥା ଶୁଣୁଛି ? ଦିନେ ନୁହେଁ, ଦି' ଦିନ ନୁହେଁ ଆସି ଜନ୍ମଦିନ ହେଲାଣି ସବୁ ବନ୍ଧୁ ବାନ୍ଧବ, ଚିହ୍ନାଜଣା ଲୋକଙ୍କୁ ଫୋନ ହେଲାଣି ହେଲେ......

ସୁଲତା ଦେବୀ ଲୁହ ଛଳଛଳ ଆଖିରେ ପୁଅ ଅମରଜିତ୍ କଥା ଭାବୁଥିଲେ । ତାଙ୍କର କେଉଁ ଭୁଲ୍ ପାଇଁ ଅମରଜିତ୍ ଆଜି ଏମିତି ଉଦାସୀନ ହୋଇ ରହିଯାଇଛି । ବାପ ମାଆ, ଘରଦ୍ୱାର ଭୁଲି ବାହାରେ ବାହାରେ ରହିଯାଉଛି । ଫଳରେ ଏବେ ମନସ୍ତାପ ଯନ୍ତ୍ରଣାରେ ଛଟପଟ ହେବାକୁ ପଡୁଛି ।

ଅମରଜିତ୍ ଅଧିକାଂଶ ଦିନ କଟକ ଯାଏ । ପୁଣି ରାତିକୁ ଫେରିଆସେ । କଟକ କାହିଁକି ଯାଏ ସେ କଥା ସୁଲତା ଦେବୀ ଅବଶ୍ୟ ଜାଣିଛନ୍ତି । ଅବଶ୍ୟ ଏକଥା ଅମରଜିତ୍ ତା' ବାପାଙ୍କୁ କହି ପାରୁନି କି ସୁଲତା ଦେବୀ ବି କହି ପାରୁନାହାନ୍ତି । ତାଙ୍କ ସ୍ୱାମୀ ଭଗବାନ ବାବୁ ଅମରଜିତ୍‌ର ଏପରି କଟକ

ମିବାଟାକୁ ପସନ୍ଦ କରନ୍ତିନ । ତାଙ୍କ ପରେ ଏତେ ବଡ଼ ଶିଳ୍ପର ଦାୟିତ୍ୱ ନେବାକୁ କେହି ନାହିଁ । ଅମରଜିତ୍ ତାଙ୍କର ଏକମାତ୍ର ପୁଅ । ସେ ସୁଦାନ୍ତ, ଅମରଜିତ୍ ସବୁଦିନ ଯାଇ ତାଙ୍କ ସାଙ୍ଗରେ ବ୍ୟବସାୟ ଦେଖନ୍ତୁ—କାମ ଶିଖନ୍ତୁ ଅନ୍ୟାନ୍ୟ ଶିଳ୍ପସଂସ୍ଥା, ବ୍ୟବସାୟ ପ୍ରତିଷ୍ଠାନ ସହ ସୁସମ୍ପର୍କ ରଖନ୍ତୁ ।

ଅମରଜିତ୍‌ଙ୍କୁ ଏ ସବୁ ଭଲ ଲାଗେନା । ସୁଲତା ଦେବୀ ଦେଖିଛନ୍ତି ଅମରଜିତ୍‌ଙ୍କୁ ଏ କଥା କହିଲେ ସେ ଉଠି ଚାଲିଯାଏ । ସତେ ଯେମିତି ଏତେ ଧନ ସମ୍ପତ୍ତି, କୋଠାବାଡ଼ି, ଗାଡ଼ିରେ ତାର କୌଣସି ଆକର୍ଷଣ ନାହିଁ ।

ଅମରଜିତ୍‌ର ହାବଭାବ ଦେଖିଲେ ମନେହୁଏ ସେ ଯେମିତି ଏକ ନୂତନ ପୃଥିବୀର ସନ୍ଧାନରେ ବାହାରିଛି ଯେଉଁ ପୃଥିବୀରେ ମଣିଷ ଧନର ପ୍ରାଚୁର୍ଯ୍ୟ ଭିତରେ ଚାପି ନ ହୋଇ ନୂତନ ସୃଷ୍ଟିର ସ୍ୱପ୍ନ ଦେଖେ । ଯେଉଁଠାରେ ଧନପାଇଁ ପ୍ରତାରଣା ନାହିଁ, ପ୍ରତିପତ୍ତିପାଇଁ ଛଳନା ନାହିଁ, ଦେଶ, ଜାତି ଓ ଐତିହ୍ୟ ପାଇଁ କଳଙ୍କ ନାହିଁ ।

ତାହେଲେ କଣ ସେ ସ୍ୱପ୍ନ ?—ସୁଲତା ଦେବୀ ଥରେ ଏଇ ପ୍ରଶ୍ନ ଅମରଜିତ୍‌ଙ୍କୁ ପଚାରିଥିଲେ । ଶିଳ୍ପପତି ପିତାଙ୍କ ଉପରେ ଅମରଜିତ୍ ତା' ମନ କଥାକୁ ଗୋପନ ରଖିଥିଲା କିନ୍ତୁ ମାଆର ଅପତ୍ୟ ସ୍ନେହ, ଛଳଛଳ ଆଖି ପାଖରେ ସେ ହାରିଯାଇଥିଲା । କହିଥିଲା—ବୋଉ ! ତୁ ଭୟକରନା ବାପାଙ୍କର ମନରେ ଆଶଙ୍କା ମୁଁ କଣ୍ଟକ ଯାଉଛି ଅର୍ଥ କେଉଁ ଝିଅ ପଛେ ଗୋଡ଼ାଉଛି ବା କେତେକ ଅସାମାଜିକ ଲୋକଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରୁଛି । କିନ୍ତୁ ମୁଁ ଏ ଘରର ମାନ ସମ୍ମାନରେ କଳଙ୍କ ଆଣିବିନି ବୋଉ, ମୁଁ ଯେଉଁ ନୂତନ ପୃଥିବୀକୁ ଖୋଜୁଛି, ତାର ସନ୍ଧାନ ପାଇଲେ ତୁ ଜାଣିବୁ । ଅନ୍ୟ ସମସ୍ତେ ବି ଜାଣିବେ ଏ ଧନସମ୍ପଦ ମୋତେ ମଣିଷ କରିବନି । ମୋର ସେଇ ସାଧନା ସଫଳ ହେଲେ ମୁଁ ମଣିଷ ପରି ମଣିଷଟିଏ ହୋଇପାରିବି ।

କଥାଟା କଣ ଖୋଲି କହିଲେ ଚଳନ୍ତାନି ?

—ମୁଁ ଯାହା କରିବାକୁ ଯାଉଛି ବାପା ତାହା କେବେ ପସନ୍ଦ କରିବେନି ବୋଉ !······

—ବାପାଙ୍କ ଇଚ୍ଛା ବିରୁଦ୍ଧରେ କୌଣସି କାମ କରିବା ତ ଠିକ୍ ନୁହେଁ ଝୋର ।

—କିନ୍ତୁ ବାପାଙ୍କ ମାନସମ୍ମାନ ପ୍ରତିପତ୍ତିରେ ତ ଆଞ୍ଚ ଆସିବନି । ବରଂ ତାଙ୍କର ସୁନାମ ବଢ଼ିବ ବୋଲି ମୋର ଧାରଣା ।

—ଆରେ କଥା କଣ ଖୋଲି କହୁନୁ କାହିଁକି ?

ମୁଁ କଟକରେ ଜଣେ ଭଲ ବନ୍ଧୁଙ୍କ ସନ୍ଧାନ ପାଇଛି । ଠିକ୍ ବନ୍ଧୁ ନୁହେଁ, ଗୁରୁଙ୍କ ସନ୍ଧାନ ପାଇଛି । ବୟସ ମୋ'ଠାରୁ ଅନେକ ବେଶୀ । ପ୍ରାୟ ବାପାଙ୍କ ସମବୟସୀ । କେତେ ଅମାୟିକ ସେ । କେତେ ନିର୍ମଳ, କେତେ ପବିତ୍ର ତାଙ୍କର ହୃଦୟ !

ସେ କଣ କରନ୍ତି ?

ସେ କଣ କରନ୍ତି ମୁଁ ଜାଣିନି, କିନ୍ତୁ କଟକରେ ଗୋଟିଏ ଭଡ଼ାଘରେ ରହୁଛନ୍ତି ଏବଂ ଲେଖାଲେଖି କରୁଛନ୍ତି । କି ଚମତ୍କାର ଚିନ୍ତାଧାରା ତାଙ୍କର ସତରେ । ତାଙ୍କ ଭାଷାରେ, ତାଙ୍କ ଶୈଳୀରେ ମରୁଭୂମିରେ ଫୁଲ ଫୁଟି ହସିବ ।

ତାହେଲେ ସେ ଜଣେ ଲେଖକ ?

'ହଁ ବୋଉ । ତାଙ୍କ ପାଖରେ ମୁଁ ସାଧନା କରୁଛି । ମୋର ବିଶ୍ୱାସ କେବେ ହାରି ଯିବନି । ମୁଁ ବି ତାଙ୍କ ପରି ଜଣେ ପ୍ରତିଷ୍ଠିତ କବି, ଗାଳ୍ପିକ ହେବି । ଏକଥା ବାପାଙ୍କୁ କହିଲେ ବାପା କଣ କେବେ ସମର୍ଥନ କରିବେ । ଏ ପଥରେ ଆଗେଇ ଯିବାକୁ ପ୍ରେରଣା ଦେବେ ?

ସୁଲତା ଦେବୀ ଭଲ ଭାବେ ଜାଣନ୍ତି ତାଙ୍କ ସ୍ୱାମୀ କେବେ ଏ କଥାକୁ ପ୍ରଶ୍ରୟ ଦେବେନି । ଜଣେ ସାହିତ୍ୟିକର ପୁଅ କଣ୍ଟ୍ରାକ୍ଟର ହେବା, ଡାକ୍ତରପୁଅ ବ୍ୟବସାୟୀ ହେବା, କୃଷକର ପୁଅ ଅଭିନେତା ହେବା ବା ବୈଜ୍ଞାନିକର ପୁଅ ପୁସ୍ତକ ବିକ୍ରେତା ହେବା ଅସମ୍ଭବ ନୁହେଁ କି ଅସ୍ୱାଭାବିକ ମଧ୍ୟ ନୁହେଁ । ଯାହାର

ସୁଆଡ଼େ ରୁଚି ବା ଆକର୍ଷଣ ସେ ସେଇ ଆଡ଼କୁ ଟାଣି ହୋଇପିବ । ପୁଣି ପରିସ୍ଥିତି ତାଡ଼ନାରେ ବା ଭୟରେ କିଏ କୁଆଡ଼େ ଗତି କରିବେ, ତାହାର ଭବିଷ୍ୟତ କଣ ହେବ ତାହା କେହି କହି ପାରିବେନି । ଶିଳ୍ପପତିଙ୍କ ପୁଅ ବା ଝିଅ ସାହିତ୍ୟ ପ୍ରତି ଅନୁରକ୍ତ ହେବା ବା ସାହିତ୍ୟ ସେବା କରିବାରେ ଅସ୍ୱାଭାବିକତା କଣ ଅଛି ?

ହଠାତ୍ ସୁଲତା ଦେବୀଙ୍କ ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣି ଅମରଜିତ୍ କହିଲା—ଆଜି ତାଙ୍କ ଶେଷ ଆଶା କଣ ଜାଣିଛୁ ବୋଉ ?

ଏଁ—କଣ ବାପା !

—ସେ ମୋ ଭିତରେ ତାଙ୍କ ଚିନ୍ତାଧାରା, ତାଙ୍କ ଶୈଳୀକୁ ବଞ୍ଚାଇ ରଖିବାକୁ ଚାହାଁନ୍ତି ।

—କିନ୍ତୁ କାହିଁକି ତୋ' ପ୍ରତି ତାଙ୍କର ଏତେ ସ୍ନେହ ?

ମୁଁ ଠିକ୍ ଜାଣେନା ବୋଉ । ଥରେ ଗୋଟିଏ ସାହିତ୍ୟ ସଭାରେ ତାଙ୍କ ସହ ଦେଖା ହେଲା । ନୂଆ ନୂଆ ଲେଖନୀ ଧରିଥାଏ ତ । ପ୍ରତିଷ୍ଠିତ ଲେଖକଙ୍କ ସମ୍ପର୍କରେ ଆସିଲେ କାହିଁକି କେଜାଣି ଛାତି ମୋର କୁଣ୍ଢେ ମୋଟ ହୋଇଯାଏ । ମୁଁ ଯାଇ ତାଙ୍କ ପାଦ ଛୁଇଁ ପ୍ରଣାମ କଲି । ଆଶୀର୍ବାଦ ଭିକ୍ଷା କଲି । ସେ ମୋ' ଆଡ଼କୁ ଚକିତ ଦୃଷ୍ଟିରେ ଚାହିଁଲେ ।

'ମୁଁ ଅମରଜିତ୍ ଆଜ୍ଞା ! କେତେବେଳେ କିମିତି ଲେଖାଲେଖି କରୁଛି । ଆପଣଙ୍କ ଆଶୀର୍ବାଦ ପାଇଲେ······

ସେ ହସି ହସି କହିଲେ—ତମେ ଲେଖକ ହେବ ?

ମନର ଏତେ ବଡ଼ ବ୍ୟଗ୍ରତାକୁ ଏତେ ଶୀଘ୍ର ପ୍ରକାଶ କରିବାକୁ ଭାଷା ପାଉ ନଥିଲି । ସେ କହିଲେ—ବାବା ! ତମର ଇଚ୍ଛା ମହତ୍ କିନ୍ତୁ ଏଥି ପାଇଁ ସାଧନା ଦରକାର । ତା'ଛଡ଼ା ଏଥିରେ ପେଟ ପୋଷିବା ପାଇ ସାମର୍ଥ୍ୟ ମିଳେନା ବରଂ ମନ ଜାଳିବା ପାଇଁ ଇନ୍ଧନ ମିଳେ ।

ସାର୍ ! ମୁଁ ଜଣେ ଶିଳ୍ପପତିଙ୍କ ପୁଅ । ଅନ୍ନଚିନ୍ତା ତ ଆଦୌ ନାହିଁ ।

—କିନ୍ତୁ ବାବା ! ଧନର ପ୍ରାଚୁର୍ଯ୍ୟରେ ଖସି ଯିବାର ଭୟତ ଅନେକ ଥିବ । ତା' ଛଡ଼ା ଏ ଲେଖା ଲେଖି ଅଭ୍ୟାସଟା ବଢିଗଲେ ଘର ଜ୍ବଳନ ଦେଖାଦିଏ ମନରେ···ତାଙ୍କ କଣ୍ଠ ଥରି ଉଠିଲା । ସେ କଣ କହିବାକୁ ଯାଉଥିଲେ କିନ୍ତୁ କହି ପାରିଲେନି ।

ସେଇ ଦିନରୁ ମୁଁ ତାଙ୍କର ଅତି ନିଜର ହୋଇ ଯାଇଛି । ତାଙ୍କ ଘରେ ପ୍ରଥମ ଯେତେବେଳେ ପାଦ ଦେଲି ତାଙ୍କୁ ଯେମିତି ଚୁପଚାପ ଗମ୍ଭୀର ଭାବାବେଶ ଭିତରେ ଦେଖିଥିଲି ଏବେ ଆଉ ସେ ସେମିତି ନାହାନ୍ତି, ସେ ମୋ' ସାଙ୍ଗରେ ପିଲାପରି ଖେଳୁଛନ୍ତି, ବୁଲୁଛନ୍ତି, ହସୁଛନ୍ତି । ବାସ୍ତବିକ ବୋଉ, କବି, ଲେଖକମାନଙ୍କୁ ବୟସ ଆଦୌ ସ୍ପର୍ଶ କରି ପାରେନି । ଚିର ଯୌବନର ଆଭା ତାଙ୍କ ମନରେ ସଦାସର୍ବଦା ଉଦ୍ଭାସିତ ହୁଏ ।

ସୁଲତା ଦେବୀ ଭାବୁଥିଲେ ଏଥିପାଇଁ ଅମରଜିତ୍ ତା ପିତାଙ୍କଠାରୁ ଦୂରେଇ ରହେ । ସାହିତ୍ୟ ପ୍ରତି ତାଙ୍କର ଆଦର ନାହିଁ, ଉତ୍ସାହ ନାହିଁ କି ସମ୍ମାନ ବି ନାହିଁ । ସେ କହନ୍ତି ଅଳ୍ପ ମୂଳଧନ ଖଟାଇ ଅଧିକରୁ ଅଧିକ ଲାଭ କରିବାର ସଫଳତାରେ ଯେଉଁ ତୃପ୍ତି, ଯେଉଁ ଉତ୍ସାହ ମିଳେ ତାହା କଣ ଶୁଷ୍କ ବହିରୁ ମିଳେ ? ଆଶ୍ଚର୍ଯ୍ୟ ଲାଗେ ନିଜ ବ୍ୟବସାୟ ସମ୍ବନ୍ଧୀୟ କାର୍ଯ୍ୟରେ ତାଙ୍କ ଜୀବନ ରୁଟିନ ଏମିତି ଭାବେ ବନ୍ଧା ଯେ ସେଥିରୁ ପାଞ୍ଚ ଦଶ ମିନିଟ କାଢି ଅନ୍ୟ କଥାରେ ମୁଣ୍ଡ ପୂରାଇବାକୁ ପସନ୍ଦ କରନ୍ତିନି । କିନ୍ତୁ ସୁଲତା ଦେବୀଙ୍କର ସାହିତ୍ୟ ପ୍ରତି ଆକର୍ଷଣ ଜନ୍ମଗତ । ସେଇଥିପାଇଁ ସେ ଦିନରାତି କେଉଁ ଲେଖକର ନା କେଉଁ ଲେଖକର ବହିଟିଏ ଧରି ବସିଥାନ୍ତି । ଆଉ ତାଙ୍କ ଶିଳ୍ପପତି ସ୍ୱାମୀ ଏ ଗୁଡ଼ିକ ସହି ପାରନ୍ତିନି । ତାଙ୍କ ମତରେ ସାହିତ୍ୟ ହେଉଛି ଚୋର, ବଦମାସ, ଗୁଣ୍ଡାଙ୍କ ଜୀବନ କାହାଣୀ । କଣ ବା ରୋମାନସ ଅଛି ସେଥିରେ ? ସେ ଭାବନ୍ତି ଏତେ ଟଙ୍କାର ବହି କିଣି ପଢିବା ଯେ କେବଳ ସମୟର ଅପଚୟ ତା' ନୁହେଁ ଅର୍ଥର ଅପଚୟ ମଧ୍ୟ । ଏଇ ମନର ଯେଉଁ ସ୍ୱାମୀଙ୍କ ହାତ ଧରିଛି ତାଙ୍କଠୁ ଯେ ତାଙ୍କ ପୁଅ ଉତ୍ସାହ ପାଇବ, ପ୍ରେରଣା ପାଇବ ସେ କଥା ସେ କେମିତିବା ଚିନ୍ତା କରି ପାରିବେ । ଅମରଜିତ୍ ବି କେମିତି ଆଶା କରିବ ।

ଆଚ୍ଛା ଅମର ! ତୋ ଜବି ଗୁରୁଙ୍କ ନାଆଁ କଣ କହିଲୁ ?

—ଅଜ୍ଞାତ ।

—ଅଜ୍ଞାତ ! ହଁ ଅଜ୍ଞାତଙ୍କର ଅନେକ ଲେଖା ତ ଦେଖିଛି । ଲେଖା ଗୁଡ଼ିକ ବେଶ ଦରଦୀ, ମର୍ମସ୍ପର୍ଶୀ । ବାସ୍ତବରେ ମୁଁ ବହୁତ ଖୁସି ତୁ ତାଙ୍କ ସମ୍ପର୍କରେ ଆସିଛୁ, ଆଚ୍ଛା ତାଙ୍କର ପ୍ରକୃତ ନାଆଁ କଣ ?

ପଚାରିଥିଲି, କିନ୍ତୁ କହିଲେନି । କଥା ପ୍ରସଙ୍ଗରେ ଶୁଣିଛି ତାଙ୍କ ଲେଖା ପ୍ରତି ଆକୃଷ୍ଟ ହୋଇ ଜଣେ ଧନୀ ଝିଅ ତାଙ୍କୁ ଭଲପାଇ ବସିଥିଲା—ସେ ବି ତାଙ୍କୁ ଖୁବ ଭଲ ପାଉଥିଲେ, କିନ୍ତୁ ଧନୀ ଝିଅ ଚାଲିଗଲା ଧନର ପାତ୍ର ଭିତରକୁ—ଧନର ସଂସାର ଗଢିବାକୁ ଆଜି ସେ ସେହି ସ୍ମୃତିକୁ ଓ ନିଜକୁ ଭୁଲିଯିବା ପାଇଁ ନିଜ ନାଆଁର ମୃତ କରି 'ଅଜ୍ଞାତ' ବୋଲି ପରିଚିତ ହୋଇଛନ୍ତି ପାଠକମାନଙ୍କ ପାଖରେ । ତା'ଛଡ଼ା ଏକଥା ପଡ଼ିଲେ ତାଙ୍କ ଆଖି ଜକେଇ ଆସେ, ସେ ବହୁତ ବିଚଳିତ ହୋଇ ପଡ଼ନ୍ତି । ସେଥିପାଇଁ ତାଙ୍କ ଅତୀତ ଜାଣିବା ପାଇଁ ଉତ୍କଣ୍ଠିତ ଥାଇ ବି ମୁଁ ପଚାରି ପାରେନା, ତାଙ୍କ ମନ ଦୁଃଖ ମୁଁ ସହିପାରେନା ।

ତାଙ୍କୁ କେବେ ଆମ ଘରକୁ ଡାକୁନୁ ? ତୋ' ବାପା ସିନା ସାହିତ୍ୟକୁ ଘୃଣା କରନ୍ତି, ସାହିତ୍ୟକମାନଙ୍କୁ ପରଶ୍ରୀକାତର କାପୁରୁଷ କହନ୍ତି କିନ୍ତୁ ମୁଁ ତ ସମ୍ମାନ ଦିଏ ।

ଡାକିଥିଲି କିନ୍ତୁ ମନା କଲେ, କହିଲେ ତୁ ପ୍ରତିଷ୍ଠିତ ହୋଇଗଲେ ମୁଁ ତମ ଘରକୁ ଯିବି ତମ ବାପା ବୋଉଙ୍କୁ ଶୁଭେଚ୍ଛା ଜଣେଇବାକୁ । ମୋ'ସହ ପରିଚିତ ହେଲାପରେ ସେ ମୋ' ଉପରେ ଅନେକ ଭରସା କରିଛନ୍ତି । ମୁଁ ନିଶ୍ଚୟ ତାଙ୍କ ଆଶାକୁ ସମ୍ମାନ ଦେବି, ତାଙ୍କ ପରି ହେବି ।

ତୋର ଯେଉଁ କେତୋଟି ଲେଖା ପତ୍ରପତ୍ରିକାରେ ବାହାରିଛି······

—ସବୁଥିରେ ତାଙ୍କ ଲେଖନୀର ସ୍ପର୍ଶ ଅଛି ବୋଉ, ତାଙ୍କ ଆଶୀର୍ବାଦ ବିନା ଜଣେ ଶିଳ୍ପପତିର ପୁଅ କେବେ କଣ ଲେଖକ ହୋଇ ପାରନ୍ତା!

ତା'ପରେ ଅମରଜିତ ସେଠାରୁ ଚାଲିଯାଇଥିଲା । ସୁଲତା ଦେବୀ ଭାବୁଥିଲେ କିଏ ସେଇ ମହାପୁରୁଷ ଯିଏ ତାଙ୍କ ପୁଅକୁ ପ୍ରତିଷ୍ଠିତ କରିବାକୁ, ମଣିଷ ପରି ମଣିଷଟିଏ କରି ଗଢ଼ି ତୋଳିବାକୁ ଏମିତି ଏକନିଷ୍ଠ । ଅମରଜିତ୍ ତାଙ୍କର ମଣିଷ ହେବ—ଜନ୍ମଜନ୍ମକୁ ନାଆଁ କରିବ । ତା' ବାପା ପରି ଶିଳ୍ପ ଭିତରେ ମଜ୍ଜି ରହି ମାନବିକତାଟାକୁ ଯାନ୍ତ୍ରିକତାର ରୂପ ଦେବନି । ସେ ତାଙ୍କ ଶିଳ୍ପରେ ବୁଡି ରହନ୍ତୁ—ସେ ତାଙ୍କ ଧନ ପ୍ରାଚୂର୍ଯ୍ୟକୁ ପୃଥିବୀର ଶ୍ରେଷ୍ଠ ସମ୍ପଦ ବୋଲି ଭାବି ଆତ୍ମଗର୍ବରେ ମଜ୍ଜି ରହନ୍ତୁ, କିନ୍ତୁ ସୁଲତା ଦେବୀଙ୍କର ସାହିତ୍ୟ ପ୍ରତି ମମତା ଯେମିତି ତାଙ୍କ ରକ୍ତରେ ମିଶି ଯାଇଛି । ସେ ବଞ୍ଚିଥିବା ଯାଏ ରହିବ ଓ ଅମର ବି ତାଙ୍କ ରକ୍ତର ସେହି କଣିକାରୁ ଜନ୍ମ ନେଇଛି ।

ସୁଲତା ଦେବୀଙ୍କ ଅତୀତ ପୁଣି ତାଙ୍କ ମନ ଭିତରକୁ ଚାଲି ଆସିଲା । ଯେଉଁ ଅତୀତକୁ ଦୀର୍ଘ ୨୩।୨୪ ବର୍ଷ ଧରି ଭୁଲିବାକୁ ଚେଷ୍ଟା କରି ଆସିଥିଲେ, ସେ ଅତୀତ ଅମରଜିତ୍ କଥା ଶୁଣିବାପରେ ଆହୁରି ସଜୀବ, ସଚେତ ହୋଇ ତାଙ୍କ ଆଗେ ଛିଡ଼ା ହୋଇଗଲା ।

ମନକୁ ଚାଲି ଆସିଲା ତାଙ୍କ କଲେଜ ଜୀବନ କଥା, ଆଉ ମନକୁ ଚାଲି ଆସିଲେ ପୁଣ୍ୟଶ୍ଳୋକ । ପୁଣ୍ୟଶ୍ଳୋକ ସେତେବେଳକୁ ତା' ଉପର ଶ୍ରେଣୀରେ ପଢୁଥିଲେ । ସେ ଯଦି ଅନ୍ୟ ପିଲାଙ୍କ ପରି ଖାଲି ପଢୁଥାନ୍ତେ ତାହେଲେ ପୁଣ୍ୟଶ୍ଳୋକ ଅନ୍ୟ ପିଲାଙ୍କ ପରି ତା' ପାଖରେ ଅପରିଚିତ ରହି ଯାଇଥାନ୍ତେ । କିନ୍ତୁ ତାଙ୍କର ଏଇ ଲେଖାଲେଖି ଅଭ୍ୟାସଟା ତାଙ୍କୁ ସମସ୍ତଙ୍କ ଠାରୁ ପୃଥକ କରି ଦେଉଥିଲା ଆଉ ତାଙ୍କ ଲେଖାମାନ ପଢ଼ି କେବଳ ସହପାଠିମାନେ ନୁହନ୍ତି ଅଧ୍ୟାପକମାନେ ବି ଚକିତ ହୋଇ ଯାଉଥିଲେ । ପୁଣ୍ୟଶ୍ଳୋକ ପ୍ରତି ସେଥିପାଇଁ ଥିଲା ଆଦର, ଥିଲା ସ୍ନେହ, ଥିଲା ଆନ୍ତରିକତା କିନ୍ତୁ ସେଇ ସ୍ନେହ, ସେଇ ଆନ୍ତରିକତା ଯେ ଦିନେ ମାନସିକ ଦୁର୍ବଳତାରେ ପରିଣତ ହୋଇଯିବ ଆଉ ପୁଣ୍ୟଶ୍ଳୋକଙ୍କ ଅନୁପସ୍ଥିତି ତାଙ୍କ ମନକୁ ଦୁର୍ବଳ ଯନ୍ତ୍ରଣା ଭିତରକୁ ଟାଣିନେବ, ଅସ୍ଥିର କରିବ ଏହା ସେ ଭାବି ନ ଥିଲେ । ଧନର ପ୍ରାଚୂର୍ଯ୍ୟ, ପ୍ରତିପତ୍ତିର ପାଚେରି ଭିତରେ ବନ୍ଦିନୀ ସେ । ସେଇ

ପାରେଖଙ୍କୁ ଡେଇଁ ପୁଣ୍ୟଶ୍ଳୋକ ପରି ଏକ ଗରିବ, ନିଃସ୍ୱର ହାତ ଧରିବାକୁ ମନ ବଳାଇବ ଏ କଥା ବି ସେ ଭାବି ନଥିଲେ ।

କିନ୍ତୁ ମନର ଭାବନା ଭାବନାରେ ରହିଗଲା । ବାପାଙ୍କର ବାଧ୍ୟ ସନ୍ତାନ ହୋଇ ସେ ହେଲା ଶିଳ୍ପପତି ଭଗବାନଙ୍କ ସହଧର୍ମିଣୀ ଆଉ ଶାନ୍ତ, ସରଳ ତାର ମନର ମଣିଷ ପୁଣ୍ୟଶ୍ଳୋକ ଆଖିରେ ଆଖିଏ ଲୁହ ଆଉ ହୃଦସ୍ଥ ଭରା ଦୁଃଖ ନେଇ ହେଲେ ସଂସାରତ୍ୟାଗୀ । କୁଆଡ଼େ ସେ ଗଲେ, କ'ଣ ତାଙ୍କର ହେଲା ସେ ସନ୍ଧାନ ଆଉ କେହି ପାଇ ନାହାନ୍ତି । ଆକସ୍ମିକ ଧୂମକେତୁ ପରି ପୁଣ୍ୟଶ୍ଳୋକ ହେଲେ ଅନ୍ତର୍ଦ୍ଧାନ । ସେ ସତ୍ୟର ଅନୁସନ୍ଧାନରେ, ପୁଣ୍ୟର ଅନୁସଂଧାନରେ ଗଲେ କି ମାନସିକ ଯନ୍ତ୍ରଣା ଆଉ ଅନ୍ତର୍ଦାହକୁ ଭୁଲିଯିବାକୁ ଆତ୍ମହତ୍ୟା କଲେ ସେ ଖବର ବି କେହି ରଖିଲେନି । ପୁଣ୍ୟଶ୍ଳୋକଙ୍କ ଏଇ ସ୍ମୃତି ପ୍ରଥମେ ପ୍ରଥମେ ଯେ ସୁଲତାଙ୍କୁ ବିଚଳିତ, ଶୋକାର୍ତ୍ତ କରି ନ ଥିଲା ତା' ନୁହେଁ କିନ୍ତୁ ୨୩।୨୪ ବର୍ଷ ଭିତରେ ସ୍ମୃତିକୁ ସେ ମନରୁ ପୋଛି ଦେଇ ସାରିଥିଲେ । ଯୌବନର ରଙ୍ଗୀନ ଡେଣା ଛିଡ଼ିଗଲେ ସ୍ମୃତି ସବୁ ଧୀରେ ଧୀରେ ମଳିନ ହୋଇଯାଏ ।

'ହେଇ ପରା ଛୋଟ ବାବୁ ଆସିଲେଣି'—ବୁଢ଼ା ଚାକରଟା ପାଟି କରି ଉଠିଲା ।

ସୁଲତା ଦେବୀଙ୍କ ଭାବନାର ଖିଅ ହଠାତ୍ ଛିଡ଼ିଗଲା । ଚମକି ପଡ଼ିଲେ ସେ, ଅମର ଫେରିଲାଣି । କାହିଁ ? ସୁଲତା ଦେବୀ ଉଠିଗଲେ ଅମର ପାଖକୁ । ଅମରଜିତ୍‌କୁ ଅବାକ୍ ହୋଇ ଚାହିଁ ରହିଲେ ।

ଅମରଜିତ୍ ଅସହାୟ ଭାବେ କାନ୍ଦୁଥିଲା । କାନ୍ଦି କାନ୍ଦି ମୁହଁ, ଆଖି ଶୁଖି ଯାଇଛି । ଗୋରା ଚକଚକ ମୁହଁଟା, ଏମିତି ଶୁଖିଲା ଓ ଅସ୍ୱାଭାବିକ ଦେଖାଯାଉଥିଲା ଯେ ତାହା ଦେଖି କେହି ସହିପାରିବେନି । ସୁଲତା ଦେବୀ ତ ସହଜେ ମାଆ । ପୁଅର ଏ ଅବସ୍ଥା ଦେଖି ତାଙ୍କ ଆଖିରୁ ଲୁହ ଝରିଗଲା । ବିଶିଷ୍ଟ ଶିଳ୍ପପତିଙ୍କ ପୁଅ ଏମିତି ଅସହାୟ ଭାବରେ କାନ୍ଦିପାରେ ଏ କଥା ନ ଦେଖିଲେ କେହି ବିଶ୍ୱାସ କରି ପାରିବେନି ।

ସୁଲତା ଦେବୀ ଅମରଙ୍କୁ କୋଳକୁ ଟାଣି ଆଣି ପଚାରିଲେ—ତୋର କ’ଣ ହୋଇଛି ବାପା ?

ମାଆଙ୍କୁ ଜାବୁଡ଼ି ଧରି ଅମରଜିତ୍ ଆହୁରି ଜୋର୍‌ରେ କାନ୍ଦିବାକୁ ଲାଗିଲା । ଏତେ ବଡ଼ ଦୁଃସମ୍ବାଦକୁ ସେ ଯେ କିମିତି ପ୍ରକାଶ କରିବ ସେ ପାଇଁ ତାର ଭାଷା ନଥିଲା । କାନ୍ଦି କାନ୍ଦି କହିଲା—ମୁଁ ହାରିଗଲି ବୋଉ । ସେ ମୋତେ ଛାଡ଼ି ଚାଲିଗଲେ ।

“କିଏ ?” ବ୍ୟସ୍ତ ଓ ଶଙ୍କିତ ହୋଇ ପଚାରିଲେ ସୁଲତା ଦେବୀ ।

ମୋର ପଥ ପ୍ରଦର୍ଶକ, ମୋ ଜୀବନର ଆଲୋକ, ମୋର ଗୁରୁ କବି ‘ଅଜ୍ଞାତ’ । ବହୁ ଚେଷ୍ଟା କଲି କିନ୍ତୁ ପାରିଲିନି । ମୋ କୋଳରେ ମୁଣ୍ଡ ରଖି ଶେଷ ନିଶ୍ବାସ ତ୍ୟାଗ କଲେ । ଆଜି ତାଙ୍କରି କଥାକୁ ସମ୍ମାନ ଦେଇ ତାଂକ ଶବ ସତ୍କାରାଜାଗାରେ ଦାହ କରି ଆସିଲି । ମୋ’ ହାତରେ ମୁଖାଗ୍ନି ପାଇବେ ଏହାହିଁ ଥିଲା ତାଂକର ଇଛା । ମୋର ଯେମିତି ମନେ ହେଉଛି ବୋଉ ମୁଁ ମୋ’ ନିଜକୁ ଜାଳି ଦେଇ ଆସିଛି ।

ସୁଲତା ଦେବୀ କାନ୍ଦୁଥିଲେ ଆଉ କହୁଥିଲେ — ତୁ ଟିକିଏ ଖବର ଦେଇ ପାରିଲୁନି । ଆହା ! ସେଇ ମହାପୁରୁଷଂକ ଶେଷ ଦର୍ଶନ ମୁଁ ଟିକିଏ କରି ପାରିଲିନି । ଭଗବାନ କେତେ ନିଷ୍ଠୁର ସତେ ।

ବୋଉ ! ତଥାପି ମୁଁ ହାରିଯିବିନି । ତାଂକ ଆଶା ପୂର୍ଣ୍ଣ କରିବି । ମୋ’ ଗୁରୁଙ୍କୁ ମୁଁ ନେଇ ଆସିଛି । ସେ ମୋତେ ପ୍ରେରଣା ଦେବେ । ଅମରଜିତ୍ ଫଟୋଟି ଧରି କାନ୍ଦିବାରେ ଲାଗିଲା—କବି ‘ଅଜ୍ଞାତ’ଙ୍କ ଫଟୋ ।

ସୁଲତା ଦେବୀ ଫଟୋଟି ଦେଖି ଆଉ କୋହକୁ ଚାପି ରଖି ପାରିଲେନି । ଚିତ୍କାର କରି ଉଠିଲେ—ପୁଣ୍ୟଶ୍ଳୋକ ।

ବୋଉ ! ତୁ ତାଙ୍କୁ ଜାଣିଛୁ ?

ସୁଲତା ଦେବୀ କିଛି ଉତ୍ତର ଦେଇ ପାରିଲେନି । ମୂର୍ଚ୍ଛିତା ହୋଇ ପଡ଼ି ଯାଇଥିଲେ । ଅମରଜିତ୍ ଓ ବୁଢ଼ା ଚାକରଟି କିଂକର୍ତ୍ତବ୍ୟ ବିମୂଢ଼ । ନିର୍ବାକ, ନିସ୍ତବ୍ଧ ।

---



# ଧର୍ମଘଟ

**ଅଚ୍ୟୁତାନନ୍ଦ ନାୟକ**

ପ୍ରତ୍ୟୁଷରୁ ଶଯ୍ୟାତ୍ୟାଗ କରିବା ରମଣଙ୍କର ବାବୁଙ୍କର ଏକ ଅଭ୍ୟାସ । କିନ୍ତୁ ଆଜି ଅସମ୍ଭବ ଭାବେ ସେଥିରେ ବ୍ୟତିକ୍ରମ ଦେଖାଦେଲା । ପତ୍ନୀ ରମା ଦେବୀ ସକାଳ ପହରୁ କେତେଥର ଡାକି ଡାକି ଫେରି ଗଲେଣି—ସେଥିକି ତାଙ୍କର ନିଦ୍ରା ନାହିଁ । ରମଣଙ୍କର ବାବୁ ନିଦରୁ ଉଠିଲେ ମଧ୍ୟ ରମା ଦେବୀଙ୍କ ଗଡ଼ଗଡ଼ ଶବ୍ଦର ଆବାଜ ଅବଚେତନ ଅବସ୍ଥାରେ ଶୁଣି ପାଉଥିଲେ । ଗତ ରାତିରେ ଅଫିସରୁ ଫେରିବାକୁ ବହୁତ ଡେରି ହୋଇଥିଲା । ଅଫିସରଙ୍କର ପରିବର୍ତ୍ତନ ହେତୁ ତାଙ୍କୁ ବିଦାୟ ସମ୍ବର୍ଦ୍ଧନା ଦିଆଯିବା ସଙ୍ଗେସଙ୍ଗେ ନୂତନ ଅଫିସରଙ୍କୁ ସ୍ୱାଗତ ସମ୍ଭାଷଣ ଜଣାଇ ଦିଆଯାଇଥିଲା । ଅଫିସର ବଡ଼ବାବୁ ଭାବେ ତାଙ୍କର ଭୂମିକା ଅନ୍ୟମାନଙ୍କ ତୁଳନାରେ ଅଧିକ । ତେଣୁ ଘରକୁ ଫେରିଲାବେଳକୁ ରାତିର ଦ୍ୱିତୀୟ ପ୍ରହର ଅତିକ୍ରମ କରି ଯାଇଥିଲା ।

ଉଠିବାରେ ବିଳମ୍ବ ହେଲେ ମଧ୍ୟ ରମଣଙ୍କର ବାବୁ ମୁହଁଟାକୁ ଧୋଇ ନେଇ ନିତ୍ୟକର୍ମ ସମାପ୍ତ କରିବାକୁ ପ୍ରସ୍ତୁତ ହେଉଥିଲେ । ରମା ଦେବୀ ଆସି ତାଙ୍କ ସମ୍ମୁଖରେ ଦଣ୍ଡାୟମାନା । ହାତରେ ବୋତଲ ଆଉ ବେଗ୍ ।

"ମୁଁ ସକାଳ ହେବରୁ ତୁମକୁ ଦଶଥର ଡାକିଲିଣି—ନିଦ କ'ଣ ତୁମର ଭାଙ୍ଗୁନି ? ଘରେ ଆଜି କିଛିଏ ବୋଲି ସଉଦା ନାହିଁ । ପରିବା ତ ସବୁ କାଲିଠାରୁ ସରିଛି । ବେଳ ଆସି ୯ଟା ବାଜିବାକୁ ବସିଲାଣି । ମୁଁ ପୁଣି ରୋଷେଇ କରିବି କେତେବେଳେ ଯେ ? ନିଅ ! ବଜାରରୁ ଶିଘ୍ର ଏ ଜିନିଷଗୁଡ଼ିକ ନେଇ ଆସିବ ।"

ସକାଳୁ, ସକାଳୁ ଶ୍ରମଣଙ୍କର ବାବୁଙ୍କ ମନଟା ଉଠ ଖୁବ୍ ନିରସ ହୋଇଗଲା । ତାଆଁକୁ ଅଫିସ୍‌ରେ ବଡ଼ବାବୁ, ହେଲେ ବାସ୍ତବ ଜୀବନରେ—

ଶ୍ରୀକଣ୍ଠ କାଳୁ ଚାକିରି ଆସି ହେଲା ୨୫ ବର୍ଷ । ଏହି ୨୫ ବର୍ଷ ମଧ୍ୟରେ ଏଲ୍:ଡ଼ି: ଆସିଷ୍ଟାଣ୍ଟ—ୟୁ:ଡ଼ି: ଆସିଷ୍ଟାଣ୍ଟ ଓ ତା'ପରେ ହେଡ୍ କ୍ଲର୍କ ବା ବଡ଼ବାବୁ । ବଡ଼ବାବୁ—ବଡ଼ବାବୁ ଡାକରେ ଅଫିସ୍ ଫାଟି-ପଡ଼େ । ହେଲେ ବଡ଼ବାବୁଙ୍କର ଦରମା ମାସକୁ ଖାଏନା । ବର୍ଷକୁ ବର୍ଷ ଯେତେ ଦରମା ବଢୁଛି, ନିଅଣ ସେତେ ଅଧିକ ଲାଗି ରହୁଛି ।

ଶ୍ରୀକଣ୍ଠର ପ୍ରଥମ ଅବସ୍ଥାରେ ବରଂ ଟିକିଏ ଭଲରେ କିଛିଦିନ ଚଳି ଯାଉଥିଲେ ଶ୍ରମଣଂକର ବାବୁ । ପ୍ରଥମେ ଯେବେ ସେ ଶ୍ରୀକଣ୍ଠରେ ଗୋଡ଼ ଦେଲେ, ସେ ଥିଲେ ଅବିବାହିତ । ଘରେ ବାପା, ମା' ଆଉ ଭାଇଟିଏ । ବେଶ୍ ଭଲରେ ଚଳି ଯାଉଥିଲେ । ଘରକଥା କିଛି ତାଙ୍କୁ ବୁଝିବାକୁ ପଡୁ ନ ଥିଲା ।

ତା'ପରେ ଆସିଲା ସେହି ବିବାହର ଦିନ । ଯାହା ଜୀବନରେ ଥରେ ଆସେ । ଘରକୁ ବୋହୂ ହୋଇ ଆସିଲେ ରମା ଦେବୀ । ଶ୍ରୀକଣ୍ଠ ଷ୍ଟେସନ୍‌କୁ ରମା ଦେବୀଙ୍କୁ ସେ ନେଇ ଆସିଥିଲେ କିଛିଦିନ ପରେ ।

ସମସ୍ତ କ୍ରମେ ଗଡ଼ିଗଲେ । ବାପା, ମାଆ ଜଣଜଣ କରି ଆଗ ପଛ ହୋଇ ବିଦାୟ ନେଇଯାଆନ୍ତି ଶ୍ରମଣଙ୍କରଙ୍କ ଦୁନିଆରୁ । ସାନଭାଇ ହରି ବାହା-ସାହା ହୋଇ ସେ ତା'ର ଘରସଂସାର କରେ । ଶ୍ରମଣଙ୍କର ବାବୁଙ୍କ ସଂସାର ଧିରେ ଧିରେ ସ୍ଥିତ ଆକାର ଧାରଣ କରେ । ଗୋଟି-ଏରୁ ଦୁଇଟି, ଦୁଇଟିରୁ ତିନିଟି ଏହିପରି ବଢି ବଢି ବର୍ତ୍ତମାନ ପାଞ୍ଚୋଟି କନ୍ୟା ଓ ଦୁଇଟି ପୁତ୍ର ସନ୍ତାନ ରମା ଦେବୀଙ୍କ କୋଳ ମଣ୍ଡନ କରନ୍ତି । ପରିବାରର ସଭ୍ୟ ସଂଖ୍ୟା ବୃଦ୍ଧିକୁ ତାଳଦେଇ ବଜାରରେ ଦରବୃଦ୍ଧି ପ୍ରତିଯୋଗିତା ଆରମ୍ଭ କରିଦିଏ । ତଥାପି ଶ୍ରମଣଙ୍କର ବାବୁ କେବେ ହତୋତ୍ସାହ ହୋଇନାହାନ୍ତି । ପିଲାମାନଙ୍କୁ ଖାଇବା, ପିଇବା, ପାଠ ପଢିବା ଓ ଲୁଗାପଟା କେଉଁଥିରେ କେବେ ଅବହେଳା କରିନାହାନ୍ତି । ହେଲେ ଦିନକୁଦିନ ଆବଶ୍ୟକତାର ମାତ୍ରାଟା ବଢିବଢି ଚାଲିଛି । ସବା ବଡ଼ଝିଅ ଓ ତା' ତଳ ପୁଅ କଲେଜ୍‌ରେ ପଢିଲେଣି । ଅନ୍ୟମାନେ ହାଇ ସ୍କୁଲରୁ ମାଇନର ସ୍କୁଲ ମଧ୍ୟରେ । ସେମାନଙ୍କର ଆଜି ଦରମାଠ କାଲି

ସୁନ୍ଦା; ପଅରଦିନ ଦେଖିଷା ମିସ୍ତ ତା'ପରଦିନ ଆଉ କ'ଣ ?. କାଗଜ, ଖାତା, ବହିପତ୍ର ଓ କଲମ-ପେନ୍‌ସିଲ୍ ଅଦି ଜାହିଁ କେତେ କ'ଣ । କାହାର କଲେଜ ଫ୍ରେସ୍ ତ, କାହାର କାହାର ସ୍କୁଲ ଇଉନିଫର୍ମ । ଏବେ ମେକ୍‌ସି ସ୍କର୍ଟ ଗୁହିଁଲଣି ତ କାହାର ଗାଉନ୍ ଦରକାର । ରାମଶଙ୍କର ବାବୁ ସମୟେ ସମୟେ ଚିନ୍ତାକରନ୍ତି—"ମଣିଷ ଗୋଟାଏ ଟଙ୍କା ଉତ୍ପାଦନ କରିବା ଯନ୍ତ୍ର ହୋଇ ଯାଆନ୍ତା କି !"

ଯେତେ ଯାହାକଲେ ବି ଫାଷ୍ଟ୍‌ନୁଣ୍ଡି ମାସଟି ଚଳିବା ମୁସ୍କିଲ ହୋଇପଡ଼େ । ଆଜ ମାସର ତିରିଶି ତାରିଖ । ଆଉ ଗୋଟିଏ ଦିନ ରହିଲା ମାସ ଶେଷ ହେବାକୁ । ତା'ପରଦିନ ପହିଲା । ଦରମା ମିଳିବା ଦିନ ସଉଦା ସବୁ ସରିଯାଇଛି ବୋଲି ଶୁଣି ରାମଶଙ୍କର ବାବୁ ଏକ-ରକମ ପ୍ରମାଦ ଗଣିଲେ । ଏହି ତିନିଦିନ କପର କ'ଣ କରିବାକୁ ହେବ ? ସହର ବଜାର ଜାଗା । ସବୁତ କିଣିବାକୁ ପଡ଼ିବ । କୌଣସି ଗୋଟିଏ ଜିନିଷ ନ କିଣିଲେ ନ ଚଳେ ।

ରାମଶଙ୍କର ବାବୁ ଆଉ ନିତ୍ୟକର୍ମ ଶେଷକରିବେ କ'ଣ । ପ୍ରଥମେ ରମା ଦେବୀଙ୍କ ତାଲିକାଟି ପଢ଼ିବସିଲେ ।

ଅଟା, ହରଡ଼, ସୋରିଷ ତେଲ, ଜିରା, ଲଙ୍କା, ଆଳୁ ଓ ବାଇ-ଗଣ ଇତ୍ୟାଦି ।

ଏତେଗୁଡ଼ାଏ ଜିନିଷ ମାସ ନ ସରୁଣୁ ସରିଗଲା ?

"ହେ ଶୁଣୁଛ ! ମାସ ସରି ନାହିଁ । ତୁମର ଏତେଗୁଡ଼ାଏ ଜିନିଷ କିଅଣ ପଡ଼ିଲା କେମିତି ? ସୋରିଷ ତେଲ ପରା ୩ କେ.ଜି: ଆସିଥିଲା !" ରାମଶଙ୍କର ବାବୁ ରମା ଦେବୀଙ୍କୁ ଡାକି ପଚାରିଲେ ।

"ମଲା ! ମୁଁ କ'ଣ ଖାଇଗଲି କି ? ତୁମ ଘରେ କ'ଣ କମ୍ ଲୋକ ଖାଇବାକୁ ହେଲେଣି ? ତାହାଛଡ଼ା ଘରକୁ ତ ଅଧିକାଂଶ ସମ-ୟରେ ବାହାର ଲୋକ ଆସୁଛନ୍ତି । ଜିନିଷ ସବୁ ସରିବ ନାହିଁ ଇଲ୍ଲିବ କେମିତି ?" ଭିତରୁ ଥାଇ କହିଲେ ରମାଦେବୀ ।

ଆଉ କେଣିକିଛି କହିବା ଉଚିତ ମନେକଲେ ନାହିଁ ରାମଶଙ୍କର ବାବୁ । ଜିନିଷ ତ ସରିଛି ଆଣିବାକୁ ହେବ । ପାଇକର ଲୋଭ ବା କ'ଣ ମିଳିବ ? ତିନିଦିନ ପାଇଁ ଏହି ଜିନିଷଗୁଡ଼ିକ କିଣିଲେ ଅନ୍ତତଃ କମ୍‌ରେ ଟ ୫୦-୦୦ ଦରକାର । ପଇସା ତ ଗୋଟିଏ ବି ନାହିଁ । ପକେଟ

ଅଣ୍ଡାଳଲେ ରାମଶଙ୍କର ବାବୁ । ଅଫିସ୍ ଫେସ୍ବାଭଜଏଲ୍ ଟଙ୍କାରୁ, ମାତ୍ର ପନ୍ଦରଟି ଟଙ୍କା ବଳିପଡ଼ୁଛି । "ଯାହାହେଉ ଆଜ ଦିନକ ଚଳିଯାଉ— ପରେ ଯାହାହେବ ଦେଖାଯିବ" ମନେମନେ କହିଉଠିଲେ ରାମଶଙ୍କର ବାବୁ । ଏଥିମଧ୍ୟରେ ଗୃ' ତିଆରି କରି ରମାଦେବୀ ବଡ଼ଝିଅ ହାତରେ ପଠାଇ ଦେଇଛନ୍ତି । ଗୃ' କପ୍‌ଟିକୁ ପିଇଦେଇ ସାଇକେଲ୍ ଧରି ବଜାର ବାହାରିଗଲେ ରାମଶଙ୍କର ବାବୁ ।

ପୁରୁଣା କେଉଁ ଅମଳର ସାଇକଲ୍‌ଟାକୁ ପେଡ଼ାଲ ପରେ ପେଡ଼ାଲ ମାରି ଗ୍ଲଲଥିଲେ ସେ । ସାଇକଲରେ ଦିନେ ଯେ କଣ ଗୋଟାଏ ରଙ୍ଗ ଥିଲା, ତାହା ବୋଧହୁଏ ଆଜିକାଲି ଆଉ କାହାରି ମନେ ନାହିଁ । ଲୁହାର ଓରିଜିନାଲ୍ ରଙ୍ଗ ସହିତ ସାଇକେଲ୍‌ର ରଙ୍ଗ ସମାନ ହୋଇଯାଇଛି । ସେଥିକି କିନ୍ତୁ ରାମଶଙ୍କର ବାବୁଙ୍କ ଲକ୍ଷ୍ୟ ନ ଥାଏ । ତାଙ୍କର ଗୋଟାଏ ବଡ଼ ଗର୍ବ ଯେ ସାଇକଲ୍‌ଟା ତାଙ୍କର ଓରିଜିନାଲ୍ ଇଂଲିସ୍ ରାଲେ । ଆଜିକାଲି ତ ଏପରି ସାଇକଲ ମିଳିବ ନାହିଁ । ମିଳିବାତ ଦୂରର କଥା ଦେଖିବାକୁ ବି ସ୍ୱପ୍ନ । ସେ କିନ୍ତୁ ଇଂଲିସ ରାଲେ ସାଇକଲ୍‌ଟାଏ ରଖି ପାରିଛନ୍ତି । ଅବଶ୍ୟ କେତେଶହ ଥର ଯେ ସାଇକେଲ୍‌ଟି ରିପେୟାର ହେଲଣି ତା'ର ଇୟତା ନାହିଁ । ଆଉ ଅଧିକାଂଶ ଥର କୌଣସି ନା କୌଣସି ପାର୍ଟସ ଲାଗିଥାଏ ଏବଂ ତାହା ହେଉଛି ପୁରାପୁରି ସ୍ୱଦେଶୀ । ଅର୍ଥାତ୍ ମେଡ୍ ଇନ୍ ଇଣ୍ଡିଆ । ଏକଥାକୁ ରାମଶଙ୍କର ବାବୁ ନଜର ଦେଇ ନ ଥାନ୍ତି ।

ଏତିକବେଳେ ରାମଶଙ୍କର ବାବୁଙ୍କ ପାଖଦେଇ ରିକ୍‌ସାରେ ମାଇକ୍‌ଟିଏ ପ୍ରଗ୍ଲର କରିକରି ଗ୍ଲଲିଯାଉଥାଏ—

"ଭାଇମାନେ ! ସ୍ଥାନୀୟ କଲେଜ୍‌ର ଛାତ୍ରମାନେ ସେମାନଙ୍କର ଦାବିଦାବା ନେଇ ଧର୍ମଘଟ କରିଛନ୍ତି । ଏଥିପାଇଁ ଆଜି ଏ ସହରର ସର୍ବତ୍ର 'ବନ୍ଦ' ପାଳନ କରାଯିବ । କୌଣସି ଦୋକାନ, ବଜାର ଓ ହୋଟେଲ୍ ଆଦି ଖୋଲାଯାଇ ପାରିବନାହିଁ । ଯଦି ଭୁଲବଶତଃ କେହି କେହି ସେମାନଙ୍କର ଦୋକାନ ବଜାର ଖୋଲି ଦେଇଥା'ନ୍ତି, ଏହି ଘୋଷଣା ଶୁଣିବା ମାତ୍ରେ ବନ୍ଦ କରିଦିଅନ୍ତୁ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଏକ ବିରାଟ ଛାତ୍ରବାହିନୀର ପଟୁଆର ଏହି ସହର ପରିକ୍ରମା କରିବ ।"

ଏତାଦୃଶ ଘୋଷଣା ଶୁଣିଲା ପରେ ପରେ ରାମଶଙ୍କର ବାବୁଙ୍କ ଅକଲ ଗୁଡ଼ୁମ୍ । ସତକୁ ସତ ଦେଖାଗଲା ଯେ ଦୋକାନ-ବଜାର ସବୁ

ବନ୍ଦ । ଯେଉଁ ଅଳ୍ପ କେତୋଟି ଦୋକାନ କାଁ-ଙ୍ଗ ଖୋଲିଥିଲା ଏଣ୍ଟି ମାଇକ୍ ପ୍ରଚାରର ଶୁଣିଲା ପରେ ପରେ ଧଡ଼ାଧଡ଼୍ ବନ୍ଦ କରିଦେଲେ । ସବୁଠାରେ ଛାଟି-କବାଟ ପଡ଼ିଗଲା ।

କ'ଣ କରିବେ ? ରାମଶଙ୍କର ବାବୁ ମହା ଚିନ୍ତାରେ ପଡ଼ିଗଲେ । ଘୂରିଆଡ଼େ ବୁଲିବୁଲି ଖୋଜିବାକୁ ଲାଗିଲେ କାଳେ କେଉଁଠି ଦୋକାନ-ଟିଏ ଖୋଲା ରହି ଯାଇଥିବ । କାହିଁ କେଉଁଠି ହେଲେ ବ ଆଖିରେ ପଡ଼ୁନାହିଁ । ରାମଶଙ୍କର ବାବୁ ଯାଇ କେତୋଟି ଦୋକାନୀଙ୍କୁ ଦୋକାନ ଖୋଲିବାକୁ ଅନୁରୋଧ କଲେ । ହେଲେ କିଏ ଶୁଣୁଛି ? ଆଜି ଯିଏ ବା ଶୁଣିଲେ କଲେଜ୍ ପିଲାମାନଙ୍କ ଭୟରେ ଦୋକାନ ଖୋଲିବାକୁ ସୋଜାଠୋକ୍ ମନା କରିଦେଲେ । ଭୟ ନାହିଁ କାହାର ?

ବାଘର ତ ପୁଣି ଫାଗକୁ ଭୟ । ଦୋକାନ ଖଣ୍ଡି ଲୁଟ୍ ହୋଇ-ଗଲେ, ସବୁ ସରିଗଲା । ଖାଲି କ'ଣ ନେଇବେ ? ଆପତ୍ତି ଓଜର କଲେ କିଛି ଗୋଟାଏ ଉତ୍ତମ ମଧ୍ୟମ ହୋଇଯିବା ବ ବଡ଼କଥା ନୁହେଁ ।

"ଆଲୋ ସଖି ! ଆପଣା ମହତ ଆପେ ରଖି ।" ରାମଶଙ୍କର ବାବୁ ଏପାଖ ସେପାଖ ହୋଇ ବଜାରଟା ସାରା ଘୂରି ବୁଲୁଛନ୍ତି । ହଠାତ୍ ଗୋଟାଏ ଦୋକାନର ପଛ କବାଟ ଅଳ୍ପ ଟିକିଏ ଖୋଲିଥିବାର ନଜରରେ ପଡ଼ିଲା । ଧାଇଁଲେ ତରତର ହୋଇ । ଦୋକାନୀଟି ରାମ-ଶଙ୍କର ବାବୁଙ୍କ ହାତକୁ ଧରି ଦୋକାନ ଭିତରକୁ ଟାଣିନେଇ ଭିତର ପଟୁ କବାଟ ବନ୍ଦ କରିଦେଲା । ରାମଶଙ୍କର ବାବୁ ଗୋଟାଏ ନିଶ୍ୱାସ ମାରିଲେ । ଦୋକାନୀ ରାମଶଙ୍କର ବାବୁଂକ ହାତରୁ ଲିଷ୍ଟଟି ନେଇ ଜିନିଷ ସବୁ ଓଜନ କରି ଦେଇଦେଲା । ଯେତେବେଳେ ସେ ସଉଦା-ଗୁଡ଼ିକର ଦର ପକାଇଲା, ରାମଶଂକର ବାବୁଂକ ଆଖି ତ କପାଳକୁ ଉଠିଗଲା । ସୋରିଷ ତେଲ କିଲୋଗ୍ରାମ ପ୍ରତି ଟ ୨୨-୦୦, ହରଡ଼ କିଲୋଗ୍ରାମ ପ୍ରତି ଟ ୭-୦୦, ଆଳୁ କିଲୋଗ୍ରାମ ପ୍ରତି ଟ ୩-୦୦ ଇତ୍ୟାଦି ଏହିପରି ସବୁର ଦର ଅତି ଅଧିକ ।

"କହୋ ବାବୁ ! ଏ କ'ଣ ? ଏତେ ଏତେ ଦର କ'ଣ ପକା-ଉଛ ?" ରାମଶଂକର ବାବୁ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ ଦୋକାନୀକୁ ।

ଟିକିଏ ହସିଦେଲା ଦୋକାନୀଟି ହିଃ ହିଃ ହିଃ । ଆପଣ ଆଜ୍ଞା ପୁରୁଣାଲୋକ ହୋଇ ଏତିକ ଜାଣିପାରୁ ନାହାନ୍ତି ? ଆଜି ମାର୍କେଟ ବନ୍ଦ ।

ସବୁ ଜନଷର ଷ୍ଟକ୍ କମ୍ ଅଛି । ବଜାରରେ ଘଡ଼ ଚଢିଯାଇଚି । ନହେଲେ ମୁଁ କଣ ସୋରଷ ତେଲ ଟ ୧୮-୦୦ ବଦଳରେ ଟ ୨୨-୦୦ ଓ ହରଡ଼ ଟ ୫-୦୦ ବଦଳରେ ଟ ୭-୦୦ ଆଦ ନେଇଥାନ୍ତି ? ଏଥିରେ ଆମର ଆଉ କ'ଣ କରିବାର ଅଛି ।

ରାମଶଂକର ବାବୁଂକର ଆଉ କହିବାର କିଛି ନଥିଲା । କାନମୁଣ୍ଡ ଆଉଁସି ସଉଦାତକ ବ୍ୟାଗ୍‌ରେ ଭର୍ତ୍ତିକରି ଦୋକାନୀକୁ ପନ୍ଦରିଟି ଟଂକା ଦେଲେ । ଅବଶିଷ୍ଟ ଟଂକା ବାକି ରହିଲା ବୋଲି କହିଲେ । ଦୋକାନୀଟି ଚାଲାକ ଲୋକ, ସେ ରାଜି ହୋଇଗଲା । ରାମଶଂକର ବାବୁଂକୁ ହାର ଖୋଲିଦେଲା । ସେ ତାଂକ ସାଇକେଲରେ ବେଗ୍ ଟଙ୍ଗାଇଲେ । ଏତିକିବେଳେ ଆଉଜଣେ ଲୋକ ତରତର ହୋଇ ସେହି ଦୋକାନ ଭିତରକୁ ପଶିଗଲେ । ମନସ୍ତାପ ମଧ୍ୟରେ ବି ହସିଦେଲେ ରାମଶଂକର ବାବୁ । ଯାଆରେ ପୁଅ ! ଭିତରକୁ ଯାଆ । ଅଖା ଧୋଉଥିବୁ, ଗୁଣ ଖାଉଥିବୁ—ମନେମନେ କହି ସାଇକେଲ ଚଢ଼ିଲେ ରାମଶଂକର ବାବୁ ।

ଘର ଦୁଆରମୁହଁରେ ଯାଇ ସାଇକେଲରୁ ଓହ୍ଲେଇ ପଡ଼ି ଦେଖିଲେ—ରିକ୍‌ସାଟିଏ ଛିଡ଼ା ହୋଇଛି । କିଏ ଆଉ ଆସିଲା ରିକ୍‌ସାରେ ସକାଳୁ ସକାଳୁ ? ମନେମନେ ଚିନ୍ତା କରୁଥିଲେ ରାମଶଂକର ବାବୁ । ରିକ୍‌ସାବାଲାର ନିକଟବର୍ତ୍ତୀ ହୋଇ ତାକୁ ନମ୍ରକଣ୍ଠରେ ପଚାରିଲେ—

"ଆରେ ହେ ! ରିକ୍‌ସାରେ କିଏ ଆସିଛନ୍ତି ?"

'ଆଜ୍ଞା ! ବାବୁଆଣୀ ଆଉ ପିଲାମାନେ ସବୁ ଆସିଛନ୍ତି । ସେମାନଙ୍କୁ ତ ମୁଁ ଜାଣେ ନାହିଁ ।

କେଉଁଠାରୁ ଆସିଲେ ସେମାନେ ? କୁଆଡ଼େ ଗଲେ ?"

"ବସ୍ ଷ୍ଟାଣ୍ଡରୁ ଆସିଲେ । ଏହି ଘର ଭିତରକୁ ଯାଇଛନ୍ତି । ମୁଁ ପଇସା ପାଇନାହିଁ ଯେ ଅପେକ୍ଷା କରିଛି ।" କହିଲା ରିକ୍‌ସାବାଲା । ରାମଶଙ୍କର ବାବୁଙ୍କୁ ଜାଣିବାକୁ ଆଉ ବାକି ରହିଲା ନାହିଁ ଯେ ସକାଳୁ ସକାଳୁ କେଉଁ କୁଣିଆ ସପରିବାରେ ଆସି ପହଞ୍ଚିଗଲେଣି ବୋଲି । ଏତିକିବେଳେ ପେଣ୍ଟ-ସାର୍ଟ ପିନ୍ଧା ଜଣେ ଯୁବକ ଘର ଭିତରୁ ବାହାରି ଆସି ରିକ୍‌ସାବାଲାଟିକୁ ଭଡ଼ା ବାବଦ ପଇସା ଦେଲା । ରିକ୍‌ସାବାଲାଟି ରିକ୍‌ସା ନେଇ ଚାଲିଗଲା ।

ରାମଶଙ୍କର ବାବୁ ମହା ଅଡୁଆରେ ପଡ଼ିଲେ । କାହିଁ ଏ ଯୁବକଙ୍କୁ ତ କେବେ ଦେଖିଲା ପରି ମନେ ପଡୁନାହିଁ ! ତେବେ କିଏ ସବୁ

ଏମାନେ ? ଘର ଭିତରକୁ ସଉଦା ବେଗ୍ ନେଇ ପଶିଗଲେ ସେ । ପତ୍ନୀ ରମାଦେବୀଙ୍କ ନିକଟରେ ବସିଛନ୍ତି ଜଣେ ତାଙ୍କର ସମବୟସୀ ଭଦ୍ର ମହିଳା । ଗୌରବର୍ଣ୍ଣା-ସାଧାରଣ ସ୍ୱାସ୍ଥ୍ୟ-ଗଠନଟି ମନ୍ଦ ନୁହେଁ ।

ରମାଦେବୀ ସଙ୍ଗେସଙ୍ଗେ କହି ଉଠିଲେ—"ଏ ମୋର ହାଇସ୍କୁଲ ବେଳର ପଢ଼ା ସାଙ୍ଗ 'ନମିତା' । ଏ ପିଲା ଦୁଇଟି ତା'ର ପୁଅଝିଅ ବୁଲୁ ଓ ଟୁନି । ଆଉ ସେ ତା'ର ସାନଭାଇ ରମେଶ ।"

ନମିତା ଦେବୀ ସଙ୍ଗେସଙ୍ଗେ ହାତ ଉଠାଇ ନମସ୍କାର କଲେ । ରମେଶ, ବୁଲୁ ଓ ଟୁନି—ସେମାନେ ବି ନମସ୍କାର କଲେ । ସୁମଣଙ୍କର ବାପାଙ୍କ ହାତ ଆପେଆପେ ଉଠିଗଲା ପ୍ରତି ନମସ୍କାର କରିବାକୁ । ତାପରେ ସେ ତାଙ୍କ ରୁମ୍‌କୁ ଚାଲିଗଲେ ।

ସଉଦା ବେଗ୍‌ଟି ସେପଟେଇ ଘରକୁ ନେଇ ରଖିଦେଇ ଆସି ରମାଦେବୀ ସୁମଣଙ୍କର ବାପାଙ୍କ ପାଖରେ ଆସି ଫୁସ୍‌ଫାସ୍ ଚୁପିଚୁପି କରି କହିଲେ, "ଶୁଣୁଛ ! ଖାଲି ଆଳୁ, ଡାଲିରେ ସାଧା ତରକାରି କରି କ'ଣ ଏମାନଙ୍କୁ ଖାଇବାକୁ ଦେବା ?"

"ଆଉ କ'ଣ ଦେବ-ଦେଉନାହିଁ । ମୁଁ କ'ଣ ମନାକରୁଛି ।"

"ମୁଁ କ'ଣ ଅଉ ଦେବ ? ତୁମେ ଆଣିଲେ ସିନା । କେତେଦିନରୁ ସାଙ୍ଗଟାଏ ପ୍ରଥମ କରି ଆସିଛି । କ'ଣ ସେ ଭାବିବ ମନରେ ? କଲେଜ ପିଲା ସବୁ କୁଆଡ଼େ ଧର୍ମଘଟ କରିଛନ୍ତି ଯେ ବସ୍, ଟେକ୍‌ସି ସବୁ ଏଠି ବନ୍ଦ । ସେମାନେ ତ ଜାଣିନାହାନ୍ତି ଏକଥା । ବାଲେଶ୍ୱରରୁ କଟକ ବସ୍‌ରେ ତାର ସ୍ୱାମୀ ପାଖକୁ ଯାଉଥିଲା ନମିତା । ବାଟରେ ଭଦ୍ରକରେ ଏହି ଅବସ୍ଥା । ବସ୍ ବନ୍ଦ । କ'ଣ କରିବ ବିଚାରି ? ବହୁତ ସମୟ ଏପାଖ ସେପାଖ ହୋଇ ଶେଷରେ ବାଧ୍ୟ ହୋଇ ଆମ ଘରକୁ ଆସିଲା । ଆମର ଚିହ୍ନା-ଜଣା ବୋଲି ଆସିଲାନା—ଆଉ କାହିଁ କାହା ଘରକୁ ଗଲାନାହିଁ ?

"ଆରେ, ବଡ଼ ଆଶ୍ଚର୍ଯ୍ୟ କଥା ! ମୁଁ କ'ଣ ମନାକଲି ଆସିବାକୁ ?"

"ମୁଁ କ'ଣ କହୁଥିଲି କି ମାଛଟେ,ଯାଇ ଆଣିଥାନ୍ତ । ମାଛ ତରକାରି-ଟାଏ ନ ହେଲେ ଭଲ ହେବନାହିଁ ।" ରମାଦେବୀ ସାଉଁଳେଇ କରି କହିଲେ । "ତମେ ଏହିକ୍ଷଣି କଲେଜ ପିଲାଙ୍କ 'ଧର୍ମଘଟ' କଥା କହୁ-ଥିଲନା ?" "ହଁ ତ ।" "ଆଜି ସେଥିପାଇଁ ଦୋକାନ ବଜାର ସବୁ ବନ୍ଦ୍ । ଏତିକ ସଉଦା ଆଣିବା ପାଇଁ ମୁଁ ଯେତେ ହଇରାଣ ହେଲିଣି ଆଉ କେତେ ଅଧିକ ପଇସା ଦେଇଛି, ସେକଥା ମୁଁ ଜାଣେ ।" ଅଉ

ତାହାଲେ କ'ଣ କରିବା ଯେ ?" ମୁହଁଟି ଶୁଖାଇ କହିଲେ ରମାଦେବୀ । "କ'ଣ ଆଉ କରିବ ? ମାଛତ ମିଳିବା ସମ୍ଭବ ନୁହେଁ । ତା' ଛଡ଼ା ମୋ ପାଖରେ ବି ଆଜ ଗୋଟିଏ ବୋଲି ପଇସା ନାହିଁ, ମାଛ ଆଣିବି ବା କେମିତି ?"

ମୂରୁକ ହସି ରମାଦେବୀ କହିଲେ—"ମୋ ପାଖରେ ଦଶଟା ଟଙ୍କା ଅଛି ନେଇଯାଅ ! ଯେମିତିହେଉ ଗୋଟାଏ ମାଛ ନେଇଆସିବ ।' ତରତର ହୋଇ ଘର ଭିତରକୁ ଚାଲିଗଲେ ସେ ।

ରାମଶଙ୍କର ବାବୁ କିନ୍ତୁ ଭାବୁଥିଲେ ଏହି କଲେଜ ପିଲଙ୍କ ଧର୍ମଘଟ କଥା । 'କଣ' ବା ଏମାନେ ଧର୍ମଘଟ କରି ଦାବୀ ହାସଲ କରିବେ ? ଧର୍ମଘଟ-ହରତାଳ-ବନ୍ଦ ଏସବୁ ଦ୍ୱାରା ସମାଜର ଯେ କେତେ ଅପକାର ହେଉଛି, ତାହା କେହି ହିସାବ ରଖୁନାହିଁ । ମୁନାଫାଖୋର, କଳାବଜାରୀମାନେ ଫାଇଦା ଉଠାଉଛନ୍ତି । ଉତ୍ପାଦନ ବାଧା ପାଉଛି । ଦରିଦ୍ର ଶ୍ରମିକ ବେକାର ହୋଇ ଉପବାସ ରହୁଛି । ଆଉ ଆମ ପରି ଲୋକତ ଅସୁବିଧା ଭୋଗ କରିବ ହିଁ କରିବ ।

ଏହି ସମୟ ମଧ୍ୟରେ ରମାଦେବୀ ଦଶ ଟଙ୍କାର ନୋଟ ଖଣ୍ଡିଏ ରାମଶଙ୍କର ବାବୁଙ୍କ ହାତରେ ଦେଲେ । ରାମଶଙ୍କର ବାବୁ ପୁଣି ସାଇ-କଲ ଧରି ବଜାରକୁ ଚାଲିଲେ ।

ମାଇକ୍‌ଟିଏ ଦୂରରୁ ଚିତ୍କାର କରୁଥିଲା—"ଆଜି ସନ୍ଧ୍ୟାରେ ଗାନ୍ଧୀ ପଡ଼ିଆଠାରେ ଏକ ବିରାଟ ସାଧାରଣ ସଭାର ଆୟୋଜନ ଧର୍ମଘଟକାରୀ ଛାତ୍ରମାନଙ୍କ ପକ୍ଷରୁ କରାଯାଇଛି । ଏଥିରେ ପୌରହିତ୍ୟ କରିବେ ଆମ ବିଧାନସଭାର ବିରୋଧି ଦଳ ନେତା ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଜଗଦେବ ଏବଂ ମୁଖ୍ୟ ବକ୍ତା ଭାବେ ଯୋଗଦେବେ ସ୍ଥାନୀୟ ବିଧାନ ସଭା ସଦସ୍ୟ ଶ୍ରୀଯୁକ୍ତ ବିଜୟ ଦାଶ ।"

କିଏ ବୁଝୁଛି—ସମାଜର ବର୍ତ୍ତମାନ ଗତି କୁଆଡ଼େ ? ଦେଶର ଅବସ୍ଥା କ'ଣ ? ଆଃ କି ଶୋଚନୀୟ ପରିସ୍ଥିତି ।

"ରାଜନୀତି—ଧର୍ମଘଟ, ଧର୍ମଘଟ—ରାଜନୀତି"

ରାମଶଙ୍କର ବାବୁଙ୍କ ମନଟା ବିଷାକ୍ତ ହୋଇ ଉଠୁଥିଲା ।

●



# ଗହ୍ୱର

• ମାନସୀ ଦାସ

ଉଚ୍ଚ ସରକାରୀ ମହଲରେ ସୁନାମ ଅର୍ଜନ କରିଥିବା ଦକ୍ଷ ଆଇ.ଏ.ଏସ୍. ଅଫିସର ପ୍ରାର୍ଥ ସାମନ୍ତରାୟଙ୍କର ଉଚ୍ଚ ଶିକ୍ଷିତା ପତ୍ନୀ ମାଳବିକା ସାମନ୍ତରାୟ । ଏତେ ବଡ଼ ଅଫିସରର ସ୍ତ୍ରୀ ଅଥଚ ଟିକିଏ ହେଲେ ଗର୍ବ ନାହିଁ । ସ୍କୁଲ୍, କଲେଜ ବେଳର ସାଙ୍ଗମାନଙ୍କୁ ଦେଖିଲେ କାନ୍ଧରେ ହାତ ପକାଇ ଗପ ଯୋଡ଼ି ବସନ୍ତି । ରାସ୍ତାରେ ଚିହ୍ନାଲୋକ ଦେଖିଲେ ଗାଡ଼ି ଅଟକାଇ ଭଲମନ୍ଦ ପଚାରନ୍ତି । ସେମାନଙ୍କ ପଛରେ ଥିବା-ନଥିବା ସାମାଜିକ ସମ୍ମାନ ବା ସରକାରୀ ପାହ୍ୟା ବିଷୟରେ ଧ୍ୟାନ ଦିଅନ୍ତି ନାହିଁ ।

ଓଡ଼ିଶା ବାହାରେ ଅନେକ ବର୍ଷ କଟାଇଲା ପରେ ସମ୍ବଲ-ପୁରରେ ମି: ସାମନ୍ତରାୟଙ୍କର ନିଯୁକ୍ତି । ସମ୍ବଲପୁରକୁ ଆସିବା ଖବର ଶୁଣି ଖୁସି ହୋଇଥିଲେ ଶ୍ରୀମତୀ ସାମନ୍ତରାୟ, କାରଣ ସେହିଠାରେ ହିଁ ତାଙ୍କ ସ୍ୱାମୀଙ୍କର ଚାକିରୀ ଜୀବନର ଆରମ୍ଭ ଓ ବିବାହ ପରେ ଗୋଟିଏ ବର୍ଷ ସେମାନେ ସେହିଠାରେ ବିତାଇଥିଲେ । ସମ୍ବଲପୁର ତାଙ୍କୁ ବର୍ତ୍ତମାନ ହୁଏତ ତାଙ୍କ ପରିଚୟ ମନେ ପକାଇ ପାରିବ ନାହିଁ । ସେ ସମ୍ବଲପୁରକୁ ଜାଣନ୍ତି । କେଉଁଠି କେତେ ଖପର ଘର ଥିଲା, ଭୁତିଆଣି ବଣ ଥିଲା ଓ ଆଜି ସେଠାରେ ବଡ଼ ବଡ଼ କେତେ କୋଠା, ଅଫିସ ଘର, ହୋଟେଲ ଇତ୍ୟାଦି ହୋଇଛି, ତାର ହିସାବ ଶ୍ରୀମତୀ ସାମନ୍ତରାୟଙ୍କର ମୁହେଁ ମୁହେଁ । ସେତେବେଳେ ହାତରେ ପ୍ରଚୁର ସମୟ ଥିଲା ସ୍ୱାମୀଙ୍କର ଓ ଟୁର୍‌ରେ ନ ଯାଇଥିଲେ ସେମାନେ ପ୍ରତି ସନ୍ଧ୍ୟାରେ ବୁଲି ଯାଉଥିଲେ, ବୁଲି ବୁଲି ରାତି ଦଶଟା ପରେ ଫେରୁଥିଲେ । ଆଜିପରି ନୂଆ

ମଡ଼େଲର ଆମ୍ବାସଡ଼ର କାର୍ ସେତେବେଳେ ତାଙ୍କର ନଥିଲା । ବାପାଙ୍କର ପୁରୁଣା ଅଷ୍ଟିନ ଗାଡ଼ିଟିକୁ ଆଣି ମିଃ ସାମନ୍ତରାୟ ପାଖରେ ରଖିଥିଲେ ।

ସେ ସମୟରେ ଶ୍ରୀମତୀ ସାମନ୍ତରାୟ ଗାଡ଼ି ଚଳାଇ ଶିଖି ନ ଥିଲେ । ସ୍ୱାମୀ ଗାଡ଼ି ଷ୍ଟାର୍ଟ କରୁଥିବା ସମୟରେ ସେ ସାମାନ୍ୟ ଟିକଏ ଚଳାଇବା କୌଶଳ ଶିଖିବାକୁ ଚେଷ୍ଟା କରିଥିଲେ । ତାଙ୍କର ଗାଡ଼ି ବିଷୟରେ ବିଶେଷ ଦକ୍ଷତା ନ ଥିଲା, କିନ୍ତୁ ସେହି କଳା ଅଷ୍ଟିନ ଗାଡ଼ିରେ ସେ କାର୍ ଚଳାଇବା ଶିଖିଥିଲେ ଓ ତାକୁ ହିଁ ନେଇ ତାଙ୍କର ଅନେକ ମଧୁର ସ୍ମୃତି ଜଡ଼ିତ ହୋଇ ରହିଛି, ଯାହାର ପୃଷ୍ଠଭୂମି ଥିଲା ସମ୍ବଲପୁର ।

ସମ୍ବଲପୁରର କମିଶନର୍ ବଙ୍ଗଳାରେ ସେମାନେ ସନ୍ଧ୍ୟାରେ ଓହ୍ଲାଇବା ପରେ ସକାଳୁ ଲୋକର ସୁଅ ଛୁଟିଲା । ଅଫିସରମାନେ, ସ୍ଥାନୀୟ ନେତୃସ୍ଥାନୀୟ ଲୋକ, ବ୍ୟବସାୟୀ, ସାଧାରଣ ବାସିନ୍ଦା ଇତ୍ୟାଦି ସମସ୍ତେ କମିଶନର ସାହେବଙ୍କୁ ଦେଖାକରିବା ପାଇଁ ଆସି ପହଞ୍ଚିଲେ । ସେହି ପ୍ରଥମ ମାସରେ କମିଶନର ସାହେବ କୃଷି ପ୍ରଦର୍ଶନୀ ଉଦ୍‌ଘାଟନ, ପବ୍ଲିକ ଲାଇବ୍ରେରୀର ଶୁଭ ଦେବା ଓ ଅନେକ ସଭା ସମିତିରେ ଯୋଗ ଦେବାର ନିମନ୍ତ୍ରଣ ପାଇଲେ ଓ ତାଙ୍କ ସହିତ ଶ୍ରୀମତୀ ସାମନ୍ତରାୟ ସବୁ ସ୍ଥାନକୁ ଯାଉଥିଲେ । ଏହା ଅନେକ ବର୍ଷର ଅଭ୍ୟାସ । ତେଣୁ ଏବେ ଆଉ ଶ୍ରୀମତୀ ସାମନ୍ତରାୟଙ୍କୁ ସଙ୍କୋଚ ଲାଗେ ନାହିଁ ।

ସେଦିନ ସନ୍ଧ୍ୟାରେ ସ୍ଥାନୀୟ କନ୍‌ଭେଣ୍ଟ ସ୍କୁଲରେ ପୁରସ୍କାର ବିତରଣୀ ଉତ୍ସବରେ ଯୋଗ ଦେବାପାଇଁ ସାମନ୍ତରାୟ ଦଂପତି ନିମନ୍ତ୍ରଣ ପାଇଥିଲେ । ମିଃ ସାମନ୍ତରାୟ ସଭାପତିର ପଦ ଅଳଂକୃତ କରିବେ ଓ ଶ୍ରୀମତୀ ସାମନ୍ତରାୟ ସ୍କୁଲର ଛାତ୍ରଛାତ୍ରୀଙ୍କୁ ପୁରସ୍କାର ପ୍ରଦାନ କରିବେ ବୋଲି ସ୍ୱୀକୃତି ଦେବା ପରେ ନିମନ୍ତ୍ରଣ କାର୍ଡରେ ତାହା ଛପା ଯାଇଥିଲା ।

କନ୍‌ଭେଣ୍ଟ ସ୍କୁଲରେ କାର୍ ପହଞ୍ଚିବା କ୍ଷଣି କମିସନର ସାହେବ ଦମ୍ପତିଙ୍କୁ ପାଛୋଟି ନେବା ପାଇଁ ସ୍କୁଲର ଶିକ୍ଷୟିତ୍ରୀମାନେ ଆଗେଇ ଆସିଲେ । ପଛରେ ଧାଡ଼ି ଧାଡ଼ି ହୋଇ ଟିଣ ଚୌକିମାନ ପଡ଼ିଥିଲେ ମଧ୍ୟ ପ୍ରଥମ ଧାଡ଼ିଟିରେ ଗଦିଭରା ସୋଫା ରଖା ଯାଇଥିଲା ।

ପରଦା ଉଠିଲା । ଆରମ୍ଭ ହେଲା ପିଲମାନଙ୍କ ହାଲୁକା ଅଭିନୀତ ନାଚ, ଗୀତ, ନାଟିକା । ସମସ୍ତେ ହସୁଛନ୍ତି । ସଭିଏଁ ତାଳି ମାରୁଛନ୍ତି । ଖୁସି ହେଉଛନ୍ତି । "ଏଇ ସେ ଡେଙ୍ଗା ହୋଇ ଝିଅଟି—ବାମ ପଟେ ନାଚୁଛି, ସେ ମୋ ଝିଅ ··· । ଏଇ ଗୀତ ପରେ ଇଂଲିଶ ଡ୍ରାମା ହେବ । ସେଥିରେ ମୋ ବଡ଼ ଝିଅର ମେନ୍ ରୋଲ୍ ଅଛି । ଆଜି ସାନ ପୁଅ ହୃଦ କୋରସ୍‌ରେ । ଝିଅ ଦୁହେଁ ଖୁବ୍ ଭଲ ନାଚନ୍ତି ମଧ୍ୟ ··· । ଏ ଟିକି ପିଲାଟି ଆପଣଙ୍କର ବାଃ, ଭାରି ସ୍ମାର୍ଟ ତ !"

ପିଲମାନଙ୍କ ଅଭିନୟ ଦେଖୁଛନ୍ତି ମିସେସ୍ ସାମନ୍ତରାୟ । ସ୍ୱାମୀଙ୍କ ସହିତ ଆଖି ମିଳିଗଲେ ସାମାନ୍ୟ ହସୁଛନ୍ତି । ମନ୍ତବ୍ୟ ଦେଉଛନ୍ତି— "ଏତେଗୁଡ଼ିଏ ପିଲାଙ୍କୁ ଧରି ଶିଖାଇବା କାଠିକର ପାଠ । ଯେ ଶିଖାଉଛି ତାକୁ ଧନ୍ୟ କହିବ ।" ତାଙ୍କର ବାଁ ପଟେ ସ୍କୁଲର ପ୍ରିନ୍‌ସିପାଲ ବସିଛନ୍ତି । ସେ ତାଙ୍କ କଥା ଶୁଣି ତୃପ୍ତ ହେଉଛନ୍ତି ।

—ସେ ପିଲାଟି କାହାର ? ବଡ଼ ବଡ଼ ଆଖି ତାର । ସମ୍ବଲପୁରୀ ନାଚରେ ଧାଡ଼ିର ପ୍ରଥମରେ ଥିଲା ।

ମିସେସ୍ ସାମନ୍ତରାୟଙ୍କ କଥା ଶୁଣି ଫେରି ଚାହିଁଲେ ପ୍ରିନ୍ସିପାଲ । ସେ ଝିଅଟି ନାଇନ୍‌ଥ ଷ୍ଟାଣ୍ଡାର୍ଡରେ ପଢ଼େ । ଅଲ୍ ରାଉଣ୍ଡର ଝିଅଟି । ରୂପ ଯେମିତି ଗୁଣ ସେମିତି । ସ୍ପୋର୍ଟସ, ନାଚ, ଗୀତ ସବୁଥିରେ ଭଲ କରେ । ତାର ବଡ଼ ଭଉଣୀ ମଧ୍ୟ ଭଲ ଝିଅଟିଏ । ଆମ ସ୍କୁଲରେ କେତେ ବର୍ଷ ଧରି ଟିଚର୍ ଥିଲା । ଓଡ଼ିଆ ପଢ଼ାଉଥିଲା । ଦୁଇ ବର୍ଷ ହେଲା ବାହା ହୋଇ ଚାକିରି ଛାଡ଼ିଦେଇଛି ।

ପର୍ଦ୍ଦା ଉଠିଲା । ଏଥର ଇଂରାଜୀ ରୂପକ । ପିଲମାନଙ୍କର ପାଟି ଖୋଲି ବାଜୁନାହିଁ । ସୁନ୍ଦର ଭାବରେ କହି ଚାଲିଛନ୍ତି । ସୁରସୁରି ମୁଖସ୍ଥ ।

—ସେଇ ଝିଅଟି ଏ ରୂପକ ଲେଖିଛି । ଶ୍ୟାମଳା ବହିଦାର । ଭଲ କବିତା ମଧ୍ୟ ଲେଖେ ।

—ତାର ମାଆ··· ?

—ଆପଣ ମିସେସ୍ ବହିଦାରଙ୍କୁ ଜାଣନ୍ତି ନାଁ କ'ଣ ?

—ଏ ଝିଅର ମୁହଁ ସହିତ ମୋର ଜଣେ କଲେଜ ବେଳର ସାଙ୍ଗର ବହୁତ ସାମଞ୍ଜସ୍ୟ ଅଛି । ତା' ନାଁ ଥିଲା ଆରତି ।

—ହଁ, ଶ୍ୟାମଳାର ମାଆଙ୍କ ନାମ ଆରତ୍ତି ବହ୍ମଦାର । ତାଙ୍କ ବାପା ଜଣେ ବଡ଼ ବଜନେସ୍ ମ୍ୟାନ । କିନ୍ତୁ ମିସେସ୍ ବହ୍ମଦାର୍‌ଙ୍କ ସହିତ ସେମାନଙ୍କର କିଛି ସମ୍ପର୍କ ନାହିଁ ।

"ଚଲ୍ ଯାତ୍ରୀ ଚଲ, ଧାତା ପଥେ ମେଲ ବଜୟର ଅଭିଯାନ୍"

ପୁଅ, ଝିଅ ମିଶି ଗୀତ ଗାଉଛନ୍ତି । କୋରସ୍ ସଙ୍ଗ୍ । ମୁଣ୍ଡରେ ଧଳା ଟୋପି, ଦେହରେ ଧଳା ପୋଷାକ, ହାତରେ ତିରଙ୍ଗୀ ପତାକା ।

—ଏ ଗୀତଟି ଶ୍ୟାମଳା ଲେଖିଛୁ ?

—ନାଁ, ଏ ଗୀତଟି ତା' ଲେଖା ନୁହେଁ, ସେ ଗାଇବା ଶିଖାଇଛୁ । ତାଙ୍କର ପିଲ୍ଲମାନଙ୍କୁ ଦେଖିଲେ ଖୁସି ଲଗେ, କିନ୍ତୁ ମିସେସ୍ ବହ୍ମଦାର ବଡ଼ ଦୁଃଖୀ । ପାଞ୍ଚ ବର୍ଷ କାଳ ସ୍ୱାମୀ ତାଙ୍କର ବଛଣାରେ ପଡ଼ି ପଡ଼ି ଗଲ୍ଲ ବର୍ଷ ମରିଗଲେ । ସେମାନେ ବର୍ତ୍ତମାନ ଏକପ୍ରକାର ନିଃସ୍ୱ କହିଲେ ଅତ୍ୟୁକ୍ତି ହେବନାହିଁ । ସ୍ୱାମୀଙ୍କୁ ବଂଚାଇବା ପାଇଁ ଅନେକ କିଛି ଖର୍ଚ୍ଚ କଲେ ମିସେସ୍ ବହ୍ମଦାର୍, ବହୁତ ସେବା କଲେ, ହେଲେ ଭଗବାନଙ୍କ ଇଚ୍ଛା ··· । କେତେ ବର୍ଷ ହେଲଣି ସେ ଆମ ସ୍କୁଲରେ ଅଛନ୍ତି । ସମସ୍ତେ ତାଙ୍କୁ ଭଲ ପାଆନ୍ତି ।

—ଆରତ୍ତି ଏଠି ଟିଚର ଅଛି ? କାହିଁ ସେ ? ଆପଣ ତାଙ୍କୁ ଡକାଇ ଦେବେ ? କେତେବର୍ଷ ପରେ ଆଜ ତା' ସହିତ ମୋର ଦେଖା ହେବ ଜାଣନ୍ତି ?

ପ୍ରିନ୍‌ସିପାଲ୍ ଦୁଃଖିତା ହେଲେ । "ତାଙ୍କୁ ଏଣେ ଜ୍ୱର । ସେଥି-ପାଇଁ ସେ ତିନଦିନ ହେଲା ଛୁଟି ନେଇ ଘରେ ଅଛନ୍ତି । ଛୁଟିରୁ ଫେରିଲେ ମୁଁ କହିବ । ଆପଣଙ୍କୁ କୋଠିରେ ଯାଇ ଦେଖାକରିବେ ।"

× × ×

ଆରତ୍ତି—ଆରତ୍ତି ତ୍ରିପାଠୀ । ମୋ ନାଁ ଆରତ୍ତି, ତମ ନାଁ କଣ ? ମା-ଳ-ବି-କା । ମାଳବିକା କଣ ? ତ୍ରିପାଠୀ ? ନାଁ ସାମନ୍ତ-ରାୟ । ଓ, ମାଳବିକା ସାମନ୍ତରାୟ । ବାଃ, ଭଲ ନାଁ ଟିଏ ତ । ମୋ ବାପା ଏଠି ବଡ଼ କଣ୍ଟ୍ରାକ୍ଟର । ତମ ବାପା ? ମୁଁ ଜା-ଣି-ନା-ହିଁ । ଜାଣ ନାହିଁ ? କ-ଣ୍ଟ୍ରା-କ୍-ଟ-ର ବୋଧେ । କିପରି ଏକ ଅବଶ୍ୱାସ

ଗୃହାଗୀରେ ଗୃହିଣୀ ଆରତି । ମାଳବିକା ଆଉଥରେ ଫିକୁ ଫିକା ହୋଇଗଲା । ତମର କାର୍ ଅଛି ? ନାଁ ଟ୍ରକ୍ ଅଛି ? ନାଁ । ଜିପ୍-ଅଛି । ଜିପ୍ ? କାର୍ ନ ରଖି ଜିପ୍ କାହିଁକି ରଖିଛ ? ଆ-ମେ-ର ଖିନୁ । ଜିପ୍ଟା ବାପାଙ୍କ ଅଫି-ସି-ର ।

ସ୍କୁଲରେ ନୂଆ ହୋଇ ଆସିଥିବା ଝିଅଟିକୁ ଏକପ୍ରକାର ଜେରା କରୁଥିଲା ଆରତି । ଜିପ୍ ନାଁ ଶୁଣି ତାର ମୁଖ ହଠାତ୍ ଉଜ୍ଜ୍ୱଳ ହୋଇ ଉଠିଲା । କିନ୍ତୁ ସେ ତାହାକୁ ପ୍ରକାଶ ନ କରି କହିଲା, ତା ହେଲେ ତମ ବାପା କଣ୍ଟ୍ରାକ୍ଟର ନୁହନ୍ତି । ଅଫିସରେ କାମ କରନ୍ତି । ମାନେ ଚାକିରି କରନ୍ତି, ସେଇଆ ନାଁ ? ହଁ । ··· ଜିପ୍‌ରେ ବସିଲେ କେମିତି ଲାଗେ ? ଡର ମାଡ଼େ ନାହିଁ ? ଏତେବେଳେ ମୁହଁ ଟେକି ସ୍ପଷ୍ଟ କରି ଝିଅଟିକୁ ଦେଖିଲା ମାଳବିକା । ଅଣ୍ଟାରେ ହାତ ଦେଇ ଯେ ତାକୁ ଏତେ ସମୟ ଧରି ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ଚାଲିଛି ଓ ସେ କାକୁସ୍ଥ ହୋଇ ଉତ୍ତରଦେଇ ଚାଲିଛି, ତାକୁ ମାଳବିକା ହଠାତ୍ ନିଜ ସ୍ତରକୁ ଓହ୍ଲାଇ ଆଣିଲା—ତାର ମଧ୍ୟ ଡର ଅଛି । ସେ ଡରେ । ତା ନ ହେଲେ ଜିପ୍‌ରେ ବସିଲେ ଡରମାଡ଼େ କି ନାହିଁ ପଚାରନ୍ତା ନାହିଁ ।

ହଠାତ୍ ନିଜ ଉପରେ ବିରକ୍ତ ହେଲା ମାଳବିକା । ତାର ଏତେ ଉତ୍ତରଦ୍ୱାର କିଛି ଦରକାର ନ ଥିଲା । ଝିଅଟି ଭଲ ଫ୍ରକ୍ ପିନ୍ଧିଛି, ତା ପରି ଦୁଇପଟେ ଦୁଇଟା ବେଣୀ ନ କରି ଛୋଟ ଛୋଟ ବାଳ କାଟିଛି । ଜୋତା, ମୋଜା ପିନ୍ଧିଛି । ସୁନ୍ଦର ଦିଶୁଛି । ତା ବୋଲି କଣ ସେ ତାକୁ ଡରିଯିବ ? ମାଳବିକାର ନିଜ ବାପାଙ୍କ କଥା ମନେପଡ଼ିଲା । ବାପା ଘରେ ଯେତେସମୟ ରହନ୍ତି, ଖୁବ୍ ପାଟିତୁଣ୍ଡ କରନ୍ତି । ସମସ୍ତେ ତାଙ୍କୁ ଡରନ୍ତି । ଅଫିସର୍ ଆଗରେ ଚୁପ୍‌ଚାପ୍ ତଳକୁ ଚାହିଁ ଠିଆ ହୁଅନ୍ତି । ପ୍ରତି କଥାରେ ମୁଣ୍ଡ ହଲାନ୍ତି—ଆଜ୍ଞା । ଘରେ ସେ ରାଗୁଥିବା ସମୟରେ ମାଳବିକା ଭାବେ, ବର୍ତ୍ତମାନ ଅଫିସର୍ ଆସିଯାଆନ୍ତେ କି ! ତା ହେଲେ ବାପାଙ୍କ ସ୍ୱର ତଳକୁ ଖସିଯାଆନ୍ତା । ଆଉ ପାଟିରୁ କଥା ବାହାରନ୍ତା ନାହିଁ··· । ସେ ବି କିଛି ସମୟ ପାଇଁ ତାର ବାପା ପାଲଟି ଯାଇଥିଲା ।

ଜିପ୍‌ରେ ମୁଁ ମୋଟେ ଦି ଥର ବସିଛି—ଏକଥା ନ କହି ମାଳ-

ବକା କହିଲା—"ଡର କାହିଁକି ମାଉବ ? ବହୁତ ଆରାମ ଲାଗେ । ଝଡ଼ ଦିନେ ବି ହେମାଳ ପବନ ଦେହରେ ବାଜେ ।"

ସେହି ଝିଅଟି ସଙ୍ଗେ ଅନେକ ବର୍ଷ ଏକାଠି ପଢ଼ିଥିଲେ ମିସେସ୍ ସାମନ୍ତରାୟ । ଚତୁର୍ଥ ଶ୍ରେଣୀରୁ ଆଇ.ଏ. ପର୍ଯ୍ୟନ୍ତ । କେବଳ ପଢ଼ୁ ନ ଥିଲେ । ତା' ଠାରୁ ଅନେକ ସାହାଯ୍ୟ ମଧ୍ୟ ପାଇ ଆସିଥିଲେ ।

—ତୋର ଶ୍ରୀପଞ୍ଚମୀକୁ ଫ୍ରକ୍ ହୋଇନି ? ମୋର ଆଉ ଦୁଇଟା ନୂଆ ଫ୍ରକ୍ ଅଛି । ତତେ ଗୋଟାଏ ଦେଇଦେବି ।

—ବୋଉକୁ ପଚାରେ ।

କେବଳ ଲୁଗା ନୁହେଁ, ବହି, ଖାତାଠାରୁ ଆରମ୍ଭ କରି ସ୍କୁଲ ଦରମା ପର୍ଯ୍ୟନ୍ତ ଅନେକ କିଛି ସାହାଯ୍ୟ କରିଥିଲା ଆରତି । ତା'ରି ସାହାଯ୍ୟରେ ସେ କଲେଜରେ ନାଁ ଲେଖାଇବା ପାଇଁ ସାହସ କରିଥିଲେ । ଆରତିର ଅର୍ଥର ପ୍ରାଚୁର୍ଯ୍ୟ ଥିଲା । ତା' ସହିତ ସାଙ୍ଗ ହେବା ପାଇଁ ଅନେକ ଝିଅ ଆଗ୍ରହୀ ଥିଲେ । ଶିକ୍ଷକମାନଙ୍କର ସୁନଜର ସବୁ ସମୟରେ ତା'ରି ଉପରେ ଥିଲା । ଅଥଚ ସେ ଆଗେଇ ଆସିଥିଲା ଲଜ୍ଜାକୁଳୀ ମାଳବିକା ନିକଟକୁ, ଯାହାର ସାମାଜିକ ମର୍ଯ୍ୟାଦା ନଥିଲା, ଖାପ ଫୁଲ ପରି ସମସ୍ତଙ୍କ ଆଖିର ଅନ୍ତରାଳରେ ହିଁ ତାର ଅବସ୍ଥାନ ଥିଲା ।

—ନେ ଏ ଦୁଇଶ ଟଙ୍କା । ଆଉ ବୋଧେ ମୁଁ ତତେ କିଛି ସାହାଯ୍ୟ କରି ପାରିବିନି ।

ମାଳବିକା ହାତରେ ଦୁଇଟା ଶହେ ଟଙ୍କିଆ ନୋଟ ଗୁଞ୍ଜି ଦେଇଥିଲା ଆରତି । ଦେଲାବେଳେ ତା' ହାତ ଥରୁଥିଲା । କଲେଜର ଶେଷ ଦୁଇଟା ପିରିୟଡ଼୍‌ରେ ଯୋଗ ନ ଦେଇ ସେ ରିକ୍‌ସା କରି ଘରକୁ ଫେରିଗଲା । ତା' ପରଦିନ ମାଳବିକା ଶୁଣିଲା, ସମସ୍ତେ ଶୁଣିଲେ, ଆରତି ତ୍ରିପାଠୀ କାଲିଠାରୁ କେଉଁଆଡ଼େ ପଳାଇଛି ।

× × ×

ମିସେସ୍ ସାମନ୍ତରାୟଙ୍କର ସବୁ ଗୋଟି ଗୋଟି ମନେ ଅଛିଯାଉ-ଥିଲା । ପ୍ରାଇଜ୍ ଦେବାକୁ ମିସେସ୍ ସାମନ୍ତରାୟଙ୍କୁ ବାଟ କଢ଼ାଇ ଷ୍ଟେଜ ଉପରକୁ ନେଇଗଲେ ଅଧ୍ୟକ୍ଷ । ଗୋଟି ଗୋଟି ହୋଇ ପିଲାଙ୍କର ନାଁ ଡକାଗଲା । ସେମାନେ ଆସି ନମସ୍କାର କରି ଠିଆ ହେଲେ । ହସି ହସି ମିସେସ୍ ସାମନ୍ତରାୟ ସେମାନଙ୍କ ହାତକୁ ପୁରସ୍କାରମାନ ବଢ଼ାଇ ଦେଉଥିଲେ ।

କେତେ ପ୍ରାଇଜ୍ ଥରକୁଥର ଆସି ନେଉଛି ଶ୍ୟାମଳା । ଇଂରାଜୀ ଡିବେଟ୍‌ରେ ଫାଷ୍ଟ । କ୍ଲାସରେ ଫାଷ୍ଟ । ହିନ୍ଦିରେ ଶ୍ରେଣୀରେ ସବୁଠାରୁ ବେଶୀ ନମ୍ବର ରଖିଛି । ମରାଲ ସାଇନ୍‌ସରେ ମଧ୍ୟ । ଏତେ ପ୍ରାଇଜ ! ଏତେ ପ୍ରଶଂସା ! କିନ୍ତୁ ··· ଏ କ'ଣ ? ଷ୍ଟେଜ୍ ତଳକୁ ଠିଆହୋଇ ସେ କାନ୍ଦୁଛି । ଏଁ, ଏ କ'ଣ ? ଆରତି ତ୍ରିପାଠୀ । ହାତରେ ଚୁଡ଼ି ନାହିଁ, ବାଳ ଫୁରୁ ଫୁରୁ ଉଡ଼ୁଛି । ଧଳା ଲୁଗା ପିନ୍ଧି ଏକ ପେତ୍ନୀ ପରି ଦିଶୁଛି ଯେ ···? କାନ୍ଧରେ ଲୁଗାକୁ ପରିପାଟୀ କରି ସଜାଡ଼ିଦେଲେ ମିସେସ୍ ସାମନ୍ତରାୟ । ସବୁଲୋକଙ୍କ ଉପରେ ଥରେ ନଜର ବୁଲାଇ ଆଣିଲେ । ସମସ୍ତଙ୍କ ଆଖି ତାଙ୍କରି ଉପରେ ନିବଦ୍ଧ । ଆଗଧାଡ଼ିରେ ତାଙ୍କର ସ୍ୱାସ୍ଥ୍ୟବାନ ସ୍ୱାମୀ ସୋଫାକୁ ଆଉଜି ବସିଛନ୍ତି । ଗେଟ୍ ନିକଟରେ ଗଲା-ବର୍ଷ କିଣା ହୋଇଥିବା ସବୁଜ ରଙ୍ଗର ଅମ୍ବାସଡ଼ର । ତା'ର ଡୋର୍‌କୁ ଆଉଜି ଡ୍ରାଇଭର ଠିଆହୋଇଛି । କାହା ସହିତ କଥା ହେଉଛି । ସବୁ ଭଲ । ସବୁ ସୁନ୍ଦର । କିନ୍ତୁ ··· ତା' ଝିଅ ଏତେ ପ୍ରାଇଜ ପାଉଛି ଅଥଚ ଆରତି ତ୍ରିପାଠୀର ଆଖିରୁ ଧାର ଧାର ଲୁହ ଝରିଯାଉଛି !

× × ×

ଘରେ ପହଞ୍ଚିବା କ୍ଷଣି ଜଗନ୍ନାଥ ଆସି ମୁହଁ ଶୁଖାଇ ଠିଆ ହେଲା—ସାନବାବୁ ପାଟିକୁ ଆଜି ଗୋଟାଏ ଦାନା ନେଇନାହାନ୍ତି । କେତେ ବୁଝାଇଲି ମା, ଡରେଇଲି ବି । କିଛି ଫଳ ହେଲାନି ।

ଚରଚର ହୋଇ କୋଠରୀ ଭିତରକୁ ପଶିଗଲେ ମିସେସ୍ ସାମନ୍ତରାୟ । ପୁଅ ତାଙ୍କର ଚଟାଣରେ ଗଡ଼ୁଛି । ହାତ ଗୋଡ଼ ଛାଟୁଛି । ମାଆଙ୍କୁ ଦେଖି ବାଁ-ବାଁ-ବାଁ ଗେଁ-ଗେଁ ହାଉଁ-ହାଉଁ- କରୁଥିଲା । ଯାହାକୁ କୋଳରେ ଧରି ଅତି ଆଦରରେ ସେ ନାଁ ଦେଇଥିଲେ "ସୂର୍ଯ୍ୟପ୍ରକାଶ" । ଯାହାପାଇଁ ତାଙ୍କ ମନରେ ଥିଲା ଅପୂର୍ବ ତୃପ୍ତି ଆଉ ଅବର୍ଣ୍ଣନୀୟ ପ୍ରଶାନ୍ତି ।

ସେହି ପୁଅର ଆଜି···ହଠାତ୍ ଆଖି ଆଗରେ ସବୁ କିଛି ଝାପ୍ସା ହୋଇଗଲା ମିସେସ୍ ସାମନ୍ତରାୟଙ୍କର । ଶ୍ୟାମଳା ବନ୍ଧୁବାଳ ଲୁଚିଗଲା; ଆରତୀ ତ୍ରିପାଠୀର ଛବି ଅସ୍ପଷ୍ଟ ହୋଇଗଲା, ଅସ୍ପଷ୍ଟ ହୋଇଗଲା ତାଙ୍କ ବରାଟ ବଙ୍ଗଳାର ଦଶ ଫୁଟିଆ ଗେଟ୍, ସବୁଜ ଲନ୍, ଜନଆ ଫୁଲର ତେଜ ତେଜକା ଖେଳ, ଡ୍ରଇଂ ରୁମ୍‌ର ଅଜନ୍ତା ପେଣ୍ଟିଂ ··· । ସିଲ୍‌କ ଶାଢ଼ୀର ପଣତକୁ ଟାଣିଆଣିଲେ ମିସେସ୍ ସାମନ୍ତରାୟ । ନିଜ ଆଖିର ଲୁହ ବଦଳରେ ପୁଅ ପାଟିରୁ ବହି ଆସୁଥିବା ଲାଳକୁ ସେଥିରେ ଧୀରେ ଧୀରେ ପୋଛିବାକୁ ଆରମ୍ଭ କରୁଥିଲେ ।





# ଶ୍ରେୟସୀ

● ସାତକଡ଼ି ହୋତା

ଶ୍ରେୟସୀ ପୁରୁଷମାନଙ୍କଠାରୁ ନିଜକୁ କିଛି କମ୍ ମନେ କରେ ନାହିଁ । ସାଇକଲ ଚଢ଼ା ଏବଂ ଘୋଡ଼ାଦୌଡ଼ଠାରୁ ଆରମ୍ଭକରି ବକ୍ସିଂ କରିବା ପର୍ଯ୍ୟନ୍ତ ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷାଠାରୁ ରଙ୍ଗମଞ୍ଚର ଅଭିନୟ କରିବା ପର୍ଯ୍ୟନ୍ତ କୌଣସିଥିରେ ସେ କାହାରିଠାରୁ ପଛରେ ନାହିଁ । ଭୟ ନାହିଁ କି ଭ୍ରାନ୍ତି ନାହିଁ । ସବୁ ବିଷୟରେ ନିଜସ୍ୱ ମତ ପୋଷଣ କରିବାରେ ସେ ସିଦ୍ଧହସ୍ତା । କାହାକୁ କୌଣସି କାର୍ଯ୍ୟରେ ଅପେକ୍ଷା କରେ ନାହିଁ । ଏହା ତାର ପ୍ରକୃତି ବିରୁଦ୍ଧ । ଅନ୍ୟମାନଙ୍କ ସହିତ ସହଯୋଗ ବି ଯେପରି କରେ ଆବଶ୍ୟକ ହେଲେ ଅସହଯୋଗ ବି ସେହିପରି କରେ । ପ୍ରଧାନ କଥା ହେଲା ତାକୁ କେହି ଗୋଟିଏ ପରିସ୍ଥିତିରେ ଗୋଟିଏ ପ୍ରକାର ପ୍ରତିକ୍ରିୟା ପ୍ରକାଶ କରିବ ବୋଲି ସାବ୍ୟସ୍ତ କରି ପାରିବ ନାହିଁ । ସମାନ ପରିସ୍ଥିତିରେ ମଧ୍ୟ ତାର ପ୍ରତିକ୍ରିୟା ଭିନ୍ନ ହୋଇପାରେ । ସେଥିପାଇଁ ସେ ବେଳେ ବେଳେ ପ୍ରହେଳିକା ହୋଇ ରହିଯାଏ । ତାକୁ ବୁଝିବାକୁ ଯେ ଯେତେ ଚେଷ୍ଟା କରେ ସେ ସେତିକି ଦୁର୍ବୋଧ ହୋଇଯାଏ । ପୁଣି ସେ ମଧ୍ୟ ବେଳେ ବେଳେ ଖୁବ୍ ଦୁର୍ବୋଧ ଏବଂ ଜଟିଳ ମନେହଉଥିବା ବେଳେ ହଠାତ୍ ନାଗେଶ୍ୱର ଫୁଲ ପରି ଫୁଟି ଉଠି ନିଜର ଅପୂର୍ବ ଶୋଭାକୁ ଚହଟାଇ ଦିଏ । ନାରୀ ଗୁଣୋଚିତ ବ୍ୟବହାର ଅପେକ୍ଷା ପୁରୁଷ ଗୁଣୋଚିତ ବ୍ୟବହାର ତା'ଠାରେ ଅଧିକ ପ୍ରକାଶିତ ହୁଏ ବୋଲି ତାକୁ ଅନେକେ ଅଗ୍ନିଚଣ୍ଡୀ, ଘୋଡ଼ୀ, ମତ୍ତଗଜ ପ୍ରଭୃତି ବିଭିନ୍ନ ନାମ ଦେଇଛନ୍ତି । କିନ୍ତୁ ସେ, ସେସବୁକୁ ପରୁଆ

କରେନ । ମତ୍ତଗଜ କହିଲକ୍ଷଣି ବରଂ ମତ୍ତଗଜ ପରି ସେ ମାଡ଼ିଆସେ, ଘୋଡ଼ୀ କହିଲକ୍ଷଣି, 'ଘୋଡ଼ା କାନ୍ଦି' ବୋଲି ପରୁଶବ୍ଦଏ । ସାଙ୍ଗପିଲା ଭରସି ପାରନ୍ତି ନାହିଁ, ପଛେଇ ଯାଆନ୍ତି ଯୁଦ୍ଧରେ । ବଜପୃଥୀର ହସ ହସି ଘରକୁ ଫେରି ମାଆଙ୍କୁ କୁହେ ସବୁ କଥା । ତା'ପରେ କୋଠରୀ ଭିତରେ ଏକା ବସି ବସି ସାଙ୍ଗମାନଙ୍କ କଥା ଭାବେ ଏବଂ ବାରମ୍ବାର କୁହେ, ମାଇଚାଆ, ସମସ୍ତେ ମାଇଚାଆ ।

ଶ୍ରେୟସୀ ଦିଲ୍ଲୀ ବିଶ୍ୱବିଦ୍ୟାଳୟକୁ ପଢ଼ିବା ପାଇଁ ଆସିଥିଲା । ଆସିଲାବେଳେ ନୀଳାଚଳ ଏକ୍ସପ୍ରେସ୍‌ରେ ଗୋଟିଏ ବଡ଼ କାଣ୍ଡ ଘଟିଗଲା । ଦ୍ୱିତୀୟ ଶ୍ରେଣୀର ଅପର ବର୍ଥଟିଏ ମିଳିଥିଲା ତାକୁ । ସାଧାରଣତଃ ତଳ ବର୍ଥମିଳେ ମହିଳାମାନଙ୍କୁ । ସେଥିପାଇଁ ତା ବାପା ରିଜର୍ଭେସନ୍ ଅଫିସରେ ପାଞ୍ଚ ଟଙ୍କା ମଧ୍ୟ ଦେଇଥିଲେ । ଝିଅପିଲା । ଉପର ବର୍ଥଟା ଚଳପ୍ରଚଳ ପାଇଁ ଅସୁବିଧା । କିନ୍ତୁ ତଳ ବର୍ଥ ନ ପାଇ ଉପରବର୍ଥ ପାଇଥିବାରୁ ରିଜର୍ଭେସନ୍ ଅଫିସକୁ ଧନ୍ୟବାଦ ଜଣାଇ ନିଜ ବର୍ଥ ଦଖଲ କଲା ଶ୍ରେୟସୀ । ବରଂ ଉପର ବର୍ଥକୁ ଉଠିବାପାଇଁ ସିଡ଼ି ଖୋଜୁଥିବା ଜଣେ ପ୍ରୌଢ଼ବୟସ୍କ ଭଦ୍ରବ୍ୟକ୍ତିଙ୍କୁ ସେ ତଳଆଡ଼ୁ ଠେଲି ଉପରକୁ ଉଠାଇଦେଲା । ସେ ଉପରକୁ ଉଠିଯାଇ ବିବ୍ରତ ହୋଇ କହିଲେ, ଉପରକୁ ତ ଉଠିଆସିଲି, ତଳକୁ ଓହ୍ଲାଇବି କପରି । ଅନ୍ୟମାନେ କହିଲେ ଉପରକୁ ଯିବା ପାଇଁ ଏତେ ପ୍ରତିଯୋଗୀତା, ଆପଣ ତଳକୁ ଆସିବା କଥା ଭାବୁଛନ୍ତି କାହିଁକି । ଶ୍ରେୟସୀ ତାଙ୍କୁ ସାହସ ଦେଇ କହିଲା, ଉପରକୁ ଉଠିବା ଯେଉଁଭଳି ସହଜ ଓହ୍ଲାଇବାଟା ତ ସେହିପରି, ବରଂ ଆହୁରି ସହଜ । ଦିଲ୍ଲୀଯାଏ ଅପର ବର୍ଥରେ ଯିବାକଲା ସେ । ଦୁଇଜଣ ସହଯାତ୍ରୀ ସହାନୁଭୂତି ଦେଖାଇ ଯାଚିଥିଲେ ତଳ ବର୍ଥ । କିନ୍ତୁ ଶ୍ରେୟସୀ ଧନ୍ୟବାଦ ଜଣାଇ କହିଲା, ଉପରେ ନ ରହିଲେ ତଳେ କଅଣ ଘଟୁଛି ଜାଣିବି କପରି । ଏଇ ସୁଯୋଗଟା ଆପଣମାନେ ଦେବେ ନାହିଁ ମୋତେ ? ଆଉ କେହି କିଛି କହିଲେ ନାହିଁ ।

ଗୋମୋଠାରେ ଫେରିବାଲା ଜଣେ ଉବା ଭିତରକୁ ପଶିଆସି ହରେକ୍ ମାଲ୍ ଟଙ୍କାଟିଏ ବୋଲି ହୁରି କଲା । କେତେ ଯାତ୍ରୀ କିଣିଲେ ମଧ୍ୟ । ଗାଡ଼ି ଗଡ଼ୁଥାଏ । ହଠାତ୍ ଗୋଟାଏ ଅନ୍ଧାରୁଆ ଜଙ୍ଗଲିଆ ଜାଗାରେ ଗାଡ଼ି ଛିଡ଼ା ହୋଇଗଲା । ସେଇ ଫେରିବାଲା ଚୁପ୍ ଦେଖେଇ ଯେଉଁମାନଙ୍କୁ

ହେରୋଇନ୍ ମାଲ୍ ବିକିଥିଲା ସେଇମାନଙ୍କଠାରୁ ସେମାନଙ୍କ ପାଖରେ ଯାହାଥିଲା ସବୁ ଛୁରୀ ଦେଖେଇ ଆଦାୟ କରି ଗାଡ଼ିର ଦରଜା ଖୋଲି ତଳକୁ ଡିଆଁ ମାରିବାକୁ ଯାଉଥିବା ବେଳେ ପଛରୁ ଧରିନେଲା ଶ୍ରେୟସୀ । ଏତେବେଳକୁ ଅନ୍ୟ-ମାନଙ୍କର ସାହସ ବଢ଼ି ଯାଇଥାଏ । ତାଠାରୁ ଟଙ୍କା ଏବଂ ଅନ୍ୟାନ୍ୟ ଜିନିଷ ଛଡ଼େଇ ନେଇ ଏପରି ଯୋର୍‌ରେ ଲାଥିଏ ମାରିଲା ଯେ ଶ୍ରେୟସୀ, ସେହି ଫେରିବାଲା କରୁଣ ଆର୍ତ୍ତନାଦ କରି ତଳେ ପଡ଼ିଲାଯାଇ । ସେତେବେଳକୁ ଗାଡ଼ି ପୁଣି ଚାଲିବା ପାଇଁ ଆରମ୍ଭ କରିଥାଏ । ବିସ୍ମୟ ବିମୂଢ଼ ସହଯାତ୍ରୀ-ମାନଙ୍କୁ କହିଲା ଶ୍ରେୟସୀ, ପୁଲିସ୍‌କୁ ଦେଇ ପୁଲିସ୍‌ର ହାତ ଶକ୍ତ କରିବି କାହିଁକି । ଏଇ ସବୁ ଲୋକଙ୍କର ପୁଲିସ୍ ସହିତ ଯୋଗାଯୋଗ ଥାଏ । ସେମାନେ ପୁଲିସ୍‌କୁ କିଛି କିଛି ଦିଅନ୍ତି, ନିଜର ଧନ୍ଦାକୁ ନିର୍ବିରୋଧରେ କରିବା ପାଇଁ । ଆଜି ଯେଉଁ ଲାଥି ଖାଇଲା ତାହା କିନ୍ତୁ ତାକୁ ଅନ୍ତ କମ୍‌ରେ ଦିନିଦିନ ପଙ୍ଗୁ କରି ରଖିବ । ପ୍ରାଣକେନ୍ଦ୍ରରେ ବାଜିଛି ଗୋଇଠା ।

ସମସ୍ତେ ଅଭିଭୂତ ହୋଇ ପଡ଼ିଥିଲେ । ଏବେ ଅପର ବର୍ଥରେ ସେହି ପ୍ରୌଢ଼ଲୋକଙ୍କୁ କହିଲା ଶ୍ରେୟସୀ, ତଳ ବର୍ଥରେ ନ ଯାଇ ଉପର ବର୍ଥରେ ଶିବାର ମହତ୍ତ୍ୱ ଏବେ ଜାଣିଲେ ତ ?

ଦିଲ୍ଲୀରେ କିନ୍ତୁ ବେଶୀ ଦିନ ରହିଲା ନାହିଁ ଶ୍ରେୟସୀ । ଆଡ୍‌ମିସନ୍ ନେଇ ମିରାଣ୍ଡା ହାଉସ୍‌କୁ ଉଠିଗଲା ଉତ୍କଳ ଭବନରୁ । ମିରାଣ୍ଡା ହାଉସ୍‌ରେ ସେତେବେଳେ ନବାଗତାମାନଙ୍କୁ ପ୍ରଚଣ୍ଡ ର‍୍ୟାଗିଂ କରାହେଉଥାଏ । ଅନେକ ନବାଗତାଙ୍କୁ ଭୀତତ୍ରସ୍ତ ହୋଇ କାନ୍ଦୁଥିବାର ଦେଖିଲା ଶ୍ରେୟସୀ । ଜଣେ ନବାଗତାକୁ ଉଲଗ୍ନ ହୋଇ ଅଶ୍ଳୀଳ ଇଙ୍ଗିତ କରିବାକୁ କହିବାରୁ ସେ ତାହା ନ କରି କେବଳ ମୂକ ପରି ଛିଡ଼ାହୋଇ ରହିଲା । ଆଜି ତିନିଜଣଙ୍କୁ ପୁଅ ପରି ତା'ଉପରେ ଆକ୍ରମଣ କରିବା.କୁ ଆଦେଶ ହେବାରୁ ସିନିଅରମାନଙ୍କ ମଧ୍ୟରୁ ତିନିଜଣ ଯାଇ ତା ସହିତ ଯେଉଁଭଳି ଅଚରଣ କଲେ ସେଥିରେ ଆଖି ବୁଜିହୋଇ ପଡ଼ିଲା ଶ୍ରେୟସୀର । ତା'ର ପାଳି ପଡ଼ି ନ ଥାଏ ଏଯାଏ । ସେ ନିଜକୁ ସମ୍ଭାଳି ନ ପାରି ଏପରି ଯୋର୍‌ରେ ର‍୍ୟାଗିଂ ପରିଚାଳନା କରୁଥିବା ସିନିଅରକୁ ଚାପୁଡ଼ାଟାଏ କଷିଦେଲା ଯେ ସେ ମାଟି କାମୁଡ଼ି ତଳେ ପଡ଼ିଗଲା । ହାଁ ହାଁ କରି ଦଉଡ଼ି ଆସିଲେ ଅନ୍ୟ ସିନିଅରମାନେ । ସେତେବେଳକୁ ନବାଗତାମାନଙ୍କୁ କହିଲା ଶ୍ରେୟସୀ, ଚୁହିଁଛ କଅଣ ଆକ୍ରମଣ କର ଏବଂ

ମୁହୂର୍ତ୍ତେ ବିଳମ୍ବ ନ କରି ଝାମ୍ପ ଦେଲା ରଣକ୍ଷେତ୍ରରେ । କାହାର ଚୁଟି ଟାଣି, କାହାକୁ ମୁଥାଏ ମାରି, କାହାର ଶାଢ଼ୀ ଛଡ଼େଇ ନେଇ କହିଲା ଶ୍ରେୟସୀ—ନବାଗତାମାନେ ଦେଖିବେ, ତୁମେ ସବୁ ଯାହା କରିବା ପାଇଁ କହୁଥିଲ ସେପରି କର । ନବାଗତା, ପରନ୍ତୁ ଜଣ ତରୁଣୀ ଶ୍ରେୟସୀର ପଛରେ । ସେମାନଙ୍କର ନେତା ସେ । ଦୁଇଶହ ସିନିଅର ପଛଘୁଞ୍ଚାଦେଲେ ସୁବିଧା ସମୟର ଅପେକ୍ଷା କରି । ଏହାପରେ ଶ୍ରେୟସୀର ନାମ ବିଶ୍ୱଆଡ଼େ ବ୍ୟାପିଗଲା । ସବୁରି ମୁହଁରେ ତାର ନାମ । କିଏ ପ୍ରଶଂସାରେ ପଞ୍ଚମୁଖ ତ କିଏ ନିନ୍ଦା ଗାନ କରିବାରେ ପଞ୍ଚମୁଖ । ଶ୍ରେୟସୀକୁ ସାବାସ୍ ଦେଇ କହିଲେ ପ୍ରିନ୍ସିପାଲ୍, ଏତେଦିନ ପରେ ରାଗିଂ ବନ୍ଦ ହେଲା । ତୁମ ପରି ପାଞ୍ଚଜଣ ଝିଅ ଥାଆନ୍ତେ କି ? ଶ୍ରେୟସୀ ତାଙ୍କୁ କୃତଜ୍ଞତା ଜଣାଇ କହିଲା, ଆପଣଙ୍କ ଆଶୀର୍ବାଦ ଥାଉ, ଅନେକ ଝିଅ ଏପରି ବାହାରିବେ । ମୋତେ ବିଦାୟ ଦିଅନ୍ତୁ । ପ୍ରିନ୍ସିପାଲ ଆଶ୍ଚର୍ଯ୍ୟ ହୋଇ କହିଲେ, ଏମିତି ଭାବରେ ଏତେ ଶୀଘ୍ର ଚାଲିଯିବ ? ଶ୍ରେୟସୀ କହିଲା ଏଭଳି କଲେଜରେ ମୁଁ ପାଠ ପଢ଼ିବା ଜାଣିଥିଲେ ଆସି ନ ଥାନ୍ତି । ଆସିଯାଇ ଭୁଲ କରିଛି । ସେହି ଭୁଲର ସଂଶୋଧନ କରିବି । କାଲି ଭୁବନେଶ୍ୱର ଫେରିଯିବି । ମନସ୍ଥିର କରି ସାରିଛି । ବାଧ୍ୟ ହୋଇ ପ୍ରିନ୍ସିପାଲ ତା ହାତକୁ ଟ୍ରାନ୍ସଫର ସର୍ଟିଫିକେଟ ଖଣ୍ଡିକ ବଢ଼ାଇ ଦେଇ ତା ମୁହଁରେ ଚୁମାଟିଏ ଦେଇ କହିଲେ, ତୁମେ ଆୟୁଷ୍ମତୀ ହୁଅ, ଭଗବାନ ତୁମର ମଙ୍ଗଳ କରନ୍ତୁ । ତାକୁ ବିଦାୟ ଦବାବେଳେ ନବାଗତାମାନଙ୍କ ସହିତ ସିନିଅରମାନେ ବି କାନ୍ଦିଲେ । ଜଣେ ସିନିଅର କହି ଉଠେଇଲା, ସବୁ ଭୁଲିଯାଅ ଶ୍ରେୟସୀ । ଆଉ ଏପରି ଘଟଣାର ପୁନରାବୃତ୍ତି ହବ ନାହିଁ । କିନ୍ତୁ ତୁମେ ରହିଯାଅ । ଶ୍ରେୟସୀ ତାଠାରୁ ବିଦାୟ ନେଇ କହିଲା, ଉଲଗ୍ନ ହବା କିଛି ବଡ଼କଥା ନୁହେଁ । ନିଜର ଉଲଗ୍ନ ଦେହଟା କିଏବା ନ ଦେଖିଛି । ମୋର ଅନୁରୋଧ ଯେଉଁଦିନ ଝିଅମାନେ ଏସ୍ୱା ବୁଝି ରାଗିଂ ବନ୍ଦ କରିଦେବେ, ସେହିଦିନ ମୁଁ ପୁଣି ଆସିବି ମିରାଣ୍ଡା ହାଉସକୁ; ପଢ଼ିବା ପାଇଁ ନୁହେଁ, ତୁମମାନଙ୍କ ସହିତ ଭୋଜି ଖାଇବା ପାଇଁ ।

ଶ୍ରେୟସୀ ଦିଲ୍ଲୀରୁ ଦଶ ଦିନ ପରେ ଫେରିଆସି ଭୁବନେଶ୍ୱରରେ ନାମ ଲେଖାଇଲା । ଛଅମାସ ପଢ଼ିଲା ପରେ ହଠାତ୍ ଦିନେ ଖବର-

କାଗଜରେ ଗୋଟିଏ ବିଜ୍ଞାପନ ଦେଖି ଚମକି ପଡ଼ିଲି । "ଜଣେ ସୁପୁରୁଷ ବୟସ୍କ ଭଦ୍ରବ୍ୟକ୍ତିଙ୍କ ପାଇଁ ଜଣେ ସ୍ୱାସ୍ଥ୍ୟବତୀ ଯୁବତୀ ପାତ୍ରୀ ଆବଶ୍ୟକ । ଜାତିଗୋତ୍ର ଭାଷାର ନିୟନ୍ତ୍ରଣ ନାହିଁ । ଗୋଟିଏ ସର୍ତ୍ତ କେବଳ : ଯୁବତୀ ଜନନୀ ହେବା ପାଇଁ ଚାହିଁବେ ନାହିଁ ।" ବିଜ୍ଞାପନଟି ତିନିଥର ପଢ଼ିଲା ଶ୍ରେୟସୀ । ଏହାର ଅର୍ଥ ବୁଝିବା ପାଇଁ ଚେଷ୍ଟା କଲା । ଭଦ୍ରଲୋକ ବୟସ୍କ ହେଲେ ବି ବିବାହ କରିବାକୁ ଆଗ୍ରହୀ, କିନ୍ତୁ ସନ୍ତାନ ବିରୋଧୀ । ତାହେଲେ ? ସେ ବୋଧହୁଏ ଆଧୁନିକ ଶ୍ରୀକୃଷ୍ଣ, କେବଳ ଗୋପଲୀଳାରେ ବିଶ୍ୱାସୀ । କାଗଜଗୋଟେ ଟାଣି ନେଇ ନିଜର ବାୟୋଡାଟା ଲେଖି ଗୋଟିଏ ଫଟୋ ସହିତ ସେହିଦିନ ଡାକଘରେ ଚିଠି ପକାଇଦେଲା ।

କୌଣସି ପୁରୁଷ ପାଖକୁ ନିଜ ସମ୍ବନ୍ଧରେ ଚିଠି ଲେଖିବା ଏଇ ପ୍ରଥମ । ଲେଖିସାରି ଚିଠିଟା ପକାଇଦେଲା ଗୋଟିଏ ଝୁଙ୍କ୍‌ରେ । ଝୁଙ୍କ୍ ନୁହେଁ ତ ଆଉ କଅଣ ? ପୁରୁଷମାନଙ୍କର ସବୁ କ୍ଷେତ୍ର ପରି ପାରିବାରିକ କ୍ଷେତ୍ରର ଔଦ୍ଧତ୍ୟ ସେ ଆଦୌ ସହ୍ୟ କରିପାରେ ନାହିଁ । ସେହି ବିଜ୍ଞାପନଟି ଔଦ୍ଧତ୍ୟର ପ୍ରମାଣ ବହନ କରି ନାରୀ ସମାଜକୁ ଯେପରି ଅଙ୍ଗୁଳି ନିର୍ଦ୍ଦେଶ କରି କହୁଛି, ଯାହାର ଇଚ୍ଛା ନିକଟକୁ ଆସ, ନିଷିଦ୍ଧ ଫଳ ଭକ୍ଷଣ କର, କିନ୍ତୁ ତୁମ ଗର୍ଭର ଫଳ ରଖିବା ପାଇଁ ଲାଳାୟିତ ହୁଅ ନାହିଁ । ପୁରୁଷ ତୁମର ସର୍ବସ୍ୱ କିନ୍ତୁ ତୁମେ ପୁରୁଷର ଅନେକ ସ୍ୱାର୍ଥ ଭିତରୁ ଗୋଟିଏ । ଶ୍ରେୟସୀ ପୁରୁଷମାନଙ୍କୁ ଗୋଟାଏ ଶିକ୍ଷା ଦବାପାଇଁ ଖୋଜୁଥିଲା । ଏହି ସୁଯୋଗଟା ଅପ୍ରତ୍ୟାଶିତ ଭାବରେ ଆସି ପହଞ୍ଚିବାରୁ ସେ ନିଜକୁ ଧନ୍ୟବାଦ ଦେଲା ।

ପୁରୁଷମାନେ ଯଦି ଖାଲି ପୁରୁଷ ହୋଇ ଥାଆନ୍ତେ ତାହେଲେ ଏତେ ଛଳନା, ଦ୍ୱିରୁକ୍ତି ପ୍ରକାଶ ପାଆନ୍ତା ନାହିଁ ସେମାନଙ୍କ କଥାରେ । ନାରୀ ପାଖରେ ତାର ଅଳଙ୍କାର ପରି ପୁରୁଷ ମଧ୍ୟ ଅତିରିକ୍ତ ହବା ପାଇଁ ଚେଷ୍ଟା କରେ । ସେଇ ଚେଷ୍ଟାଟାକୁ ପସନ୍ଦ କରେନି ଶ୍ରେୟସୀ । ସତରେ ଯଦି ତୁମେ ପୁରୁଷ ଏବଂ ତୁମକୁ କୌଣସି ପ୍ରସଙ୍ଗ ଭଲ ଲାଗିଲା ସିଧାସଳଖ ନ କହି ବଙ୍କେଇ କହିବାରେ ବାହାଦୁରୀ କଅଣ । ସେଇଟା ମାଇଚିଆ ପଣ, ପୁରୁଷକାର ନୁହେ । ନାରୀ ପୁରୁଷର ନେକଲେସ ବା ଟାଇ ନୁହେଁ ଯେ ସମୟ ଅନୁସାରେ କାମ ସରିଗଲେ ଫିଙ୍ଗିଦବ । ସେ ବି ପୁରୁଷର ଗୋଟେ ନିଜସ୍ୱ ନିବିଡ଼, ଏକାନ୍ତ ବ୍ୟକ୍ତିଗତ ପ୍ରୟୋଜନ । ପୁରୁଷ ବି ନାରୀ ପକ୍ଷରେ

ସେକ୍ସପର । ଏକ୍ସ ଏକାନ୍ତ ବ୍ୟକ୍ତିଗତ ପ୍ରସଙ୍ଗଟାକୁ ବ୍ୟକ୍ତିଗତ ସ୍ତରରେ ନ ରଖି ବାଣିଜ୍ୟିକ କରି ବଂଆଯାଉଛି ବୋଲି ଏତେ ପ୍ରକାର ଫେଶନ, କିସମ କିସମର ଗର୍ଭବର୍ଦ୍ଧକ ବା ଗର୍ଭନିରୋଧକ ବଟିକା, ଏତେ ପ୍ରସାଧନ ଏବଂ ଏତେ ଭାଷା ଓ ବାଗ୍ବିଳତା । ସଙ୍ଗିନୀକୁ ପ୍ରୀତ କରିବା ଯେପରି ନାରୀ ଓ ପୁରୁଷ ସମ୍ପର୍କର ପ୍ରଥମ ଓ ଶେଷ ଅଭିଳାଷ । ଶ୍ରେୟସୀ ସେଥିପାଇଁ ପୁରୁଷମାନଙ୍କୁ କୁହେ, ତୁମେ ଯଦି ପ୍ରୀତ ହବାକୁ ବୁହଁ କଏ ମନା କରୁଛି କିନ୍ତୁ ଆଉ ଜଣକୁ ସେଥିପାଇଁ ଲୋଡ଼ା କାହିଁକି ? ସେ ତୁମର ଖେଳନା ନୁହେଁ । ଟପୁଲେଟ୍ ନୁହେଁ ଯେ ଧୋଇଧାଇ ଦେଲେ ପୁଣି ବ୍ୟବହାର ପାଇଁ ପ୍ରସ୍ତୁତ ହୋଇଯିବ । ସେ ତୁମ ପରି ଗୋଟିଏ ଜୀବନ, ତୁମର ଗତି ପରି ତା'ର କିଛି ଅଛି ପ୍ରବାହ । କେବଳ ଗୋଟିଏ ତଫାତ୍—ପୁରୁଷର ଅଛି ଶକ୍ତି, ନାରୀର ଅଛି ଭାଷା । ସେ ଭାଷା ଅସୀମ, ଅନନ୍ତ, ଅଗମ୍ୟ । ତାର ଦ୍ୟୁତି ବହୁଦୂର ପ୍ରସାରିତ ।

ଶ୍ରେୟସୀ ଲେଖିଦେଇ ପୁଣି ଭାବିଲା । ସାଧାରଣତଃ କୌଣସି କାମ କରିସାରି ସେ ପଛକଥା ଭାବେ ନାହିଁ, ଅନୁତାପ କରେ ନାହିଁ । କିନ୍ତୁ ପ୍ରଥମ ଥର ପାଇଁ ସେ ପଛରେ ଭାବିଲା, ଯାହା କଲା ତାହା ଠିକ୍ କି ନାହିଁ ? କିନ୍ତୁ ଯେତିକି ଏ ସମ୍ପର୍କରେ ଭାବିଲା ସେତିକି ତାର ହୃଦବୋଧ ହେଲା ଯେ ସେ ଯାହା କରିଛି ଠିକ୍ କରିଛି । ସେଇ ବସ୍ତୁସ୍ଥ ପୁରୁଷକୁ ଗୋଟେ ଶିକ୍ଷା ଦବାକୁ ହବ ।

ପୋଷ୍ଟବକ୍ସର ଠିକଣା ନେଇ ସବୁ ତଥ୍ୟ ସଂଗ୍ରହ କଲା ଶ୍ରେୟସୀ । ସେକ୍ସ ପୁରୁଷ ପାଖରେ ସେ ହୁଏତ ଅପରିଚିତ ହୋଇ ଉଭା ହବ, କିନ୍ତୁ ସେ ଉଭା ହବା ଆଗରୁ ପୁରୁଷଟା ତା ପାଖରେ ପୁରୁଣା ଓ ପରିଚିତ ହୋଇଯିବା ଆବଶ୍ୟକ । ସବୁବେଳେ ନୂଆ ଲୋକ ସହିତ ସବୁ ପ୍ରସଙ୍ଗ ଆଲୋଚନା କରିହୁଏ ନାହିଁ ।

ସମସ୍ତ ବିବରଣୀ ସଂଗ୍ରହ କରି ଠିକଣା ସ୍ଥାନରେ ପହଞ୍ଚି ଘରର ଫାଟକ ଆଗରେ ଝୁଲୁଥିବା ନାମଫଳକଟିକୁ ଦେଖି ଚମକି ପଡ଼ିଲା ଶ୍ରେୟସୀ । ବାରିଷ୍ଟର ସନତ୍ ଦାସ ।

ସନତ୍ ଦାସଙ୍କୁ ସେ କଲେଜ ଫଙ୍କସନ୍‌ରେ ଥରେ ଅଧେ ଯେ ଦେଖି ନ ଥିଲା ଏପରି ନୁହେଁ । କିନ୍ତୁ ଶହେ ଜଣ ଲୋକ ମଧ୍ୟରେ ସେ ବାର

ହୋଇ ନ ପଡ଼ି ବରଂ ଲୁଚି ଯାଉଥିଲେ । ଏଭଳି ବ୍ୟକ୍ତିଙ୍କୁ ମନେରଖିବା ଭଲ ନୁହେଁ । ଅତି ସାଧାରଣ ମଣିଷର ସବୁ ସଦ୍‌ଗୁଣ ବା ଦୁର୍ଗୁଣ ତାଙ୍କ ପାଖରେ ତୁଏତ ଅଛି, ତେଣୁ ସେ ଅସାଧାରଣ ହୋଇ ପାରୁ ନାହାନ୍ତି । ତଥାପି ସେହି ଦିନଠାରୁ ତାଙ୍କ ଚଳିବାଧି ଉପରେ ତୀବ୍ର ନଜର ରଖିଲା ଶ୍ରେୟସୀ ।

ସନତ୍ ଦାସ ଓକିଲାତି କରନ୍ତି ବୋଲି ତାଙ୍କର ନାମ ଡାକ ଅଛି । ଅନେକ ମହକିଲ ଆସନ୍ତି ତାଙ୍କ ପାଖକୁ ମୋକଦ୍ଦମା ଚଳେଇବା ପାଇଁ । ସନତ୍ ଦାସ କାହାକୁ ମନା କରନ୍ତି ନାହିଁ । ସେଥିପାଇଁ ମର୍ଡ଼ର କେସ୍‌ଠାରୁ ମାନହାନି ମୋକଦ୍ଦମା ପର୍ଯ୍ୟନ୍ତ ସବୁଥିରେ ଲଢ଼ନ୍ତି । ଦରକାର ହେଲେ ତଳ ଓ ଉପର କୋର୍ଟ ଉଭୟକୁ ଯାଆନ୍ତି । ତାଙ୍କ ମହକିଲ ମାନଙ୍କର ତାଲିକା ଲମ୍ବା । କିଏ ନାରୀ ଧର୍ଷଣ ପାଇଁ ଅଭିଯୁକ୍ତ ତ ଆଉ କିଏ ଅର୍ଥ ଶୋଷଣ ପାଇଁ ଅଭିଯୁକ୍ତ । ସମସ୍ତଙ୍କର କଥା ଧିର ସ୍ଥିର ଭାବରେ ଶୁଣିବା ତାଙ୍କର ଅଭ୍ୟାସ । ସକାଳୁ ସନ୍ଧ୍ୟା ଯାଏ ଲାଗି ରହନ୍ତି କାମରେ । କାମ ସରିବା ବେଳକୁ ଦଶଟା । ତା'ପରେ ରାତି ଭୋଜନ ଏବଂ ପରେ ପ୍ରାୟ ଦୁଇ ଘଣ୍ଟା ପଢ଼ନ୍ତି । ରାତି ସାଢ଼େ ବାରଟା ବା ଗୋଟାଏ ବେଳକୁ ନିଦ ବଟିକା ଖାଇ ଶୋଇପଡ଼ନ୍ତି ସେ ଉଠନ୍ତି ସାତଟାରେ । ତା'ପରେ ପୁଣି ସେଇ ପୁରୁଣା କଥା, ସେଇ ଏକା ରକମର କାର୍ଯ୍ୟସୂଚୀ । ସବୁ ବିବରଣୀ ସଂଗ୍ରହ କରି ଦୀର୍ଘନିଶ୍ୱାସଟିଏ ପକେଇଲା ଶ୍ରେୟସୀ । ବଡ଼ ଦୟା ହେଲା ସନତ୍ ଦାସଙ୍କ ଉପରେ । ଏପରି ଲୋକଟିଏ ଦୟାର ପାତ୍ର, ପ୍ରେମର ନୁହେଁ ।

ଶ୍ରେୟସୀ ସନତ୍ ଦାସଙ୍କର ଉଦ୍ଦେଶ୍ୟ ସମ୍ପର୍କରେ ଅନେକ ଚିନ୍ତା କଲା । କିଛି ଅଭାବ ନ ଥାଇ ମଧ୍ୟ ତାଙ୍କର ଯେପରି ଅନେକ ଅଭାବ ସେହିପରି ମନେ କଲା ସେ । ବୟସ ଏପରି କିଛି ବେଶୀ ହୋଇନି । ଚାଳିଶ ପାଖାପାଖି । ଏବେ ବି ଯୁବକ କୁହାଯାଇପାରେ । କିନ୍ତୁ ସେ ନିଜକୁ ବୟସ୍କ ବୋଲି କହିବା ଦ୍ୱାରା ନିଜକୁ ସଂକୁଚିତ କରିବା ପାଇଁ ଉଦ୍ୟମ କରିବାର ଦରକାର ନ ଥିଲା । ବୟସ୍କ ନ ହୋଇ ବି ବୟସ୍କର ରୂପ ଯଦି ଧାରଣ କରିଯାଏ ବୟସର ଦାମ୍ଭ ଓ ଅହଙ୍କାର ଲିଭିଯାଏ ।

ଶ୍ରେୟସୀ ପିଲାଦିନୁ ପୁରୁଷମାନଙ୍କୁ ସାଧାରଣ ନାରୀର ଦୃଷ୍ଟିରେ ନ ଦେଖି ନିଜସ୍ୱ ଦୃଷ୍ଟିରେ ଦେଖେ । ସେଥିରେ ନ ଥାଏ କୌତୂହଳ ବା

ଅନାବଶ୍ୟକ ଆକର୍ଷଣ । ବରଂ ସେଥିରେ ଥାଏ ମଣିଷ ଓ ମଣିଷ ମଧ୍ୟରେ ଥିବା ଏକ ସହଜାତ ବ୍ୟବହାରିକ ସଂପର୍କ । ଜଣେ ମଣିଷ ଏକାକୀ ଥିଲେ ସେ କଥା କହିପାରେ ନାହିଁ, ଭାବର ବିନିମୟ ହୁଏ ନାହିଁ, ଅଭାବରେ ଅଂଶ ଗ୍ରହଣ ପାଇଁ କେହି ଆସନ୍ତି ନାହିଁ । ସେଥିପାଇଁ ସେ ଏକା ନ ରହି ଆଉ ଜଣଙ୍କର ସାଥି ହୁଏ, ଏକା ଭୋଗ ନ କରି ଭାଗ ଦ୍ୱାରାରେ ଖୁସି ହୁଏ । ସେହି ଦୃଷ୍ଟିରେ ପୃଥ୍ୱୀକୁ ଦେଖେ ଶ୍ରେୟସୀ । ସାଥୀ ବା ଶତ୍ରୁ, ପରିସ୍ଥିତି ଉପରେ ନିର୍ଭର କରେ ।

ସନତ୍ ଦାସ ସାଥୀ କି ଶତ୍ରୁ ହେବେ ସେ ଆଜିରୁ କହି ପାରିବ ନାହିଁ । ବିଜ୍ଞାପନ ଅନୁସାରେ ସେ ଦରଖାସ୍ତଟିଏ ପକେଇଛି । ତାହାର ପ୍ରତିକ୍ରିୟା ଜାଣିବା ପରେ ଯାହା ସେ ସ୍ଥିର କରିବ ।

ସାତ ଦିନ ହୋଇ ନ ଥାଏ, ଉତ୍ତର ଆସିଗଲା । ଏତେ ଶୀଘ୍ର ଉତ୍ତର ଆସିବ ବୋଲି ଆଶା କରି ନ ଥିଲା ଶ୍ରେୟସୀ । ଇଣ୍ଟରଭ୍ୟୁ ପାଇଁ ସମୟ ଲେଖା ଅଛି ଚିଠିରେ । ଇଣ୍ଟରଭ୍ୟୁଟା କୌଣସି କୋଠରୀ ଭିତରେ ବା ଖୋଲା ଯାଗାରେ ନୁହେଁ, ଗୋଟିଏ ଚଳନ୍ତା ଟ୍ରେନ୍‌ରେ । ଅଜବ ବ୍ୟାପାର । ଶ୍ରେୟସୀର ବୁଦ୍ଧି କୁଳେଇ ନ ଥାଏ । ସନତ୍ ଦାସ ତା'ଠାରୁ ବଳିଗଲେ ଯେପରି । ତଥାପି ପ୍ରସ୍ତୁତ ହେଲା ଶ୍ରେୟସୀ । ଭୁବନେଶ୍ୱରରୁ ତାଙ୍କ ସାଙ୍ଗରେ ଯିବାକୁ ହେବ କଲିକତା ଏବଂ ଏକା ସାଙ୍ଗରେ ପ୍ରତ୍ୟାବର୍ତ୍ତନ । କଲିକତାରେ କାର୍ଯ୍ୟସୂଚୀ : ଗୋଟିଏ ପ୍ରଖ୍ୟାତ ହୋଟେଲରେ ଏକତ୍ର ମଧ୍ୟାହ୍ନ ଭୋଜନ । ଅନ୍ୟସବୁ ଯିଏ ଯାହାର ସୁବିଧା ଅନୁସାରେ ।

ପୁରୀ ଏକ୍‌ସପ୍ରେସର ନିର୍ଦ୍ଧାରିତ ଡବାର କୋଠରୀ ଭିତରେ ବସିଲା ଶ୍ରେୟସୀ । ଆଉ ହୁଏତ କେହି ଆସିବେ ନାହିଁ ସନତ୍ ଦାସଙ୍କୁ ଛାଡ଼ି । ଚ୍ଛେଟି ବର୍ଥରୁ ଦୁଇଟି ସେମାନଙ୍କର । ଆଉ ଦୁଇଟି ଖାଲି । ଗାଡ଼ି ଛାଡ଼ିବା ପର୍ଯ୍ୟନ୍ତ କେହି ଆସିଲେ ନାହିଁ ଗାଡ଼ି ଛାଡ଼ିବା ଆଗରୁ ସନତ୍ ଦାସ କୋଠରୀ ଭିତରକୁ ପଶିଆସି କହିଲେ, ୱିଇସ୍ ୟୁ ଏ ଗୁଡ୍ ଜର୍ନି । ଶ୍ରେୟସୀ ଫର୍ମାଲିଟି ମାନେ ନାହିଁ । ସେ କହିଲା ମୁଁ ଶ୍ରେୟସୀ । ଆପଣଙ୍କ ସହିତ ସାଥି ହୋଇ ଯାଉଥିବାରୁ ଏକାକୀ ଯିବାର କ୍ଲାନ୍ତି ରହିବ ନାହିଁ । ଆପଣ କିଛି ଖାଆନ୍ତୁ ମୋ ସାଙ୍ଗରେ । ମା ଯଥେଷ୍ଟ ଖାଦ୍ୟ ଦେଇଛନ୍ତି । ସନତ୍ ଦାସ ଚୁପ୍ ହୋଇ ବସିପଡ଼ିଲେ । କେଇ ମୁହୂର୍ତ୍ତ ପରେ କହିଲେ, ମୋର

ଅଭ୍ୟାସଟା ଭିନ୍ନ ଧରଣର । ତଥାପି କିଛି ଦିଅ । ଖାଇବାରେ ମୋର ଆପତ୍ତି ନାହିଁ । ଶ୍ରେୟସୀ କହିଲା, ମାନ କରିବା ମୁଁ ପସନ୍ଦ ନ କଲେ ମଧ୍ୟ ପାନ କରିବାର ବିରୋଧୀ ନୁହେଁ । ମୋର ଆପତ୍ତି ନାହିଁ । ସନନ୍ତ ଦାସ କହିଲେ, ନା, ଆଜି ନୁହେଁ, ଆଉ ଦିନେ……।

ଭୋଜନ ପରେ କଥାବାର୍ତ୍ତା ହେଲେ କିଛି ସମୟ । ତାପରେ ସନନ୍ତ ଦାସ ଢୁଳେଇଥିବାର ଦେଖି ଲାଇଟ୍ ଅଫ୍ କରିଦେଲା ଶ୍ରେୟସୀ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଶୋଇ ପଡ଼ିଲେ ସେ । ଅନେକ ଡେରିରେ ଶୋଇଲା ଶ୍ରେୟସୀ ।

ନିଦ ହେଉ ନ ଥାଏ ଭଲ କରି । ତଥାପି ସନନ୍ତ ଦାସଙ୍କର ଶୃଙ୍ଖଳା ଏବଂ ସୌନ୍ଦର୍ଯ୍ୟଜ୍ଞାନ ତାକୁ ମୁଗ୍ଧ କଲା । ଗୋଟିଏ କୋଠରି ଭିତରେ ସେ ଏବଂ ସନନ୍ତ ଦାସ । ପୁଣି ତାଙ୍କର ବିଜ୍ଞାପନର ପାତ୍ରୀ । ତଥାପି ସନନ୍ତ ଦାସ ଆଗେଇଲେ ନାହିଁ, ବରଂ ଶ୍ରେୟସୀକୁ ଏଡ଼ିଗଲା ପରି ମନେ ହେଲା ।

ସକାଳ ହବାବେଳକୁ କଲିକତା । ହାଉଡ଼ା ଷ୍ଟେସନରୁ ଗ୍ରାଣ୍ଡ୍ ହୋଟେଲକୁ ମାତ୍ର କୋଡ଼ିଏ ମିନିଟର ବାଟ । ଦୁହେଁ ବସିଲେ ପାଖାପାଖି ଗୋଟିଏ ଗାଡ଼ିରେ । ରାସ୍ତାରେ ଗୋଟେ ଦୁଇଟା ବିଷୟରେ ସାମାନ୍ୟ କଥାବାର୍ତ୍ତା ହେଲା । ତାହା ପୁଣି ହଁ କି ନାରେ ସୀମାବଦ୍ଧ । ଓଡ଼ିଶା ଭିତରେ ସନନ୍ତ ଦାସ ପ୍ରସିଦ୍ଧ, କିନ୍ତୁ ବ୍ୟକ୍ତି ଭାବରେ ନୁହେଁ । ସେ ଚୁପ୍ ଚାପ୍ ନୀରବ ପ୍ରକୃତିର । କଥା କମ୍ କୁହନ୍ତି । ଉପରେ ପଡି କଥା କହିବାର ଅଭ୍ୟାସ ଶ୍ରେୟସୀର ନାହିଁ । କିନ୍ତୁ ତଥାପି ତାର ମନେହେଲା ସନନ୍ତ ଦାସ ଖୁବ୍ ଚୁପା ପ୍ରକୃତିର, ଅସ୍ୱାଭାବିକ ଭାବରେ ନୀରବ ।

ସକାଳଟା କଟିଗଲା । ସନନ୍ତ ଦାସଙ୍କ ସହିତ ମଧ୍ୟାହ୍ନ ପର୍ଯ୍ୟନ୍ତ ଆଉ ସାକ୍ଷାତ ହେଲା ନାହିଁ । ମଧ୍ୟାହ୍ନ ଭୋଜନ ସମୟରେ ପୁଣି ଦୁହେଁ ଏକାଠି ବସିଲେ । ଆହାର ପର୍ଯ୍ୟାପ୍ତ, ଭଲ ଖାଇଲେ ସନନ୍ତ ଦାସ । କିନ୍ତୁ ପ୍ରାୟ କିଛି ଖାଇଲା ନାହିଁ ଶ୍ରେୟସୀ । ଖାଇବାକୁ ଇଚ୍ଛା ହେଲା ନାହିଁ । ସେ ସାଙ୍ଗ ହୋଇ ଆସିଥିଲା, ସାଙ୍ଗ ହୋଇ ଖାଇବାର କଥା ଥିଲା । କିନ୍ତୁ ସନନ୍ତ ଦାସ ଯେପରି ଖାଇ ଚାଲିଲେ ସେଥିରୁ ଅନୁମାନ କଲା ଶ୍ରେୟସୀ ଯେ ସେ ଖାଇବାରେ ବି ଏକା, ତାଙ୍କର କେହି ସାଙ୍ଗ ନାହିଁ । ଶ୍ରେୟସୀ ନିଜକୁ ନିଜେ କହିଲା, ତୁ ଅନ୍ଧକାରରେ ବସିଗଲୁ ।

ଅପରାହ୍ଣଟା ବି ରଙ୍ଗ ହ୍ରାନ । ବଗିଚାରେ ବଡ଼ ବଡ଼ ଡାଳିଆ ଏବଂ ଗୋଲାପ ଫୁଟିଥିଲେ । ସେହି ଫୁଲମାନଙ୍କ ଗହଣରେ ଅନେକ ସମୟ ବସିଲା ଶ୍ରେୟସୀ । ଗାର୍ଡ଼େନ ଚୌକି ଆଜ ଗୋଟେ ଖାଲିଥିଲା । ସନତ୍ ଦାସ ଟିକେ ଦୂରରେ ବାରଣ୍ଡାରେ ଏକାକୀ ବସି ଖବର କାଗଜ ପଢ଼ୁଥିଲେ । ସେ ଶ୍ରେୟସୀକୁ ହୁଏ ତ ଦେଖି ନ ଥିବେ ଭାବି ଶ୍ରେୟସୀ ତାଙ୍କୁ ଶୁଣିବା ଭଳି ପାଟି କରି ବୟ୍‌କୁ ଡାକି ଚା' ଆଣିବା ପାଇଁ କହିଲା । ଚା ଆସିଲା; କିନ୍ତୁ ସନତ୍ ଦାସ ଆସିଲେ ନାହିଁ । ଚା'ଟା ନ ପିଇ ସେହିପରି ଗ୍ରାଉଣ୍ଡରେ ଛାଡ଼ିଦେଲା ଶ୍ରେୟସୀ । ବଗିଚାଟା ଆଉ ଭଲ ଲାଗୁ ନଥାଏ । ସେ ଉପରକୁ ଉଠି ନିଜ କୋଠରୀର ଦରଜା ବନ୍ଦ କରିଦେଲା ।

ରାତି ନଅଟାରେ ଗାଡ଼ି । ରାତ୍ରିଭୋଜନ ମଧ୍ୟ ନୀରବରେ ଏକାକୀ ସମାପ୍ତ କଲା ଶ୍ରେୟସୀ । ତାପରେ ସେ ବାହାରି ପଡ଼ିଲା ଷ୍ଟେସନ ଅଭିମୁଖେ । ସିଡ଼ି ତଳେ ତାକୁ ଅପେକ୍ଷା କରୁଥିଲେ ସନତ୍ ଦାସ । ଦୁହେଁ ଗାଡ଼ିରେ ବସି ଷ୍ଟେସନ ଗଲେ । ତାଙ୍କର ମୌନବ୍ରତକୁ ଭାଙ୍ଗିବା ପାଇଁ କହିଲା ଶ୍ରେୟସୀ, କିପରି ଲାଗିଲା ବିଜନଟା, କେତେ କାମ କଲେ ? ସନତ୍ ଦାସ କହିଲେ, ବେଶ୍ ଭଲରେ କଟିଗଲା । କାମ କରିବା ପାଇଁ ତ ଆସି ନ ଥିଲି । ଆସିଥିଲି ବିଶ୍ରାମ ପାଇଁ । ଭଲ ବିଶ୍ରାମ ହେଲା । ଶ୍ରେୟସୀ ଷ୍ଟେସନ ପହଞ୍ଚି ଯିବାରୁ କହିଲା, ଏକା କୋଠରୀରେ ଯିବା ? ସନତ୍ ଦାସ କହିଲେ—ହଁ, ଅନ୍ୟ ବ୍ୟବସ୍ଥା ତ ମୁଁ କରିପାରି ନାହିଁ ।

ପୁରୀ ଏକ୍‌ସପ୍ରେସ୍‌ର ଶୀତତାପ ନିୟନ୍ତ୍ରିତ ଡବାର ଗୋଟିଏ ଦୁଇଶଯ୍ୟା ବିଶିଷ୍ଟ ବଖରା । ସନତ୍ ଦାସ ଏବଂ ଶ୍ରେୟସୀ । ବିଛଣା ପାରି ଦେଇଥାଏ ଆଟେଣ୍ଡେଣ୍ଟ । ପାଣି ଦୁଇଗ୍ଲାସ ବି ରଖି ଦେଇଥାଏ ଯଥା ସ୍ଥାନରେ । ଆଉ କିଛି ପ୍ରୟୋଜନ ଅଛି କି ବୋଲି ପଚାରି ଶୁଭରାତ୍ରି ଜଣାଇ ଚାଲିଗଲା ସେ । ଗାଡ଼ି ଚାଲିବା ବେଳକୁ କୋଠରୀ ଭିତରେ ଶ୍ରେୟସୀ ଓ ସନତ୍ ଦାସ । ଶ୍ରେୟସୀ ଆଶ୍ଚର୍ଯ୍ୟ ହୋଇ କହିଲା, ଆସିବାବେଳେ ଚାରିଟା ବର୍ଥରୁ ଦୁଇଟା ଖାଲିଥିଲା । ଯିବାବେଳେ ଦୁଇଟା ବର୍ଥ ପୂର୍ଣ୍ଣ । ସନତ୍ ଦାସ କହିଲେ, ଚାରିଟା ବର୍ଥରୁ ଦୁଇଟା ଖାଲିଥିଲେ ମାଡ଼ମାଡ଼ି ପଡ଼େ, ମନେହୁଏ ଆଉ କିଏ ରହିଛି । ଏ ବରଂ ଭଲ । ଅନେକ ନିରୋଳା ଏବଂ...... । ସମାପ୍ତ କରିବା ପୂର୍ବରୁ କହିଲା ଶ୍ରେୟସୀ, 'ଆପଣଙ୍କୁ ଭଲ

ଲାଗେ ଇମିତ ମିବା ପାଇଁ ? ସନତ୍ ଦାସ କିଛି ନ କହି କେବଳ ଗ୍ଭହିଁ ରହିଲେ ଶ୍ରେୟସୀକୁ । ରାତି ବେଶୀ ହେଲଣି । ଲାଇଟ୍‌ଟା ଅଫ କରିଦେଇ ଉପର ବର୍ଥକୁ ଉଠିଗଲେ ସନତ୍ । ଶ୍ରେୟସୀ ଆହତ ହୋଇ ବସି ରହିଲା ନିଜ ବର୍ଥରେ ।

ସାରା ରାତି ଗାଡ଼ି ଚାଲିଲା । ଇଞ୍ଜିନର ଶବ୍ଦ ସହିତ ଝୁସାର ଶବ୍ଦ ଶୁଣିଲା ଶ୍ରେୟସୀ । ଝରକାର ପର୍ଦ୍ଦା ଠେଲି ବାହାରକୁ ଅନାଇଲା । ମଶିବ୍ୟାପ୍ତ ଅନ୍ଧକାର । କାଁ ଭାଁ କେଉଁଠି ଆଲୋକର ଛିଟା ।

ଶ୍ରେୟସୀ କାହିଁକି ବିଷଣ୍ଣ ହୋଇ ପଡ଼ିଲା; କାରଣ ଖୋଜି ପାଇଲା ନାହିଁ । ଚୁକଟାର ଛଣ୍ଡରଭଜ ଶେଷ ହେବା ପରେ ଚୁକଟା ହେଲା ନାହିଁ ଜାଣିଲେ ଯେପରି ବ୍ୟଥା ଜାଗେ ମନରେ ସେହିପରି ମନଟା ବେଦନା ଓ ଅବସାଦରେ ମୂହ୍ୟମାନ ହୋଇଗଲା । ଶୋଇବାକୁ ଚେଷ୍ଟା କରି ବି ଶୋଇ ପାରିଲା ନାହିଁ । ଜୀବନରେ ଅନେକ ଲୋକ ସହିତ ଏକାଠି ବସିଛି, ଗମିଛି, କିନ୍ତୁ ନିଜକୁ ପରିତ୍ୟକ୍ତ ମନେ ହୋଇନାହିଁ । ଆଜି ମନଟା ଅସ୍ଥିର ହେଲା ଏଇ ରାତ୍ରୀରେ । ସେ ସନତ୍ ଦାସଙ୍କର ସର୍ତ୍ତ ମାନି ଦରଖାସ୍ତ କରିଥିଲା, ତାଙ୍କୁ ପରଖି ନବା ପାଇଁ ନୁହେଁ, ଶାସ୍ତି ଦବା ପାଇଁ । ସେ ସୁଯୋଗଟା ଆଜି ଆସିଲା ନାହିଁ । ବସି ବସି ଭାବିଲା, ଶବ୍ଦ ବି ଠିକେ ହେଲା । କିନ୍ତୁ ନିଦ ଭାଙ୍ଗିଲାନି ସନତ୍ ଦାସଙ୍କର । ସତେ ଯେପରି କୁମ୍ଭକର୍ଣ୍ଣ ନିଦ । ଶୋଇଥିଲେ ଉଠନ୍ତି ନାହିଁ ।

ଭୁବନେଶ୍ୱର ପହଞ୍ଚିବା ବେଳକୁ ସକାଳ ସାତ । ମଥାଟା ଭାରି ଲାଗୁଥାଏ । ଅନିଦ୍ରା ଯୋଗୁଁ ଯୋଡ଼ି ହୋଇ ଯାଉଥାଏ ଆଖି । କିନ୍ତୁ ଆଉ କିଛି ନ କହି ନିଜେ ଯାଇ ଗୋଟେ ରିକ୍ସାରେ ବସିଲା ଶ୍ରେୟସୀ । ସନତ୍ ଦାସ ଗାଡ଼ିରେ ମିବା ପାଇଁ କହିଲେ । କିନ୍ତୁ କିଛି ଶୁଣିଲା ନାହିଁ ସେ ।

ଘରକୁ ଆସି ବି ମନଟାକୁ ଶାନ୍ତ କରି ପାରିଲା ନାହିଁ ସେ । ଅସ୍ଥିର ଲାଗୁଥାଏ । ମନେ ହେଉଥାଏ ଯେପରି କଅଣ ପାଇବାର ଥିଲା ମିଳିଲା ନାହିଁ । ଗୋଟେ ତୀବ୍ର ଯନ୍ତ୍ରଣାରେ ସେ ଶିହରି ଉଠିଲା ।

ତା ପରଦିନ ଦ୍ୱିପ୍ରହରର ଡାକରେ ଚିଠିଟା ପାଇ ଖୋଲି ପଢ଼ିଲା ଶ୍ରେୟସୀ । ସନତ୍ ଦାସଙ୍କର ଚିଠି । ଲେଖିଛନ୍ତି ପତ୍ର ଉତ୍ତର ମଧ୍ୟ ସଂକ୍ଷିପ୍ତ । "ତୁମେ ପରୀକ୍ଷାରେ ପାସ୍ କରିଛ । ଶୁଭଦିନ ଶୀଘ୍ର ସ୍ଥିର କରି

ତୁମ ବାପାଙ୍କୁ ଜଣାଇ ଦେବ । ତୁମ ଅପେକ୍ଷାରେ ଅନନ୍ତକାଳ— ସନତ୍ ଦାସ ।"

ଚିଠିଟା ସନତ୍ ଦାସଙ୍କର ଲେଖା କମ୍ବା ଆଉ କାହାର ଭଲ କରି ଜାଣିବା ପାଇଁ ତନ୍ନ ତନ୍ନ କରି ପୁଣି ପଢ଼ିଲି ଏବଂ ଠିକଣା, ଡାକଘରର ମୋହର ଏବଂ ତାରିଖ ସବୁ ପରୀକ୍ଷା କରି ଦେଖିନେଲି । ନିର୍ଭୁଲ । ସନତ୍ ଦାସଙ୍କର ଆମନ୍ତ୍ରଣ ।

ସହସା ସର୍ବାଙ୍ଗରେ ସେଇ ଯନ୍ତ୍ରଣାଟା ଆହୁରି ତୀବ୍ର ହୋଇ ଉଠିଲା । ଶ୍ରେୟସୀ ଛଟପଟ ହୋଇ କାଗଜ ଖଣ୍ଡେ ଟାଣିଆଣି ଲେଖିଦେଲି, ପାଷାଣ ସହିତ ଏକା ସାଙ୍ଗରେ ରହିବା ମୋର ସ୍ୱଭାବ ବିରୁଦ୍ଧ । ତାପରେ ଚିଠିଟା ଚିଠି ବାକ୍ସରେ ପକାଇଦେଇ ନିଜେ ନିଜକୁ ଶାସନ କଲା ଭଙ୍ଗୀରେ କହିଲି, ତୋ ଭିତରେ ଏତେ ଇଚ୍ଛା ଯଦି ଥିଲା ଜାଣି ନ ଥିଲୁ କାହିଁକି ? ଶେଷରେ ଅନ୍ଧକାରରେ ବସିପିବୁ ?

———



# ଆକ୍ରୋଶ

● ରବୀନ୍ଦ୍ର ନାଥ ଦାସ

ସମସ୍ତ ହାଁ କରି ଅନାଇଛନ୍ତି ଏକ ଲୟରେ ସେହିଆଡ଼କୁ — ବଡ ଭଳଆ ଆଖି ଦୁଇଟାକୁ ଟେଙ୍କି ଦେଇ ମଝିରେ ମଝିରେ 'ଏଇ ଗଲ, ଗଲ' ବୋଲି ଚଳେଇ ଉଠୁଛନ୍ତି । ଏତେ ବଡ଼ ସୁନ୍ଦର ଫାଙ୍କା ଆକାଶରେ ଟଣ୍ଡି ଆଭୂତ ଭଳିଆ ଡେଇଁ ଡେଇଁକା ସେ ଆଖି ପିଛୁଳାକେ କୁଆଡ଼େ ଆସି କୁଆଡ଼େ ଉଭାଇ ଯାଉଛି । ସତେଅବା ଲଙ୍କା ଠାବ କରିବାକୁ ସାତ ସମୁଦ୍ରକୁ ଡେଇଁ ଡେଇଁ ଯିବାକୁ ବୀର ହନୁମାନ ସଜବାଜ ହେଲେଣି । ସେହି ଏକ ଧ୍ୟାନରେ ସେହି ଗୋଟିଏ ଜିନିଷକୁ ଅନେଇ ଅନେଇ ସମସ୍ତଙ୍କ ଆଖି ଯେମିତି ଜଳକା ହୋଇଗଲାଣି । ଓଳିଆ ଭିତରେ କ'ଣ ସବୁ ଖୁଦାଖୁଦି ହେଲାଭଳିଆ ମେଞ୍ଚ ଭିତରର ଏତେଗୁଡ଼ିଏ ଶବ୍ଦ ଜାକଜୁକ ହୋଇ ବସିଥିଲେ ବି ହାକୁଡ଼ି ଖାଇଲା ଭଳି 'ହେଇ', 'ହେଇ' ଶବ୍ଦଟା ପାଟି ଭିତରୁ ଅଜାଣତରେ ବାହାରି ଆସୁଛି । ରେଡିଓରେ ପାଣିପାଗର ବିଶେଷ ସମ୍ବାଦ ନ ଥିଲେ ବି ଅଚାନକ ପବନଟା କୁଆଡୁ କେଜାଣି 'ସୁ' 'ସୁ' କରି ମାଡିଆସି କେଇ ଦଣ୍ଡ ଭିତରେ ସବୁ ଏପଟ ସେପଟ କରି ସବୁ ଗଛ, ବୃଛ, ଘରକୁ ପରସ୍ତେ ପରସ୍ତେ ଜାବୁଡ଼ା ମାରି 'ହୁ' ମାରି କୁଆଡ଼େ କୁଆଡ଼େ ଉଭାନ ହୋଇଯାଏ । ଆଜି ସୁମାରି କାଲ ବେଳକୁ କ'ଣ ଯେମିତି କୁଆଡ଼େ କ'ଣ ଘଟିଯାଉଛି । ଭିଡ଼ିପି କରି ପଚାରିବାକୁ କାହାରି ପାଟିରୁ ପଦୁଟିଏ ବି ବାହାରେ ନାହିଁ । ଯେମିତିଆ ଅଘଟଣ ଘଟଣା ଘଟିଯାଉଛି ଘଡ଼ିକୁ ଘଡ଼ି । ବୁଢ଼ାମାନେ ଧୀରେ ଧୀରେ କହୁଛନ୍ତି—ବେଳ ନିକଟ ହୋଇଗଲା—ଘୋର କଳିକାଳ । ଏତ

ପ୍ରଭୁ କଳ୍କି ଅବତାର ଧାରଣ କରିଛନ୍ତି ବାରହାତ ଖଣ୍ଡା ଧରି—ସାରା ଦେଶରୁ ମ୍ଲେଚ୍ଛ ସଂହାର ପାଇଁ କାମ ଆରମ୍ଭ କରି ଦେଲେଣି ପରା । ଦ୍ୱାରକା ନଗରରେ ଏଥର କୋଉଁଆ ଉପୁର ପାଳି—ଭୂମିକମ୍ପ, ଅତି ବୃଷ୍ଟି, ଅଗ୍ନି ଉପଦ୍ର ଇତ୍ୟାଦି ସାରବର୍ଷ ଧରି ଲାଗି ରହିବ । ସମସ୍ତେ ନିଜ ନିଜ ବେଳକୁ ଅପେକ୍ଷା କରି ବସିଅଛନ୍ତି । ସାରା ନଗ୍ରରେ ମୃତବତ୍ ନିସ୍ତବ୍ଧତା ବିରାଜମାନ କରୁଛି । ରାଜା, ପ୍ରଜା, ସେନାପତି, ମନ୍ତ୍ରୀ, ନଗ୍ର ଜନେ ସମସ୍ତେ ମାତେ ଭାବରେ ଅଜାଣତରେ ଏ ଢହଣା ସହ ଛନ୍ଦି ହୋଇ ଯାଇଛନ୍ତି । ନାହିଁ ନ ଥିବା ଏ ଏକ ମନୋହର ରାଜ୍ୟ । ଏ ରାଜ୍ୟରେ ଯେଉଁ ଫୁଲ ଫୁଟେ ତାର ମହ ମହ ବାସ ଖାଲି ମନ ଭିତରେ ଏକ ସ୍ୱପ୍ନ ଭାବ ସଞ୍ଚାରି ଦିଏ, ତା ନୁହେଁ···ସେ ଗଛରୁ ବର୍ଷ ବର୍ଷଧରି ଫୁଲ ମଉଳେ ନାହିଁ । ଏ ରାଜ୍ୟର ତରୁଣୀମାନେ ଚିର ଯୌବନା । ଏ ନଗ୍ରର ପୁରୁଷମାନେ କନ୍ଦର୍ପ ପରି ଅତ୍ୟନ୍ତ ଶୋଭାବନ୍ତ । ଶାଳ, ପିଆଶାଳ, କୁରୁମ ଓ ହରେକ୍ ରକମର ବୃକ୍ଷ ପରିବେଷ୍ଟିତ ଏ ରାଜ୍ୟର ଶୋଭା, ପଥିକର ମନ ହରଣ କରିନିଏ ଓ ପ୍ରହରୀ ଚିର ସଦା ଜାଗ୍ରତ । ତେଣୁ ଶତ୍ରୁମାନେ ଏହାର ସୀମା ସ୍ପର୍ଶ କରିବାର ଆସ୍ପର୍ଦ୍ଧା କରି ପାରନ୍ତି ନାହିଁ । ଏ ରାଜ୍ୟର ପ୍ରତ୍ୟେକ ନାଗରିକଙ୍କ କଟିରେ କମ୍ବା ହସ୍ତରେ ଅତ୍ୟାଧୁନିକ ଅସ୍ତ୍ର ଶସ୍ତ୍ର ଶୋଭା ପାଉଥିଲ । ହଠାତ୍ ଏପରି ଏକ ଚିର ସବୁଜମାର ଦେଶରେ କାହିଁକି ବିଦ୍ରୋହ ଆତଙ୍କ ଖେଳିଗଲା, କେହି ତାହା ଚିନ୍ତା କରି ନ ଥିଲେ । କାରଣ ଏ ରାଜ୍ୟର ରାଜକୁମାରୀ ଏବେ ମଧ୍ୟ ଅନୂଢ଼ା । ଯେହେତୁ ସେ ତାଙ୍କର ମନଲଖି ସାଥୀ ବାଛି ପାରି ନାହାନ୍ତି । ତାହାର କାରଣ ସମ୍ପର୍କରେ ଏକଥା କୁହାଯାଇ ପାରେ ରାଜକୁମାରୀ ଯେଉଁ ଅତୁଳନୀୟା ସୌନ୍ଦର୍ଯ୍ୟର ଅଧିକାରୀ, ତାଙ୍କ ସମତୁଲ୍ୟ ଜଣେ ଯୋଗ୍ୟପାତ୍ର ଏ ମହାଦେଶରେ କାହିଁ ସାରା ବିଶ୍ୱରେ ବିରଳ । ସବୁ ଯାଗାରେ ଖଚ କହିବାର ଲୋକଙ୍କର ଅଭାବ ନାହିଁ । ସେମାନେ ରାଜକୁମାରୀଙ୍କ ସମ୍ପର୍କରେ ନିଭୃତରେ ଏପରି କଥୋପକଥନ ହୁଅନ୍ତି ଯଥା—ରାଜା ଅର୍ଥ ଶ୍ରାଦ୍ଧ ଭୟରେ ରାଜକୁମାରୀଙ୍କୁ ବିବାହ ଦେବାକୁ ଅମଙ୍ଗ । ତେଣୁ ସେ ତାଙ୍କର ବୟସ ଅତିକ୍ରାନ୍ତା କଲେଣି । ସେହି ଖଳ ବ୍ୟକ୍ତିମାନେ ଏ କଥା ମଧ୍ୟ ପ୍ରଚାର କରନ୍ତି—ରାଜକୁମାରୀ ଉତ୍ତର ଯୌବନରେ ଅନେକଙ୍କ ସହ ପ୍ରେମାସକ୍ତା ଥିଲେ—ଏପରିକି ତାଙ୍କ ସ୍ୱଦେହ ରକ୍ଷୀଙ୍କ ସହ । ସେଥିପାଇଁ ଦେହ ରକ୍ଷୀଙ୍କୁ

ମୃତ୍ୟୁଦଣ୍ଡ ଦେବା ପୂର୍ବରୁ ସେ ଖୁବ୍ ଚତୁରତା ସହ ଅବୈଧ ସନ୍ତାନଙ୍କୁ ଧରି ରାଜ୍ୟ ଛାଡ଼ି ଚାଲି ଯାଇଥିଲେ । ଏହାପରେ ରାଜକୁମାରୀଙ୍କ ଚରିତ୍ରରେ ଏକ ପରିବର୍ତ୍ତନ ଦେଖାଗଲା ଓ ସେ ବ୍ରତଚାରିଣୀ ସନ୍ୟାସିନୀ ସଦୃଶ୍ୟ ଅନ୍ତରାଳରେ ଠାକୁରଙ୍କ ପୂଜାରେ ସମସ୍ତ ବିତାଉଛନ୍ତି । ସେମାନେ ଏକଥା ଖୁବ୍ ସତର୍କତା ସହ ଚୁପ୍ ଚାପ କଥାବାର୍ତ୍ତା ହୁଅନ୍ତି, କାରଣ ଏହା ଯଦି ରଜାଙ୍କ ଶ୍ରବଣକୁ ଯାଏ ଶିରଚ୍ଛେଦ ଅନିବାର୍ଯ୍ୟ । ଏ ରାଜ୍ୟର ମୁଷ୍ଟିମେୟ ସୁନାଗରୀକ ବ୍ୟକ୍ତି ଯେଉଁମାନେ ଏ ରାଜ୍ୟର ଉପାନ୍ତରେ ବାସ କରୁଛନ୍ତି, ଯାହାଙ୍କର ଘରଦ୍ୱାର, ଜମିବାଡ଼ି, କିଛି ନାହିଁ—ସେମାନେ ତାଙ୍କର ସବୁକିଛି ଦେଇ ରାଜ୍ୟର ଶ୍ରୀବୃଦ୍ଧି ସାଧନ କରୁଛନ୍ତି । କାରଣ ଏଥିପାଇଁ ସେମାନଙ୍କର ଜନ୍ମ—ଯାହାଙ୍କୁ ଜଣେ ଜଣେ ନେତା ମଝିରେ ମଝିରେ ଭାଷଣ ଦେଲାବେଳେ ନିଷ୍ପେଷିତ, ଦଳିତ, ଅବହେଳିତ ବୋଲି ବାଖ୍ୟା କରନ୍ତି ଆଜି ରଜା ସେମାନଙ୍କୁ ଅଭିଶପ୍ତ ବୋଲି କହନ୍ତି । ସେମାନେ ରାଜ୍ୟର ଶେଷ ସୀମାରେ ବସତି ସ୍ଥାପନ କରିଛନ୍ତି ଏଇଥିପାଇଁ, ସେମାନେ ନିଜକୁ ଅନ୍ୟମାନଙ୍କଠାରୁ ଅଲଗା ମନେ କରନ୍ତି ଓ ରାଜାଙ୍କୁ ସ୍ୱୟଂ ଭଗବାନଙ୍କ ଅବତାର ବୋଲି ସ୍ୱୀକାର କରି ତାଙ୍କରି ଆଦେଶରେ ବିନା ଦ୍ୱିଧାରେ ସମସ୍ତ କାର୍ଯ୍ୟ ସମ୍ପାଦନ କରନ୍ତି । ଯଦି କଦବା କେବେ ସେହି ରାଜ୍ୟର ବଳିଷ୍ଠ ସୁନାଗରିକଙ୍କ ସୁଦୃଷ୍ଟି ସେହି ବସତିର ରକ୍ତହୀନା ତରୁଣୀମାନଙ୍କ ପ୍ରତି ପଡ଼େ, ତାହେଲେ ସେମାନଙ୍କର ଅନୁରକ୍ତ ବାପ, ମା କିମ୍ବା ସ୍ୱଦେଶପ୍ରେମିକ ସ୍ୱାମୀ ସେମାନଙ୍କୁ ବିନା ଦ୍ୱିଧାରେ ସେହି ସୁନାଗରୀଙ୍କ ପାଖରେ ଉତ୍ସର୍ଗ କରି ଦିଅନ୍ତି । ସେମାନଙ୍କ ଜୀବନ ଧନ୍ୟ ହେବ ବୋଲି—ଯଦିଓ ସେମାନେ ସେହି ଲଜ୍ଜାହୀନ ବାପ, ମା କିମ୍ବା ନପୁଂସକ ସ୍ୱାମୀମାନଙ୍କ ବିରୁଦ୍ଧରେ ପ୍ରତିବାଦ ତୋଳି ପାରନ୍ତି ନାହିଁ ତଥାପି ଯେମିତି ଏକ କୁତ୍ସିତ ଲାଳସା ତାଙ୍କର ସମଗ୍ର ଶରୀରକୁ ଗ୍ରାସ କରିଯାଏ । ସେମାନଙ୍କର ଦପ୍ ଦପ୍ ହୋଇ ଜଳୁଥିବା ଆଖି ଭିତରୁ ଏହାର ସନ୍ଧାନ ମିଳେ । ମାତ୍ର ରାଜପୁରୀମାନଙ୍କ ପାଇଁ ଏହା ଏକ ଖୋରାକ ମାତ୍ର—ମାତ୍ର ଏହାକୁ ଯଦି କିଏ ଅତ୍ୟାଚାର କହେ, ତା'ହେଲେ ଏହା ଶବ୍ଦର ଅପପ୍ରୟୋଗ ବୋଲି ବୁଝିବାକୁ ପଡ଼ିବ । ଏହିପରି ଏକ ରାଜ୍ୟରେ ସବୁ ଠିକ୍ ଥିଲାବେଳେ ପିଲାଠାରୁ ବୁଢ଼ାଯାଏ ଖାଲି 'ହେଇ', 'ହେଇ'

କନ୍ତୁ ମିଟମିଟ ବୃହିବା ଓ ତାପରେ ହଠାତ୍ ତଳକୁ ମଥା ନୁଆଁଇ ଦେବା ଯେମିତ ଅନ୍ୟ ଏକ ଅଭିନବ ଦୃଶ୍ୟ । ଘଡ଼ିକି ଘଡ଼ି ମନ୍ତ୍ରଣା ଚାଲିଛି । ମାତ୍ର ତାକୁ କେହି ଧରି ପାରୁ ନାହାନ୍ତି । ସତେ ଯେମିତି ମେଘ ଖଣ୍ଡେ ଆକାଶରୁ ଛିଣ୍ଡି କୁଦାମାରି ଏ ପଟ ସେପାଖ ହୋଇ ସାରା ରାଜ୍ୟଟାକୁ କଲବଲେଇ କରି ପକାଉଛି । ତାପରେ ମୃତ୍ୟୁର ଏକ ଶୀତଳ ନିସ୍ତବ୍ଧତା । ଏହି ଯେପରି 'ହେଇ', 'ହେଇ', 'ହେଇ' । ତାପରେ ଦେଖାଗଲା ରଜାଙ୍କ ମଦ୍ୟଶାଳାର ସମସ୍ତ ପାତ୍ର ଭୂଲୁଣ୍ଠିତ ହୋଇଯାଉଛି—ମଦ୍ୟପମାନଙ୍କୁ ନିର୍ଘାତ ମାଡ଼—କାହା ମୁଣ୍ଡ ଫାଟିଛି—କାହା ନାକରୁ ରକ୍ତ ବାହାରୁଛି । ପୁଣି ସିଏ କେତେବେଳେ ଯାଇଁ ବନ୍ଦୀଶାଳାରେ ହାଜର ହେଲାଣି—ସମସ୍ତେ ତାକୁ ସଲାମ ଠୁକୁଛନ୍ତି । ଯୋଡ଼ି ଯୋଡ଼ି ହୋଇ ସବୁ ନିରପରାଧ ବନ୍ଦୀ ଚାଲିଯାଉଛନ୍ତି—'ହେଇ', 'ହେଇ,' 'ହେଇ'— ହଠାତ୍ ତାର ଆବିର୍ଭାବ ହେଲା ମୁଖ୍ୟବିଚାରପତିଙ୍କ ଇଜଲାସରେ—ସମାଧାନ ବିଚାର ଚାଲିଥାଏ—ସେହି ସହରତଳି ନିରୀହ ଲୋକଟିର ପଞ୍ଜରା ହାଡ଼ ଭାଙ୍ଗି ଯାଇଛି—ତଥାପି ସେ ଦୋଷୀ—କାରଣ ତାର ଘରପାଖ ଖାଲରେ ରାଜପୁତ୍ରଙ୍କ ଘୋଡ଼ାଟା ଝୁଣ୍ଟି ପଡ଼ିଲା । ସେ ଓକିଲର କାନ ଧରି ପଚାରିଲା ତୁ ଏମିତି ନ୍ୟାୟକୁ ଚେଷ୍ଟା କରୁଛୁ । ନିରୀହ ଲୋକଙ୍କୁ ଫାଶୀ ଦେବାକୁ ତୋ ହାତ ଯାଉଛି—ତାପରେ ଗୋଟାଏ ମୁହୂର୍ତ୍ତରେ ସବୁ ରେକର୍ଡ଼ ଇତସ୍ତତ ଫିଙ୍ଗିଦେଇ ସାମାନ୍ୟ ମାତ୍ର ସୂତ୍ର ନ ରଖି ସେ କୁଆଡ଼େ ଉଭେଇ ଗଲା । ବିଚାରପତିଙ୍କ ସହ ତାଙ୍କର ପାର୍ଶ୍ୱଚରମାନେ ମୋହଗ୍ରସ୍ତ ହୋଇ ପଡ଼ିଥିଲେ । ଏହିପରି ସମଗ୍ର ରାଜ୍ୟରେ ତାର ଗୋଟିଏ ପରେ ଗୋଟିଏ ଉତ୍ପାତ ଆରମ୍ଭ ହୋଇଗଲା । ଆକାଶରେ ଏମିତି ଉଡ଼ିଉଡ଼ି ଗଲାବେଳେ ସେ କେଉଁଠିକୁ ଯାଉଛି, ସେକଥା କେହି ଜାଣି ପାରୁ ନ ଥିଲେ, ମାତ୍ର ସେ ଥରେ ପହଞ୍ଚିଲା ପରେ ସବୁ ଠିକ୍ ଠାକ ଚାଲିବ, ଏଥିରେ କାହାର ସନ୍ଦେହ ନ ଥିଲା । ଲୋକମାନେ ତାକୁ ଯମଦୂତ, କାଳପୁରୁଷ କିମ୍ବା ସ୍ୱୟଂ ସଂହାର କର୍ତ୍ତା ବୋଲି ବିବେଚିତ କରୁଥିଲେ । ଘଣ୍ଟାକୁ ଘଣ୍ଟା ତା ରୂପ ବଦଳି ଯାଉଥିଲା । କିଏ କହୁଥିଲା ସେ ଭୂଇଁ ଉପରେ ମାଙ୍କଡ଼ ଭଳିଆ ଡେଇଁ ଡେଇଁ ଯାଉଛି—ମୁହଁଟା ଗୋଜିଆ—ଲାଙ୍ଗୁଡ଼ ନାହିଁ । ଆଉ କିଏ କହୁଥିଲା ଭାଲୁ ଭଳିଆ କଳାକଳା ଲୋମ ତା' ଦେହସାରା ଭର୍ତ୍ତି

ହୋଇଛି । ମେ ଚଢ଼େଇ ଭଳିଆ ଉଡ଼ି ପାରୁଛି, ମାଛ ଭଳିଆ ପାଣି ଭିତରେ ବୁଡ଼ି ଯାଉଛି । ଆଜି କିଏ କହୁଥିଲା ଡେହେରାଟା ଦେଖିବାକୁ ବିଶ୍ୱମଣିଷ ଭଳିଆ— ଖୁରା ଭଳିଆ ନଖ ସବୁ ଯେମିତି ଇସ୍ପାତରେ ତିଆରି । ତା ବିଷୟରେ ସଠିକ ବିବରଣୀ ଟିଏ ଯେମିତି ସୃଷ୍ଟି ଥିଲା ଘଡ଼ିକ ଘଡ଼ି ମନଇଚ୍ଛା ତିଆରି କରୁଥିଲା । ବୁଢ଼ାବୁଢ଼ୀ ମାନେ କହୁଥିଲେ ସେ ବୀର ବଜରଙ୍ଗ ହନୁମାନ । କାଳକାଳକୁ ସେ ଅଜର ଅମର । ଯେଉଁଠି ଅନ୍ୟାୟ, ଦୁର୍ନୀତି ଦେଖାଦେଉଛି ତାକୁ ସାବାଡ଼ କରିବାକୁ ସେ ପାଇଁ ହାଜର ହୋଇ ଯାଉଛି । ସେ ଆଜନ୍ମ ବ୍ରହ୍ମଚାରୀ ପ୍ରଭୁ ରାମଚନ୍ଦ୍ରଙ୍କ ଦୂତ ପରା—କେତେଦିନ ଜଙ୍ଗଲ ଭିତରେ ଆଖିରେ ପୁଟୁଳି ବାନ୍ଧି ସେ ସବୁ ସହୁଥିବ । ଯେଉଁଠି ଏମିତିଆ ଘଟଣା ଘଟିବ, ସେ ସେଠି ଲଙ୍କା କାଣ୍ଡ ଆରମ୍ଭ କରିଦେବ । ସେଇଥିପାଇଁ ତାକୁ କିଏ ଧରିପାରୁନାହାନ୍ତି କି ତାର କିଛି କରିପାରୁ ନାହାଁନ୍ତି । ଠିକଣା ଜାଗାରେ ଠିକ୍ ସମୟରେ ପହଞ୍ଚି ସବୁ ଠିକଣା କରି ଦେଉଛି । ଯେମିତି ତାର ଆବିର୍ଭାବ ହେଲା ମେଡ଼ିକାଲ କ୍ୟାମ୍ପସ୍ ଭିତରେ । କଥିତ ଅଛି, ଏ ମେଡ଼ିକାଲକୁ ଯେଉଁ ରୋଗୀମାନେ ଆସନ୍ତି, ପ୍ରଖ୍ୟାତନାମା ଡାକ୍ତରଙ୍କ ସୁଚିକିତ୍ସା ବଳରେ ସେମାନେ ସବୁଦିନ ପାଇଁ ଏ ରୋଗ, ଦୁଃଖ, ଶୋକରୁ ପରିତ୍ରାଣ ପାଆନ୍ତି । ଏଠାରେ ରୋଗୀଙ୍କ ପାଇଁ କିଣା ହେଉଥିବା ଔଷଧ ବାହାରେ ବିକ୍ରୟ ହୁଏ, କାରଣ ଡାକ୍ତରଙ୍କ ହାତ ବାଜୁ ବାଜୁ ରୋଗୀ ଭଲ ହୋଇଯାଏ । ବହୁତ ସମୟରେ ଡାକ୍ତରଖାନା ଡାକ୍ତରଶୂନ୍ୟ । ତାହାର କାରଣ ସମ୍ପର୍କରେ ଏକଥା କୁହାଯାଇ ପାରେ, ରଜା ବା ରାଜପରିବାରଙ୍କର ସ୍ୱାସ୍ଥ୍ୟ ପରୀକ୍ଷାରେ ସେମାନେ ବ୍ୟସ୍ତ । ହଠାତ୍ ଏପରି ଏକ ମୁହୂର୍ତ୍ତ୍ୟ ଚିକିତ୍ସାଳୟରେ ତାର ଯେମିତି ଆବିର୍ଭାବ ହେଲା ମୁଖ୍ୟ ଚିକିତ୍ସକଙ୍କ ସହ ତାର ଭେଟଣା ହୋଇଯିବାରୁ ସେ ଚେତାଶୂନ୍ୟ ହୋଇ ପଡ଼ିଥିଲେ । ସେ ତାଙ୍କୁ ଚେତା କରାଇଲା ଓ ସେ ତାର ହୁଁ ହୁଁରୁ କ'ଣ ବୁଝିଲେ କେଜାଣି, ମୁଖ୍ୟ ଚିକିତ୍ସକ ତାର ଗୋଡ଼ ଦୁଇଟାକୁ ଜାବୁଡ଼ି ଧରିଲେ । ତାପରେ ସେ ମୁଖ୍ୟ ଚିକିତ୍ସକଙ୍କୁ ଧରି ଡାକ୍ତରଖାନାର ସବୁ ଓ୍ୱାର୍ଡ଼, ଡାକ୍ତରଙ୍କ ରୁମ୍ ସବୁ ଘିରିଘିରି କରି ବୁଲି ଦେଖିଲେ ଓ ରୋଗୀମାନେ ଲମ୍ବିହୋଇ ତାଙ୍କ ଗୋଡ଼ତଳେ ପଡ଼ିଯିବାରୁ ହୁଁ ହୁଁ କହିଲେ । ସେତିକିରେ ସେମାନେ

ବୋଧ ହୋଇଗଲେ—ସେଇଠୁ ମେଡ଼ିକାଲ ବୁଲିସାରି ସେ ଯେତେବେଳେ ମୁଖ୍ୟ ଚିକିତ୍ସକଙ୍କୁ ଡ଼ମା ଡ଼ମା ଆଖିରେ ଅନେଇଲେ, ଯେମିତି ତା'ଭିତରେ ସେ ଜଳିଯିବେ । ସେ 'ସୁଉଁ ସୁଉଁ' କାଢ଼ ଭୁଲ ହୋଇଛି କହି କ୍ଷମା ମାଗିବସିଲେ । ତା'ପରଠାରୁ ମେଡ଼ିକାଲରେ ସବୁକାମ ଠିକ୍ ଠିକ ଚାଲିଛି—ରୋଗୀମାନେ ତାର ଜୟ ଜୟକାର କରୁଛନ୍ତି । ଡାକ୍ତରମାନେ ଏଠି ଖାଲି ମେଲା ମେଲା ହୋଇ ବୁଲୁଛନ୍ତି, ଔଷଧ ମିଳୁଛି—ରୋଗୀମାନେ ସୁସ୍ଥ ଦେହରେ ଫେରି ଯାଉଛନ୍ତି । ସବୁଦିନେ ଏମିତି 'ହେଇ' 'ହେଇ' 'ହେଇ' —ଆକାଶର ଖଣ୍ଡିଆଭୂତଟା ପୁଣି କେଉଁଠିକୁ ବାହାରିଲାଣି—ସେଠି ସବୁ ସାବାଡ଼ କରିଦେବ—ଗରିବମାନେ ବୁଝିଲେଣି ସେ ତାର ବାପ ମା । ତାଙ୍କର ପାଇଁ ତାର ଏହି ଅବତାର । ପୁଣି ଏକ ଅଘଟଣ ଘଟିଗଲା । ସେତେବେଳକୁ ସାରା ରାଜ୍ୟରେ ଚାଉଳ ଚୋଟେ ମିଳୁନ । ଶହ ଶହ ଲୋକ ଧାଡ଼ିବାନ୍ଧି ଅନ୍ନପୂର୍ଣ୍ଣା ଭଣ୍ଡାର ଆଗରେ କେଇଦିନ ହେଲା ପଡ଼ିରହିଛନ୍ତି । ଚାକର ଆସି କହିଯାଉଛି—'ମାଲିକ ନାହିଁ' । କେଉଁ ଖାଦ୍ୟରେ ବିଷ ମିଶାଇ ଲୋକଗୁଡ଼ାଙ୍କୁ ଅସମୟରେ ଯମ ପୁରକୁ ପଠାଇବା ତାର ଧର୍ମ । ଏମିତି ଏକ ଘଡ଼ିସନ୍ଧି ବେଳରେ ସେ ସେଇଠି ହାଜର ହେଲା—ତାପରେ ଗୋଦାମର ସବୁ କବାଟ ଖୋଲିଗଲା—କାହା ପାଟିରୁ ପଦଟିଏ ବାହାରୁନି । ଲଙ୍ଗଳା ପିଲାମାନେ ଝଣ୍ଟିଆ ଥାଳିଧରି ଚାଉଳ ଗୋଟାଇବାରେ ଲାଗିଛନ୍ତି । ସଭିଙ୍କ ହାତଗୋଡ଼ ଯେମିତି ବନ୍ଧା ହୋଇଛି—ଏମିତିଆ ଏକ କାଣ୍ଡ ଭିଆଇ ସେ କୁଆଡ଼େ ଉଭାଇଗଲାଣି—ତାପରେ ସବୁ ଠିକ୍ ଠାକ୍ । ଇସ୍କୁଲରେ ପାଠ ପଢ଼ାଇଲାବେଳେ ମାଷ୍ଟ୍ରେ ଆଉ ଝୋଳେଇବେନି । ବସ୍ ବାଲା ବସ୍ତା ଭଳିଆ ଲୋକଙ୍କୁ ଖୁନ୍ଦି କରି ନେଉନି । 'ହେଇ', 'ହେଇ', 'ହେଇ' ରାତି ଅଧରେ ପୁଣି ଖଣ୍ଡିଆଭୂତ ଆକାଶରେ ଦେଖାଗଲା । ପୁଣି କ'ଣ ଘଟିବ କିମ୍ବା ଘଟିବାକୁ ଯାଉଛି । ସହର ସୀମାନ୍ତର ଚାଳ ସାହିରେ ଯୁଆନ୍ ଟୋକାଟାଙ୍କୁ ରଜାଘରୁ ଆସିଛୁ କହି ଯେଉଁ ସାତଜଣ ଓଟାରି ପକାଉଥିଲେ, ଆଜି ଟିକେ ହୋଇଥିଲେ, ହାଣ୍ଡି ଭଳିଆ ଦଳ ବଦାରି ପକାଇଥାନ୍ତେ···ସେଇଠି ତାର ଆବିର୍ଭାବ ହେଲା ଆଉ ତା'ପରେ ସବୁ ଦଫାରଫା ହୋଇଗଲା । ସାତଟା ଭେଣ୍ଡାଟୋକା ମଲାଭଳିଆ ପଡ଼ିଥାନ୍ତି । ସେହି ଦିନଠାରୁ ରାତି ଅଧରେ ସେହି ରାଜ୍ୟର ଯୁଆନ୍ ଝିଅମାନେ ଏକା ଏକା ଚଳପ୍ରଚଳ ହେଲେ କେହି ତାଙ୍କୁ

ଆଉଁଆଖିରେ ଅନାଇ ନ ଥିଲେ । ସେଇଠି ରାଜ୍ୟରେ ଭୁହାକୁ ଭୁହା ମନ୍ତ୍ରଣା ଚାଲିଛି—ରଜାଖାଲି ଫଁ ଫଁ ହେଉଛନ୍ତି । କେତେବେଳେ ହାତରୁ ଖଣ୍ଡା ଖସିପଡ଼ୁଛି ତ ମୁଣ୍ଡରୁ ମୁକୁଟ ଟୁଆଉ ହୋଇ ପଡ଼ୁଛି । ତାକୁ ନ ଧରି ଆଣିଲେ, ମୁଁ ସମସ୍ତଙ୍କୁ ଶୂଳଖଣ୍ଡରେ ବସାଇବି । ମୁଁ ରାଜା ହେବି ଆଉ ଜଣେ ମୋ ରାଜ୍ୟରେ ଶାସନ କରିବ । ପୁଲିସ ସାହେବ କହିଲେ—'ସେ ଉଡ଼ିଗଲା ବେଳେ କିଛି ଅସ୍ତ୍ର ତାପାଇଁ କାଟିକରିନ ।' ରଜା ଚିଡ଼ିଯାଇ କହିଲେ, 'ତୁମେ ସବୁ କ'ଣ ପାଇଁ ଅଛ ?' ତା ମୁଣ୍ଡକାଟ ପାଇଁ ଟଙ୍କାର ପିଆଦ ଦିନକୁ ଦିନ ବଢ଼ୁଛି - ଏବେ ଲକ୍ଷେ ଟଙ୍କା ହେଲଣି—କେହି ତାକୁ ଧରିପାରୁ ନାହାନ୍ତି—ମେ ଡେଙ୍ଗୁରା ପିଟି ଆସୁଥିଲା—ପଢ଼ାଅ ଯାଉଥିଲା, ସବୁ ଠିକ୍ ଠାକ୍ କରି ଉଭେଇ ଯାଉଥିଲା । ସେତିକିବେଳେ ସେହି ରାଜ୍ୟ ବାହାରେ ନିକାଞ୍ଚିଆ ଜଙ୍ଗଲ ଭିତରେ ରହୁଥିବା ସ୍ୱାମୀ ସ୍ତ୍ରୀ ଦୁଇଜଣ କଥାବାର୍ତ୍ତା ହେଉଥିଲେ—ପୁରୁଷଟି ଡମ୍ବରୁଟିଏ ଧରି ସଜାଡ଼ୁଥିଲା ।

ସ୍ତ୍ରୀ —ମୁଁ ଆଉ ସମ୍ଭାଳି ପାରିବିନି ଏଡ଼େ ବଡ଼ବଡ଼ ଝିଅ ଦୁଇଟା ବାହାଘର ହୋଇ ପାରୁନି—ପୁଅଟାର ପାଠ ହେଲାନି, ଦଣ୍ଡ ବାଜୁଙ୍ଗା ଭଳିଆ ବୁଲୁଛି—ଖାଇବାକୁ ଦାନା ପୋଷେ ନାହିଁ—ସାତପିଆଁ ଲୁଗାରେ ଦେହ ଘୋଡ଼େଇ ହେଉନି ।

ପୁରୁଷ —ତମେ ତାହେଲେ କ'ଣ କହୁଛ ?

ସ୍ତ୍ରୀ —ତମକୁ କିଏ କହୁଥିଲା ମୋ ସାଙ୍ଗରେ ଛନ୍ଦା ହେବାକୁ । ତମର ରଜା ଝିଅ ସାଙ୍ଗରେ ପିରତି ଥିଲା—ସେ ଛୁଆ ଜନ୍ମକଲା—ଏଠି ନବରଙ୍ଗ କରିବାକୁ ପୁଳାଏ ଛୁଆ ଜନ୍ମ କରି ମୁଁ ଯାହା ହନ୍ତସନ୍ତ ହେଉଛି । ( ସ୍ତ୍ରୀ ଲୋକଟି ସୁଉଁ ସୁଉଁ କାନ୍ଦିବା )

ପୁରୁଷ —ତୁମେ ତାହେଲେ ମୋତେ କ'ଣ କହୁଛ ?

ସ୍ତ୍ରୀ —ତୁମ ଘର ଦ୍ୱାର ତୁମେ ସମ୍ଭାଳ—ମୁଁ ପଳାଇଯିବି । ତୁମକୁ ସିଏ ଡମ୍ବରୁ ଦେଇଛି । ତୁମେ ଏହି ଡମ୍ବରୁ ବଜାଇ ଭାଲୁ ନାଚ ଦେଖାଉଥିଲ—ସେଇଥିକୁ ବଜାଇଲେ ସେ ହାଜର ହେବ ।

ପୁରୁଷ —ନା···ନା, ସେ କଥା ତୁଣ୍ଡରେ ଧରନା ।

ସ୍ତ୍ରୀ —(କାନ୍ଦି) ମୁଁ ତୁମର କଏକି ? ଯାଉଛି ସବୁକଥା ଖୋଲି କହିବି— ସେଇଟା ନିଜର ହେଲା—ଆମେ କେହି ନୋହୁଁ ।

ପୁରୁଷ —ହଉ, ଡମ୍ବରୁ ବଜାଇବି ।

ସ୍ତ୍ରୀ —ମୋ ବାହୁ ଛୁଇଁଲ··· । ତା'ପରେ ପୁରୁଷ ଲୋକଟି ସ୍ତ୍ରୀ ଲୋକଟିର ଦେହ ଛୁଇଁଲା ଓ କଳାହାଣ୍ଡିଆ ମେଘ ଭଳିଆ ଅନ୍ଧାର ଭିତରୁ ତା ସ୍ତ୍ରୀର ମୁହଁଟି ଯେ ଝଲସି ଉଠୁଛି । ଏ କଥା ନ ଦେଖି ପାରିଲେ ବି ସେ ଜାଣି ପାରୁଥିଲା ।

ତା ପରଦିନ ସକାଳେ ରାଜପ୍ରାସାଦ ପାଖରେ ଜଣେ ଲୋକ ତା ସ୍ତ୍ରୀକୁ ଧରି ହାଜର ହେଲା ଓ କହିଲା 'ଭିତରକୁ ଖବର ଦିଅ—ମୁଁ ତାକୁ ଧରି ଆଣିଛି' । ତତ୍‌କ୍ଷଣାତ୍ ଭିତରକୁ ଖବର ଦିଆଗଲା—ରାଜାଙ୍କ ବିଶ୍ୱସ୍ତ ପରାମର୍ଶଦାତା ଯିଏ କି ଏହା ଦାୟିତ୍ୱରେ ଅଛନ୍ତି ସେ ସାଙ୍ଗେ ସାଙ୍ଗେ ବାହାରକୁ ଧାଇଁ ଆସିଲେ ଓ ପଚାରିଲେ, 'ସେ କାହିଁ ?' । ଲୋକଟି କହିଲା —'ରାଜ୍ୟ ଦରବାରରେ ସଭିଙ୍କ ସାମ୍ନା ବାଜେ କରିବେ, ମୁଁ ତାକୁ ଆଣି ହାଜିର କରାଇ ଦେବି' । ପରାମର୍ଶଦାତା ପଚାରିଲେ, 'ତୁ ଜାଣିଛୁ, ତୁ ଯଦି ତାକୁ ହାଜର ନ କରାଇ ପାରୁ, ତୋର ମୁଣ୍ଡକାଟ ହେବ' । ଲୋକଟି ଠିକେ ତା ଡମ୍ବରୁକୁ ଅନେଇଲା ଓ କହିଲା, 'ସବୁ ବୁଝିଛି ଆଜ୍ଞା' । ତା'ପରେ ପରାମର୍ଶଦାତା କହିଲେ, 'ହଉ ତୁମେ ଆସନ୍ତାକାଲି ଠିକ୍ ଦଶଟାବେଳେ ରାଜସଭାରେ ହାଜର ହୁଅ' । ତାପରେ ରାଜାଙ୍କ ପରାମର୍ଶଦାତା ରାଜାଙ୍କୁ କ'ଣ କହିଲେ କେଜାଣି ସବୁ ବ୍ୟବସ୍ଥା ହେଲା ଓ ରାଜ୍ୟରେ ସେହି ଅନୁସାରେ ଢେଙ୍କୁରା ଦିଆଗଲା । ହେଲେ ଲୋକଟି ଘରକୁ ଫେରିଲା, ମାତ୍ର ରାତିଯାକ ତାକୁ ନିଦ ହେଲାନି । ଖାଲି ବିଛଣାରେ ଛଟପଟ ହେଲା । ତା ସ୍ତ୍ରୀ ପଚାରିଲା, 'ତମର କ'ଣ ହେଉଛି, ଏମିତି କାହିଁକି ହେଉଛ ?'—ସେ କହିଲା, 'କିଛି ନାହିଁ—ନିଦ ହେଉନି' । ତା ସ୍ତ୍ରୀ କହିଲା ଶୋଇପଡ଼ ଭୋରୁ ଭୋରୁ ରାଜଦରବାରକୁ ଯିବପରା । କଥା ଦେଇଛ ଯେତେବେଳେ, ଠିକ୍ ବେଳରେ

# ସାକ୍ଷୀ କଣ୍ଠେରୁ

● ରଣଧୀର ଦାସ



ସୁଶାନ୍ତ ସେତେବେଳେ ଟାଉନ୍-ଥାନାରେ କିଛିଦିନ ପୂର୍ବରୁ ଅଫିସର୍ ଇନ୍‌ଚାର୍ଜ ଭାବରେ ଯୋଗ ଦେଇଥାଏ। ବଡ଼ ବଡ଼ ସହରରେ ଦାୟିତ୍ୱ ବୋଧ ବେଶି। ଟେଲିଫୋନ୍‌ର କେତେବେଳେ ବିଶ୍ରାମ ନାହିଁ। ଘଡ଼ିକୁ ଦୋଡ଼ା ଛୁଟେ। ଦଙ୍ଗା, ହଙ୍ଗାମା, ମାର୍‌ପିଟ୍, ଚୋରି, ଦୁର୍ଘଟଣା ଇତ୍ୟାଦି ଜାବତୀୟ କେସ୍ ଡାଏରୀରେ ଲେଖି ଲେଖି ସମୟ ଯାଏ। ତା'ଛଡ଼ା ଉଚ୍ଚ ପଦସ୍ଥ ଅଫିସର୍ ମାନଙ୍କର ଆଦେଶ, ଫର୍ମାଶି ମଧ୍ୟ ତୁଲାଇବାକୁ ପଡ଼େ। ଥାନା ଭିତରେ ଏବଂ ନିଜ ସୀମା ଇଲାକାରେ ଥାନା ଅଫିସର୍ ରଜା। କିନ୍ତୁ ବଡ଼ ସହର, କିମ୍ବା ରାଜଧାନୀରେ ସେ ପଙ୍ଗ କନଷ୍ଟେବଲ ଅଫିସର୍। ନୂଆ ନୂଆ ଟାଉନ୍ ଥାନାରେ ଯୋଗଦେବା ପରେ ସହରର ମାନ୍ୟଗଣ ବ୍ୟକ୍ତିଙ୍କଠାରୁ ଆରମ୍ଭକରି ନେତା, କ୍ଲବ ନେତା, ଛାତ୍ର ନେତା, ଗୁଣ୍ଡା ଧସ୍‌ପାବାଜ୍, ସମସ୍ତଙ୍କ ସାଙ୍ଗରେ ଅଳ୍ପ ବହୁତ ପରିଚିତ ହୋଇଗଲାଣି।

ସେଦିନ ମଧ୍ୟାହ୍ନ ଭୋଜନ ପରେ କୌଣସି ସମ୍ବାଦପତ୍ର ଉପରେ ଦୃଷ୍ଟି ପକାଉଥିଲେ ସୁଶାନ୍ତ। ଆକସ୍ମିକ ଥାନା ନିକଟରେ ଗୋଟିଏ ପିଆଟ୍‌କାର୍ ଆସି ଅଟକିଲା। ଖବରକାଗଜ ବନ୍ଦକରି କୌଣସି ଉଚ୍ଚପଦସ୍ଥ ଅଫିସର ଆସୁଥିବେ ଭାବି ଅପେକ୍ଷାକଲେ ସୁଶାନ୍ତ। ସମ୍ମୁଖରେ ଯାହାଙ୍କୁ ଦେଖିଲେ, ସେ ଥିଲେ ତାଙ୍କର ପ୍ରାଣଦାତା ଡାକ୍ତର ଅଜିତ୍ ଦାଶ ମହାପାତ୍ର। ନୂତନ ଭାବେ ପୋଲିସ୍ ବିଭାଗରେ ଯୋଗଦେବାବେଳେ ସୁଶାନ୍ତ ଏକ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ। ଡାକ୍ତର୍ ଦାସ ମହାପାତ୍ରଙ୍କର ଅପରେସନର ସଫଳତା ଯୋଗୁଁ ସେ ନୂଆଁ ଜୀବନ ଫେରି ପାଇଥିଲେ। କିନ୍ତୁ ପନ୍ଦର ବର୍ଷ ପରେ ସେ'ବା କାହିଁକି ତାଙ୍କୁ ମନେ ରଖିବେ ? ପ୍ରତିବର୍ଷ ହଜାର ହଜାର ରୋଗୀଙ୍କର ସେ ଚିକିତ୍ସା କରୁଛନ୍ତି।

ସୁଶାନ୍ତ ତାଙ୍କୁ ସମ୍ମାନେ ବସିବାକୁ ଅନୁରୋଧ କଲେ । ଅଫିସିକୁ ଆସିବାର କାରଣ ପଚାରିବାରୁ ଡାକ୍ତର ଦାସ ମହାପାତ୍ର କହିଲେ ନା...ନା...ସେ ସବୁର କିଛି ଆବଶ୍ୟକତା ନାହିଁ । ମୁଁ ଗୋଟିଏ ଏଫ୍. ଆଇ. ଆର୍ ଦେବାକୁ ଆସିଛି । ଗୋଟିଏ ଟ୍ରକ୍ ମୋ' କାର୍‌କୁ ଜାତୀୟ ରାଜପଥରେ ଧକ୍କାଦେଇ ଚାଲିଯାଇଛି । ଟ୍ରାଫିକ କହିଲ ଏଫ୍. ଆଇ. ଆର ଆପଣଙ୍କୁ ଥାନାରେ ହିଁ ଦେବାକୁ ହେବ ।

ସୁଶାନ୍ତ କହିଲେ—ସାର୍ ଆପଣ ଏଫ୍. ଆଇ. ଆର୍ ଦେବେ କିନ୍ତୁ ସେ ଟ୍ରକ୍ ହୁଏତ ଧରାପଡ଼ିବ ନାହିଁ କାରଣ ଧରା ପଡ଼ିଲେ ମଧ୍ୟ ରାଜନୈତିକ ପ୍ରଭାବରେ ଖସିଯିବ । ଡାକ୍ତର ଦାସ ମହାପାତ୍ର ଅସନ୍ତୁଷ୍ଟ କଣ୍ଠରେ କହିଲେ—ଆପଣ ପୋଲିସ୍ ଅଫିସର ହୋଇ ଯଦି ଏମିତି କହିବେ ତେବେ ଏ ଦେଶର ଆଇନ୍ ଶୃଙ୍ଖଳା ରହିବତ ?

—ସାର୍ ଆପଣଙ୍କୁ ମୁଁ କଷ୍ଟୁର ସତକଥା କହୁଛି । କାରଣ ଆପଣ ଦିନେ ଅପରେସନ କରି ୧୫ ବର୍ଷ ତଳେ ମୋ' ଜୀବନ ରକ୍ଷା କରିଥିଲେ । ମୁଁ ଏତେ ଅକୃତଜ୍ଞ ନୁହେଁ । ସାର୍ ଆମେ ତ ଅଫିସର ମେଳାର ଶେଷ ସିଡ଼ିରେ । ଆମକୁ ପଚାରେ କିଏ ?

ଆଜ୍ଞା, ଏଇ ଥାନାରେ ଯୋଗଦେବାର କିଛି ଦିନ ପରେ ସ୍ଥାନୀୟ ସିନେମା ହଲ୍‌ରେ ଗୋଟିଏ ନୂଆ ହିନ୍ଦୀ ଫିଲ୍ମ ରିଲିଜ୍ ହୋଇଥାଏ । ଅସମ୍ଭବ ଭିଡ଼ । ଟିକେଟରେ ଖୁବ୍ କଳାବଜାର ଚାଲିଥାଏ । ଖବର ପାଇ ମୁଁ କେତେକ ଅଫିସର ଓ କନେଷ୍ଟବଲ୍‌ଙ୍କୁ ନେଇ ଚାରିଜଣ ଟିକେଟ୍ କଳାବଜାରୀଙ୍କୁ ଆରେଷ୍ଟ୍ କଲି । ଆରେଷ୍ଟ କରିବାର ଦୁଇଘଣ୍ଟା ପରେ ଜଣେ ଅସାମାଜିକ ଯୁବକ ଆସି ଧମକାଇଲା— 'କଣ ଥାନା ବାବୁ ତମେ ବୋଧହୁଏ ନୂଆ ଆସିଛ ଏ ଇଲାକାକୁ । ଏ ଇଲାକା ମୋର । ସେଥିରେ ହସ୍ତକ୍ଷେପ କଲେ ଫଳ ଖରାପ ହେବ ।

ମୁଁ ବିସ୍ମିତ ହେଲି । ତୀକ୍ଷ୍ଣ ସ୍ୱରରେ କହିଲି—ବାଜେ କଥା ଶୁଣିବାକୁ ମୋର ବେଳନାହିଁ । ସିଧା ସଳଖ କଥା କୁହ । ଯେଉଁ ଚାରିଜଣଙ୍କୁ ଗିରଫ କରିଛନ୍ତି ସେମାନେ ମୋ' ଲୋକ । ତାଙ୍କୁ ଛାଡ଼ିଦେବାକୁ ହେବ ।

ମୁଁ ଦର୍ପିତ କଣ୍ଠରେ କହିଲି—ଜାମିନ୍ ନେବାକୁ ହେଲେ ଓକିଲ ଠିକ୍ କର । କୋର୍ଟରେ ତମେ ଖଲାସ କରିନେଇ ପାରିବ ତା' ପୂର୍ବରୁ ନୁହେଁ ।

ଅବଜ୍ଞାର ହସ ହସି ସେ ଲୋକଟି କହିଲା, ଉପରୁ ଫୋନ୍ ଆସିଲେ ତମ ବାପା ଯିଏ ଯିଏ ଥିବେ। ମୁଁ ସେହିପରି ଦର୍ପିତ କଣ୍ଠରେ କହିଲି 'ଏଠାରେ ବେଶୀ ବକ୍ ବକ୍ ହେଲେ ତମକୁ ମଧ୍ୟ ହାଜତରେ ରଖିଦେବି । କଳାବଜାରୀଙ୍କ ନେତା ଅବଶ୍ୟ ଫେରିଗଲା ।

ସହଯୋଗୀ ଅଫିସରମାନେ କହିଲେ—'ସାର୍ ଏ ଲୋକଟି ସହଜ ଲୋକ ନୁହେଁ । ତା'ର ଖୁବ୍ ପ୍ରଭାବ ଅଛି । ସତକୁସତ ଦୁଇଘଣ୍ଟା ପରେ ଉପରୁ ଫୋନ୍ ଆସିଲା । ସେମାନଙ୍କୁ ଖଲାସ କରିଦିଅ ।

—ସାର୍ ଆମେ କେବଳ ସୂତାରେ ବନ୍ଧା ହୋଇଥିବା କଣ୍ଢେଇ । ଆମର କୌଣସି ନିଜସ୍ୱ ଇଚ୍ଛା ନାହିଁ । ବ୍ୟକ୍ତିତ୍ୱ ନାହିଁ, କ୍ଷମତା ନାହିଁ । ନଚାଇଲାବାଲା ଯେମିତି ନଚାଇବ ଆମେ ସେମିତି ନାଚିବୁ ।

ଡଃ ଦାସ ମହାପାତ୍ର ମୋର ଅସହାୟତା ଦେଖି ହସିଲେ । କହିଲେ ବାବୁ ତମର ଦୋଷ କ'ଣ ? ଆଜିର ଗଣତନ୍ତ୍ରର ଅବସ୍ଥା ଏହିପରି । ସ୍ୱାଧୀନତାର ୩୬ ବର୍ଷ ପରେ ମଧ୍ୟ ଆମେ ପରାଧୀନତାର ଶୃଙ୍ଖଳରୁ ମୁକ୍ତ ପାଇନୁ । ଏ ସମାଜରେ ଯିଏ ବେଶୀ ଅସାମାଜିକ, ଦୁର୍ଦ୍ଦାନ୍ତ ତା'ର ନାଗରିକ ଦାବୀ ସେତେ ଅଧିକ !

ଡଃ ଦାସ ମହାପାତ୍ର ଥାନାରେ ଏଫ୍. ଆଇ. ଆର୍ ଦେଇ ଚାଲି ଆସିଲେ । ପରେ ପରେ ଏମ୍. ଡି. ଆଇ ରିଜିଓନାଲ୍ ଟ୍ରାନ୍ସପୋର୍ଟ ଅଫିସର ସମସ୍ତଙ୍କୁ ନିଜର ଅଭିଯୋଗ ଦେଲେ ମାତ୍ର ସମସ୍ତଙ୍କ ନିକଟରୁ ଶୁଣିଲେ ସେହି ଅସାହାଯ୍ୟତାର କାହାଣୀ । ପଦ ପଦବୀ ଅଛି, କ୍ଷମତା ଅଛି କିନ୍ତୁ ସମସ୍ତେ ଗୋଟିଏ ଗୋଟିଏ ସଖୀ କଣ୍ଢେଇ । ସୂତା ଖିଅରେ ଝୁଲୁଛନ୍ତି । ଅନ୍ନଦାତା ଯେମିତି ନଚଉଛି ସେମିତି ସେମାନେ ନାଚୁଛନ୍ତି ।

ଡଃ ଦାସ ମହାପାତ୍ର ନିଜର ରୋଗୀ ଓ ରୋଗର କର୍ମମସ୍ତ ଜୀବନ ମଧ୍ୟରୁ ଅବ୍ୟାହତ ନେଇ କେଶ୍ ଟିର କ'ଣ ହେଲା ବୁଝିବା ପାଇଁ ମଝିରେ ମଝିରେ ଫୋନ୍ କରନ୍ତି । ଜଣାଶୁଣା ଉଚ୍ଚପଦସ୍ଥ ଅଫିସରଙ୍କୁ ଫୋନ୍ କରିଛନ୍ତି । ସମସ୍ତେ ସହାନୁଭୂତି ପ୍ରକାଶ କରିଛନ୍ତି । ଆଶା ଦେଇଛନ୍ତି ମାତ୍ର ପ୍ରତିଶ୍ରୁତି ପାଇନାହାଁନ୍ତି ।

ଡଃ ଦାସ ମହାପାତ୍ର ଭାରି ଜିଦ୍ଖୋର ଲୋକ । ଯେଉଁ କଥାରେ ଲାଗିଥିବେ ତା'କୁ ନସାରିଲା ପର୍ଯ୍ୟନ୍ତ ମନରେ ଶାନ୍ତି ନାହିଁ । କାର୍ ତା'ପରେ

ରଙ୍ଗ କରି ଠିକ୍‌ଠାକ୍ କରିଦେଇଛନ୍ତି । କିନ୍ତୁ ମନରୁ କ୍ଷତ ଲିଭି ନାହିଁ । ସେ ମଧ୍ୟ ଜଣେ ଉଚ୍ଚ ଦାୟିତ୍ୱ ସମ୍ପନ୍ନ ସରକାରୀ ଅଫିସର ଥିଲେ । ସେତେବେଳେ ତାଙ୍କ କଥାକୁ ଶହ ଶହ ଲୋକ ଗୁଡକୁଭଳି ଗୁହିଁ ବସିଥିଲେ । ଅନୁରୋଧ ରକ୍ଷା କରିବା ପାଇଁ ପ୍ରତିଦ୍ୱନ୍ଦୀତା ଗୁଲିଥିଲା । ଅଥଚ···ସେ ବର୍ତ୍ତମାନ ଅବସରପ୍ରାପ୍ତ ।

ଡଃ ଦାସ ମହାପାତ୍ର ଦିନେ ସନ୍ଧ୍ୟାବେଳେ ଆଳସ୍ଥିକ ଥାନାରେ ପହଞ୍ଚିଲେ । ଥାନା ଅଫିସର୍ ସୁଶାନ୍ତ ଶ୍ରେଷ୍ଠରାୟ ଥାନାରେ ଥିଲେ ଡଃ ଦାସ ମହାପାତ୍ରଙ୍କୁ ଦେଖି ସେ ବିନମ୍ର ସହକାରେ କହିଲେ—ସାର୍ ଆପଣ କାହିଁକି ଆସିଲେ ? ଫୋନ୍ କରିଦେଇଥିଲେ ହୋଇଥାନ୍ତା ।

—ନା···ନା; ମୁଁ ଏଇବାଟେ ଯାଉଥିଲି । ଭାବିଲି ସେ ଟ୍ରକ୍ ସମ୍ବନ୍ଧରେ କୌଣସି ସନ୍ଧାନ ମିଳିଲା କି—ନିଜେ ବୁଝିନେବି ।

—'ସାର୍ ସନ୍ଧାନ ମିଳିଲା । ଆପଣ ଦେଇଥିବା ନମ୍ବରରେ କୌଣସି ଟ୍ରକ୍ ନାହିଁ ।'

—ଅସମ୍ଭବ । ଡଃ ଦାସ ମହାପାତ୍ର ଆଉଥରେ ନିଜ ଡାଏରୀ ଦେଖିଲେ । ଥାନା ଅଫିସର୍‌ଙ୍କୁ ଟ୍ରକ୍ ନମ୍ବର ଦେଲେ ।

—ସାର୍ ସେଇ ନମ୍ବର । କୌଣସି ଭୁଲ୍ ନାହିଁ ତ ।'

—'ତେବେ ?'

—ଜାଣନ୍ତି ରାଜପଥରେ ଗଡ଼ୁଥିବା ଶହ ଶହ ଟ୍ରକ୍, ଟ୍ରେଲର୍, କମ୍ ବିନା ଲାଇସେନ୍‌ସରେ ଗୁଲେ ? ଦୁର୍ଘଟଣାରୁ ମୁକ୍ତି ପାଇବା ପାଇଁ ସେମାନେ ଜାଲ୍ ନମ୍ବର ମଧ୍ୟ ବ୍ୟବହାର କରନ୍ତି ।

ଡଃ ଦାସ ମହାପାତ୍ର ବିଷର୍ଣ୍ଣ ବଦନରେ ଥାନା ପରିତ୍ୟାଗ କଲେ ! !





## ।। ନୂ ।।

● ଡାକ୍ତର **ଦେବେନ୍ଦ୍ରନାଥ ମାନସିଂହ**

**"I wish I were a rapid.
stream…
If my love
A tiny fish would be
She is frolic
In my foaming waves."**

**।। SANTIOR PETOF ।।**

ଜୀବନ୍ତ ନାରୀମୂର୍ତ୍ତି । ଆଜିବି ଥପ୍ ଥପ୍ ଲୁହ ବହୁଯାଇ ଦେହର ଆଭରଣକୁ ଭିଜେଇ ଦେଇଛି । ବାମ ହାତରେ ଚକ୍ରାଟ ପଥର ଖଣ୍ଡ । "ଜେଡ଼୍ (Jade) ମେଟାଲ୍‌ରେ ଶିଳ୍ପୀର ଅନବଦ୍ୟ ଚିତ୍ରଣ । ନାରୀ ସମାଜର କି ବିଡ଼ମ୍ବନା ? ନାରୀ ମୂର୍ତ୍ତୀ ପୃଥିବୀର ନାରୀ ଚରିତ୍ରର ରୂପକଳ୍ପ । ପୁରୁଷ ପ୍ରାଧାନ୍ୟ ସମାଜରେ ନାରୀ, ସମାଜର ସମସ୍ତ ବୋଝକୁ ବହନ କରି ଚାଲିଛି ଯୁଗ ଯୁଗ ଧରି । କେତେ ରାଜା ମହାରାଜାଙ୍କ ଠାରୁ ଆରମ୍ଭ କରି ଆଜିର ଗଣତାନ୍ତ୍ରିକ, ସମାଜବାଦ ରାଷ୍ଟ୍ରର ମନ୍ତ୍ରୀ ଅବା ସର୍ବହରା ଏକ ନାୟକତ୍ୱର ପ୍ରବକ୍ତା, କେହିତ ନାରୀର ବୋଝକୁ ତା'ର ହାତରୁ ନିଜର କାନ୍ଧକୁ ଟେକି ନେବାର ସାହସ ପ୍ରଦର୍ଶନ କରିନାହିଁ । କେବଳ ସହାନୁଭୂତି, ମିଥ୍ୟା ଆଦର୍ଶବାଦ ।

ନାରୀର ଏହି ଯନ୍ତ୍ରଣାରୁ କ'ଣ ମୁକ୍ତି ନାହିଁ ? ଏଇ କ'ଣ ତାର ଚରିତ୍ର ?

ମୁଁ ଦେଖିଛି ମହାଭାରତରେ ରୂପସୀ ଚିତ୍ରାଙ୍ଗଦାର ବର୍ଣ୍ଣିଳ ସଂସାର । ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ କମନୀୟ ରୂପ ଓ ଗୁଣରେ ମୁଗ୍ଧ ହୋଇ କୁମାରୀ ଚିତ୍ରାଙ୍ଗଦା ପ୍ରେମ ନିବେଦନ କରିଥିଲା । ଆତ୍ମା ଓ ଶରୀରର ସମର୍ପଣ । ପ୍ରତିଦାନ, ଅଶାନ୍ତିର ବୀଜବପନ ।

କେଉଁଠି ଅର୍ଜୁନ ? ଝୁରି ଝୁରି ଚିତ୍ରାଙ୍ଗଦାର ଜୀବନର ଶିଖା ନିସ୍ତେଜ ହେଲା । ନାରୀ ଚରିତ୍ରର ଏଇତ ବିଡ଼ମ୍ବନା !

ମହାଭାରତରେ ପଞ୍ଚପାଣ୍ଡବଙ୍କ ବନବାସ । ଦ୍ରୌପଦୀର ବସ୍ତ୍ରହରଣ ବେଳେ ଦୁଃଶାସନର ଅଟ୍ଟହାସ୍ୟ । ଭୀମର ଶପଥ । ପାଞ୍ଚାଳୀର ମୁକୁଳା କେଶରେ ରକ୍ତ ସ୍ନାନ । କୌରବର ପରାଜୟ ।

ନାରୀ ଚରିତ୍ରକୁ ନେଇ କେତେ ପୋଥି କେତେ ଯେ ପୁରାଣ ମନୀଷୀମାନେ ଲେଖି ଯାଇଛନ୍ତି ।

ମୁଁ ଆଜି ମହାଭାରତରେ ନାରୀ ଚରିତ୍ରର ଶରଣରୁ କେତେ ଜଙ୍ଗଲ, ନଦ ନଦୀ, ମହାସମୁଦ୍ର ପାରହୋଇ ଘୂରିବୁଲୁଛି ଅନ୍ୟ ଏକ ଦେଶ । ପୃଥିବୀର ବୃହତ୍ତମ ଜନବହୁଳ କମ୍ୟୁନିଷ୍ଟ ରାଷ୍ଟ୍ର ଚୀନର ରାଜଧାନୀ ବେଜିଙ୍ଗ୍‌ରୁ ଜିନାନ୍ । ଜିନାନ୍‌ରୁ ମହାନ୍ ଦାର୍ଶନିକ କନ୍‌ଫୁସିୟସ୍‌ଙ୍କର ଲୀଳାଭୂମି କ୍ୟୁଫୁ । : ଅପରକୁ ଭଲପାଅ । ଅନ୍ୟର ଭୁଲ ପାଇଁ କ୍ଷମାଦିଅ ।

କନ୍‌ଫୁସିୟସ୍‌ଙ୍କର ଦର୍ଶନ ସୌରଜଗତର ଗ୍ରହ ଉପଗ୍ରହ ପରି ଘୂରିବୁଲୁଛି । ତା'ର ବିରତି ନାହିଁ ।

କନ୍‌ଫୁସିୟସ୍ ଫରେଷ୍ଟ । ପୃଥିବୀର ବିଭିନ୍ନ ପ୍ରାନ୍ତରୁ କୋଡ଼ିଏ ହଜାର ବୃକ୍ଷ ଲତା ଆସି ରୋପଣ କରାଯାଇଛି । ହଜାର ହଜାର ବର୍ଷର ବୃକ୍ଷ ବିଶ୍ୱପ୍ରେମ ଓ ମୈତ୍ରୀର ପ୍ରତୀକ ।

ହଜାର ହଜାର ବର୍ଷର ଦର୍ଶନ । କନ୍‌ଫୁସିୟସ୍, ବୁଦ୍ଧଙ୍କର ବାଣୀ ଇତିହାସ ପୃଷ୍ଠରେ ରହିଯାଇଛି । ଧର୍ମ ପ୍ରଚାର ନିଷେଧ । ବହୁ ସମ୍ରାଟ ଓ ସାମ୍ରାଜ୍ଞୀଙ୍କ ଅନ୍ତଃପୁର । ସ୍ୱର୍ଗର ମନ୍ଦିର । ହଜାର ହଜାର ପାହାଚ ଚଢ଼ି ସ୍ୱର୍ଗକୁ ଯିବାର ପଥ । କେବଳ ସ୍ମାରକୀ ହୋଇ ରହିଛି । "ଗ୍ରେଟ୍ ଓ୍ୟାଲ୍ ଅଫ୍ ଚାଇନା" । ଯାଯାବର ମାନଙ୍କର ଆକ୍ରମଣରୁ ଚାଇନାର ସମ୍ପଦସୁରକ୍ଷା ଇଲାକାର ଛଅ ହଜାର ମାଇଲ ଲମ୍ବର ପାଚେରୀ । ଶହ ଶହ ପାହାଡ଼କୁ ଛନ୍ଦାଛନ୍ଦି ହୋଇ ସାପଭଳି ଲମ୍ବି ଯାଇଛି । ଆଜି ଚୀନର ଯୁବସମାଜର ଗୌରବ । ଏହି ପ୍ରାଚୀର ଉପରେ ଚଢ଼ିବା । ଅର୍ଥନୈତିକ ପ୍ରଗତି କ୍ଷେତ୍ରରେ ଜଣଙ୍କ ପାଖରେ ପୁଞ୍ଜିର ଠୁଳକୁ ବିଲୋପ କରି ସମସ୍ତଙ୍କୁ ସମାନ ସ୍ତରରେ ରଖିବା ।

ଏ ବିଶାଳ ଦେଶ । ଏତେ ସବୁଜ ଫସଲ । କଳ କାରଖାନା । ନିଯୁକ୍ତିର ଅଭାବ ନାହିଁ । ସମାଜରେ ନାରୀ ଓ ପୁରୁଷର ସମାନ ଅଧିକାର । ସାମାଜିକ ବ୍ୟବସ୍ଥାରେ ଉଭୟ ପରସ୍ପରର ପରିପୂରକ । ନାରୀ ଆଜି ପୁରୁଷର ଦାସୀ ନୁହେଁ । ତେବେ କାହିଁକି ନାରୀ ମନରେ ବିଦ୍ରୋହ ?

ମିସେସ୍ କ୍ଲ କଲେଜରେ ଅଧ୍ୟାପିକା । ସ୍ୱାମୀ ବ୍ରିଗେଡ଼ର ଡାକ୍ତରଖାନାରେ ଡାକ୍ତର । ଦୁହେଁ ବ୍ରିଗେଡ଼ର ପରିବାର ମାନଙ୍କ ଭିତରେ ବାସ କରନ୍ତି । ଦୁଇଟି ସନ୍ତାନ । ଝିଅ ବଡ଼, ପୁଅ ସାନ । ଦୁହିଁଙ୍କର ରୋଜଗାର । ଘରେ ଫ୍ରିଜ୍, ଟେଲି-ଭିଜନ୍, ସୋଫା, ଲୁଗା ସଫା କରିବା ମେସିନ୍ । ଦ୍ୱାର ମୁହଁରେ ଅଙ୍ଗୁର ଗଛ । ବଗିଚାରେ ଆପଲ ଗଛ । ପ୍ରଥମ ସନ୍ତାନ ଝିଅପରେ କ୍ଲ ପୁଅଟିଏ ପାଇଁ ପ୍ରତୀକ୍ଷାକଲା ବ୍ରିଗେଡ଼ର ଭାଗିଦ୍, ସରକାରଙ୍କ ନିର୍ଦ୍ଦେଶକୁ ମାନିବାକୁ କୁଣ୍ଠା ପ୍ରକାଶ କଲା । ଆଗରୁ ପାଉଥିବା ତାର ଦରମାରୁ କିଛିଅଂଶ କାଟି ଦିଆଗଲା । ଅର୍ଥନୈତିକ ଦଣ୍ଡର ଶୀକାର ହେଲା । ଛୁଆ ମାନଙ୍କର ସ୍ୱାସ୍ଥ୍ୟ, ଚିକିତ୍ସା, ଶିକ୍ଷା ପାଇଁ ସ୍ୱତନ୍ତ୍ର ସୁବିଧାରୁ ବଞ୍ଚିତ ହେଲା ।

ଜନସଂଖ୍ୟାର ବିସ୍ଫୋରଣକୁ ରୋକିବା ପାଇଁ ସରକାରଙ୍କର କଠୋର ନିର୍ଦ୍ଦେଶ । "ଏକ ପରିବାରରେ ଏକଇ ସନ୍ତାନ ।" ବ୍ରିଗେଡ୍, କମ୍ୟୁନ ତାକୁ କାର୍ଯ୍ୟକାରୀ କରିବାରେ ସହଯୋଗ କରୁଛନ୍ତି ।

ମିସେସ୍ କ୍ଲ ଚିନ୍ତା କରୁଛି ଏକ ପକ୍ଷରେ ଦେଶପାଇଁ ସାମାଜିକ କର୍ତ୍ତବ୍ୟ, ଅନ୍ୟ ପକ୍ଷରେ ତାଙ୍କ ମନର ଉଦ୍‌ବେଳନ । ମନସ୍ତାତ୍ତ୍ୱିକ ଚିନ୍ତା ଓ ଚେତନାର ଆବର୍ତ୍ତନ ।

"ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା ।" ନୀତି କେଉଁ ଆଦିମ ଯୁଗରୁ ଚାଲି ଆସିଛି । ଗୋଟିଏ ସନ୍ତାନ ଯଦି କନ୍ୟା ହୁଏ, ତେବେ କିପରି ତା'ର ବଂଶରକ୍ଷା ହେବ ? ପୁଣି ଯଦି ସବୁ ପ୍ରଥମ ସନ୍ତାନ ପୁତ୍ର ହୁଅନ୍ତି ତେବେ ପରବର୍ତ୍ତୀ ବଂଶଧର କିପରି ପୁନି ସନ୍ତାନ ଜାତ କରିବ ?

ଗାଁ ଗହଳର ବହୁ ପୁରୁଷ ବହୁ ସନ୍ତାନରେ ବିଶ୍ୱାସ କରନ୍ତି । କ୍ଷେତରେ ପୁରୁଷମାନେ ଅଧିକ ସାହାଯ୍ୟ କରି ପାରିବେ । ଖାଦ୍ୟ ପାଇଁତ ଜୀବନ ସଂଗ୍ରାମ । ଆଜି ସେଇଥି ପାଇଁ ଆଇନର ଗୃପରେ ଅନେକ ସାମାଜିକ ଅଘଟଣ ଦେଖାଦେଇଛି । ପ୍ରଥମ ସନ୍ତାନ କନ୍ୟା ହେଲେ ତାକୁ ଜୀବନରେ ମାରିଦେବା ପାଇଁ ବାପା ଓ ମା କୁଣ୍ଠାବୋଧ କରୁନାହାନ୍ତି ।

ସେଉଁ ସ୍ତ୍ରୀର ଉଦର ଗୃହେଟି ସନ୍ତାନ, କମ୍ୟୁନ ଓ ବ୍ରିଗେଡର ଚାପ । ସ୍ୱାମୀର ସ୍ତ୍ରୀ ପ୍ରତି ଅତ୍ୟାଚାର । ଅର୍ଥନୈତିକ ଦଣ୍ଡର ଶୀକାର ହୋଇଥିବାରୁ ଏମାନେ ଅସହ୍ୟ ହୋଇ ଆତ୍ମହତ୍ୟା କରିବାକୁ ବାଧ୍ୟ ହେଉଛନ୍ତି । ନାରୀ, ତା'ର ରୂପକଳ୍ପ ।

ମିସେସ୍ କ୍ଲ ନାଷ୍ଟ । ନିଜର କନ୍ୟାକୁ ନିଜ ହାତରେ ମାରିଦେବାକୁ ସାହସ କରିପାରେନା । ମନ ଭିତରେ ବିଦ୍ରୋହ, ଦ୍ୱନ୍ଦ୍ୱ । ପୁଣି ବହୁ ସନ୍ତାନର ଜନନୀ-ହୋଇ ଦେଶର ସାମାଜିକ, ଅର୍ଥନୈତିକ ଭିତ୍ତିଭୂମିକୁ ଦୁର୍ବଳ କରିଦେବାକୁ ଚାହେଁନା ।

ସ୍ୱାମୀ ସ୍ତ୍ରୀ ଦୁହେଁ ଯାହା ରୋଜଗାର କରନ୍ତି ସେଥିରେ ନିଜର ଘରସଂସାର ଚାଲିଯାଏ । ପ୍ରତି ମାସରେ କିଛି ଅର୍ଥ ସଞ୍ଚୟ କରି ଗ୍ରୀଷ୍ମ ଛୁଟିରେ ସିଙ୍ଗାପୁରର "ସୁଇନା ସି"ର ଉପକୂଳରେ ସନ୍ ବାଥ୍ । ନରମ ସକାଳର ବ୍ରେକ୍‌ଫାଷ୍ଟ ପରଠାରୁ ସନ୍ଧ୍ୟାର ସପର ପର୍ଯ୍ୟନ୍ତ ଲହଡ଼ି ସଙ୍ଗେ ଖେଳିବା । ବାଲି ଭିତରୁ ନାନା ଜାତିର ସମୁଦ୍ରର ଜୀବମାନଙ୍କୁ ସଂଗ୍ରହ କରି ପୁଅମାନଙ୍କ ହାତକୁ ବଢ଼ାଇ ଦେବା । ହଜାର ହଜାର ଯୁବକ ଯୁବତୀ, ବାଳକ ବାଳିକା ମାନଙ୍କ ଭିତରେ ସାଗରର ସମୁଦ୍ରର ଜଳ ତରଙ୍ଗରେ ନିଜକୁ ସାମିଲ କରିବା । 'ସାଂଘାଇ'ର ନଦୀରେ ଜାହାଜରେ ଯାତ୍ରା । ଧାଡ଼ି ଧାଡ଼ି ଜାହାଜକୁ ପାରହୋଇ ସମୁଦ୍ର ମୁହାଣ ଛୁଇଁବା । ଦୁଇଟି ଦୀର୍ଘ ନଦୀର ଅଜଗର ସଙ୍ଗମ ସ୍ଥଳ । ସୀମାହୀନ ସମୁଦ୍ରର ତରଙ୍ଗାୟିତ ମନ ଥିଲା କେଉଁ ବ୍ରିଗେଡର ଧାଡ଼ି ଧାଡ଼ି ମଜାଗଛ । ଧାନ ଫସଲର ହଳଦି ମଝିରେ ପିଲା ସବୁକୁ ଛୁଇଁ ଛୁଇଁ ଦ୍ରୁତ ଗତିରେ ଦୌଡ଼ିବା । କ୍ଷେତରେ କୃଷକମାନଙ୍କ ସହ ଲିଚୁ ଅବା ଆପଲ ଚାଷ କରିବା । ଗଛରୁ ଫଳ ତୋଳି ମନଇଚ୍ଛା ଖାଇଯିବା । ଲାଲ ଡଗଲୁଳରେ ବନ୍ଧୁତ୍ୱକୁ ଏଇମିତି ନିବିଡ଼ କରିବାରେ ଛୁଟି ଦିନଗୁଡ଼ାକ କଟିଯାଏ ଆନନ୍ଦ ଉଲ୍ଲାସରେ ।

କିନ୍ତୁ ଯେଉଁଦିନ ମିସେସ୍ କ୍ଲ ତା'ର ସ୍ୱାମୀ ବ୍ରିଗେଡ୍‌ର ନର୍ସ ସହ ଯୌନ ସମ୍ପର୍କ ପ୍ରତିଷ୍ଠା କରିବାର ଦେଖିଲା ସେଦିନ ସେ ବ୍ରିଗେଡକୁ ଜଣାଇଲା । ତା'ର ସ୍ୱାମୀର ଚରିତ୍ର ସଂଶୋଧନପାଇଁ ବ୍ରିଗେଡରୁ ତାଗିଦ୍ ଆସିଲା । କିନ୍ତୁ ତା'ର ସ୍ୱାମୀ ତା'ପ୍ରତି ଅଧିକ ଅତ୍ୟାଚାର କଲେ ।

ମିସେସ୍ କ୍ଲ ମାନସିକ ଦ୍ୱନ୍ଦ୍ୱରେ ଜର୍ଜରିତା । "ଛାଡ଼ପତ୍ର ଦେବା ଉଚିତ ନୁହେଁ ।" ପୂର୍ବ ପରମ୍ପରାକୁ ଲଙ୍ଘିବ କିପରି ? ସ୍ତ୍ରୀ କ'ଣ ସ୍ୱାମୀକୁ ଛାଡ଼ପତ୍ର ଦେବ ? ଛାଡ଼ପତ୍ର ଦେବା ପରେ ସମାଜରେ ତା'ର ସ୍ଥିତି କ'ଣ ହେବ ? ସ୍ୱାମୀର ଯାହା ଭୁଲଥିଲେ ବି ସମାଜ ଦୋଷ ଦେବ ସ୍ତ୍ରୀକୁ । ସ୍ତ୍ରୀର ଚରିତ୍ର ଖରାପ । ଏତିକି ପ୍ରଶ୍ନର ହେବ । ସ୍ୱାମୀ ଚରିତ୍ରର ମାପକାଠି କିଏ ଦେଖିବ ?

ମିସେସ୍ ଲି ସ୍ୱାମୀକୁ ଛାଡ଼ପତ୍ର ଦେବାପାଇଁ ବାଧ୍ୟ ହେଲ । ତଥାପି ଦୁଇଟି ସନ୍ତାନର ଦାୟିତ୍ୱ ନେବାପାଇଁ ସେ ପଛେଇ ଯାଇନି । ମା'ର ମମତାରେ ଦୁଇଟି ସନ୍ତାନ ଉଲ୍ଲସିତ । କ୍ଷେତରେ କାମ କରିବା । ନଦୀରୁ ମାଛ ଧରିବା । "ଷ୍ଟୁଡେଣ୍ଟସ୍ ପ୍ୟାଲେସ୍"ରେ ନାଚ ଶିକ୍ଷା ଓ ଚିତ୍ରକଳା ଅଧ୍ୟୟନ । ସମୁଦ୍ରର ଢେଉପରି ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ହସର ତରଙ୍ଗ ।

ମିସେସ୍ ଲି ଚିନ୍ତାମଗ୍ନ । ଅତୀତରେ ନାରୀର ବୁକୁ ଫାଟିଗଲେ ବି ମୁହଁରୁ କଥା ଫିଟେନାହିଁ । କିନ୍ତୁ ଆଜିର ସମାଜରେ ସ୍ୱାମୀର ସ୍ତ୍ରୀ ପ୍ରତି ଧାରଣା ବଦଳି ଯାଇଛି । ଆଜି ପୁତ୍ର ପ୍ରାପ୍ତି ପାଇଁ ବିବାହ ଗୌଣ । ତଥାପି ସ୍ତ୍ରୀ ଦିନରେ ଗ୍ରାସ ଅନ୍ନ ଦେବା, ରାତିରେ ଦେବ ଦେହ ଆଉ ଶରୀରର ଦାହ । ଏଇ ହେଉଛି ନାରୀର ବଞ୍ଚିବାର ଆଦର୍ଶ ।

ଆଜିର ସମାଜରେ ନାରୀର ମନ ଦାବୀକରେ ଯୌନମୁକ୍ତି । ପୃଥିବୀର ନାରୀ ସମାଜ ପୁରୁଷର ଏକଚାଟିଆ ସମ୍ଭୋଗର ବିରୋଧପାଇଁ ଆହ୍ୱାନ କରୁଛି । ପୁରୁଷପରି ନାରୀର ମଧ୍ୟ ମନ ଓ ପ୍ରାଣ ଅଛି । ସ୍ୱାମୀ ଓ ସ୍ତ୍ରୀର ସଂପର୍କ । ଏକ ଓ ଅଭିନ୍ନ । ସେଥିରେ ସନ୍ଦେହ । ବିଚ୍ଛେଦ ।

ୟୁନେସ୍କୋର ମୁଖ୍ୟ କାର୍ଯ୍ୟାଳୟ ଆଗରେ ପୃଥିବୀର ବିଭିନ୍ନ ଦେଶର ନାରୀ ସମାଜର ବିଦ୍ରୋହ । ନାରୀ ଜାଗରଣ । ଆମେରିକାରେ ପ୍ରାଚୁର୍ଯ୍ୟ ଥାଇ ନାରୀମାନେ ସମାଜଠାରୁ ଦୂରେଇ ଯାଉଛନ୍ତି କାହିଁକି ? ଭାରତରେ କୃଷ୍ଟି ଚେତନା, ଅର୍ଥନୈତିକ ପ୍ରଗତିର ତାଳେ ତାଳେ ଯୌତୁକର ଦରବୃଦ୍ଧି । ନାରୀର ଆତ୍ମହତ୍ୟା ।

ଚୀନର ଶୋଷଣ ବିହୀନ ରାଷ୍ଟ୍ର ଗଠନରେ ଜନସଂଖ୍ୟାରେ ହ୍ରାସପାଇଁ କନ୍ୟା ସନ୍ତାନର ଜୀବନ ହତ୍ୟା । ଥାଇଲଣ୍ଡ, ବ୍ୟାଙ୍କକ୍‌ରେ ଅର୍ଥ ରୋଜଗାର ପାଇଁ ପୁରୁଷ ଓ ସ୍ତ୍ରୀର 'ସଙ୍ଗମ'ର ନଗ୍ନ ପ୍ରଦର୍ଶନ । "ଲାଇଭ୍ ସୋ" ପ୍ୟାରିସ୍ ସହରରେ କ୍ୟାଲ୍‌କାଟା ! ପରଫ୍ୟୁମ୍‌ର କଡ଼ାବାସ୍ । ଶୃଙ୍ଗାର ଚେତନା । ଆରବ ଦେଶରେ ବଡ଼ ବଡ଼ ଅମୀର ମାନଙ୍କର ତୈଳ ସାମ୍ରାଜ୍ୟ । ଡଲାରର ଖେଳ ! ଡଜନ୍ ଡଜନ୍ ନାରୀଙ୍କୁ ଦାସୀକରି ରଖିବାର ମୋହ । ଅବା କେଉଁଠି "ଡ୍ରାଗନ୍"ର କ୍ଷମତାର ନିଶା । ନାରୀର ଦେହକୁ କଞ୍ଚା ଖାଇବାର, ଲାଳସା । 'ବ୍ଲାକ୍‌ବିଉଟି'ର କାବାରେ ନୃତ୍ୟ ପ୍ରଦର୍ଶନ । ନିତମ୍ବ ଦୋଳନ । ପୃଥିବୀର ବିଭିନ୍ନ ଦେଶରେ ନାରୀର ଶୋଷଣର ଚିତ୍ର । ନିର୍ଯ୍ୟାତନାର ସ୍ୱରଲିପି । ଝିଁଉର ଝଙ୍କାର ।

ଲୋଭ, କ୍ରୋଧ, କୋଳାହଳ ।

ମୃତ୍ୟୁ, ମୂର୍ଚ୍ଛନା ।

ମାର୍ଗ, ମର୍ମନ୍ତୁଦ ।

ଝାଉଁଗଛର ଝୁଲୁଥିବା ଫଳ ।

ଦାନବର ନିଶ ।

ପଦ୍ମଫୁଲର ମୃତ୍ୟୁ ।

ପର୍ବତର ବିଳେପ ।

କର୍ମମାନ ଧର୍ମଭ୍ରଷ୍ଟ ।

ହତ୍ୟା ନା ଆତ୍ମହତ୍ୟା ।

ଧ୍ୱଂସ ନା ମୃତ୍ୟୁ ।

ବିଳାସ ନା ବିକ୍ଷେପ ।

ବିରକ୍ତ ନା ବୈରାଗ୍ୟ ।

ପଥ ନା ପଥର ।

ନିରୋଧ ନା ନିବାରଣ ।

ନିରୁପାୟ ।

"ଏ ଯୋବାଟିକ୍" ଯୋ'ର ବ୍ୟାଣ୍ଡର ତାଳେ ତାଳେ ଶରୀର ଖେଳେ । କେତେ ଶବ୍ଦ କେତେ ଧ୍ୱନୀ । ପ୍ରତିଧ୍ୱନୀ । ମିସେସ୍ ଲି ବିବ୍ରତ । ଆଖି ପତା ବନ୍ଦ କରିଦେଇଛି । ଦୁଇ ହାତରେ କାନକୁ ଚୁପି ଧରିଛି । ଦେହ ତା'ର କମ୍ପି ଉଠୁଛି ।

ଆଗରେ ହଜାର ହଜାର ବୁଦ୍ଧମୂର୍ତ୍ତୀ । କମନୀୟ ରୂପ । ଧର୍ମଚକ୍ର ।

ହାତ ତା'ର ଅପେ ଆପେ ଯୋଡ଼ି ହୋଇଯାଇଛି । କେବେ ସେ ମୂର୍ତ୍ତୀ ପୂଜା କରିନି । ଆଜି ତା'ର ବିରାଟ ପରିବର୍ତ୍ତନ ।

: ହେ ବୁଦ୍ଧ ! ନାଗା ସମାଜକୁ ଧ୍ୱଂସମୁଖରୁ ରକ୍ଷାକର !

---

ବେଇଜିଂ ୨୧/୭/୮୩
("ନ୍ଗୂ"—ଚୀନରେ ନାଗାଙ୍କୁ
"Ngu" "ନ୍ଗୂ" ବୁଝାଯାଏ ।)

# ବାଇଧର ବାବୁଙ୍କ ବଦଳି

• ପଙ୍କଜିନୀ ଦାଶ



ବାଇଧର ବାବୁ ଯେତେବେଳେ ଷଷ୍ଠମ କଟକରୁ ବଦଳି ହୋଇ ଝୋଡ଼୍ ସୁଷମ କଟକରେ ପହଞ୍ଚିଲେ ତାଙ୍କ ମନ ମହାନଦୀଙ୍କ କାଟଜୁଡ଼ି ଢେଉ ଭଳି କୁଦା ମାରିଲା । କାଠଯୋଡ଼ି ପୋଲ ଉପରେ ଗାଡ଼ିଟା ଦଡ଼ ଦଡ଼ ଧାଇଁଲା ବେଳକୁ ଦୂରରୁ କଟକ ସହର ଶୋଭା ଦେଖି ବାଇଧର ବାବୁ ଅତି ଆନନ୍ଦରେ ନିଦ୍ରିତା ପତ୍ନୀଙ୍କୁ ଗୋଟାଏ ଝୁଣ୍ଟାମାରି ଉଠାଇବାକୁ ଚେଷ୍ଟାକଲେ । ସେତେବେଳକୁ ବାସ୍ନାଣୀ ଦେବୀଙ୍କ ଗହମ ନାକଟା ଦମାଦୋଟିଆ ଧରି ଆସିଥିଲା । ମୁଣ୍ଡଟା ଗୋଟେ ପଟକୁ ଅଡ଼େଇ ହୋଇଯାଇ ୯୦ ଡିଗ୍ରୀ ଦରମେଲା । ପାନଗୁଣ୍ଡ ଧାରଟାଏ ଓଠ କୋଣରେ ବୋହି ଗଲୁଥାଏ । ପୁରୁଣା ମାଛ କେଇଟା ବେଢ଼ି ଯାଉଥାନ୍ତି । ଘଡ଼ର ଘଁ ଆୱାଜ କରି ନାଣିକା ଘୁଡ଼ା ଦୁଇଟା ଟ୍ରେନ୍ ଶବ୍ଦ ସଙ୍ଗରେ ପ୍ରତିଯୋଗିତା କରୁଥାଏ । ମୁଣ୍ଡର ଦରପାଚିଲା ବାଳ କେଇଟା ଫର ଫର ହୋଇ ଉଡ଼ୁଥାଏ । ମଥାର ପଇସିକିଆ ସିନ୍ଦୁର ଟୋପାଟା ବିଲବିଲ ହୋଇ କପାଳ ସାରା ଲେପିହୋଇ ଯାଇଥାଏ । ବାଇଧର ବାବୁଙ୍କ ଝୁଣ୍ଟାରେ ତାଙ୍କ ନିଦ୍ରାଟା ଭାଙ୍ଗିଗଲା । ସେ ରଙ୍ଗ ରଙ୍ଗ ଆଖିରେ ଗୋଟେ ତୀବ୍ର କଟାକ୍ଷ ହାଣି ସ୍ୱାମୀଙ୍କୁ ବିରକ୍ତ ହୋଇ ମୁହଁଗୁଞ୍ଜି କହିଲେ ସେମିତି କାହିଁକି ଟହଳେଇ [?] ଖାଇଲା ପରି ହେଉଛ ? ଗାଡ଼ି ତ ଷ୍ଟେସନରେ ଗୁଡ଼ାଏ ବେଳ ପଡ଼ିରହିବ । ଆଗରୁ କଣ ନ ଦେଖିଶୁଣି ଲାଗିଲା ହେଉଛ କିଆଁ ?

ବାଇଧର ବାବୁ ତାଙ୍କ କଥାକୁ କାନ ନଦେଇ ଛୁଆଗୁଡ଼ାଙ୍କୁ ଝିଙ୍କି ଓଟାରି ଶୋଇଲା ଆନରୁ ଉଠାଇ ଦେଲେ । ସେଗୁଡ଼ା ମେଣ୍ଢା ଚୁହାଳରେ କଥା ଲାଗିଲାପରି ଭେଁ...ଭେଁ ହୋଇ ଗୋଟାକ ଉପରେ ଗୋଟେ କଚିଲି ହେଲେ । ବାସ୍ନାଣୀ ଦେବୀ

ପ୍ରାଗରେ ଦାନ୍ତ କଡମଡ଼ କରି ଖିଙ୍କାରି ଉଠିଲେ— କଣ ଭୂତ ଲାଗିଛୁ କି ? କୁଆ ଗୁଡ଼ାକୁ ଏମିତି ଉଠାପକା କରୁଛ କାହିଁକି କୁଆଡ଼େ ପକେଇ ଯାଉଛ ?

ବାଞ୍ଛାଧର ବାବୁ ପାଗଳ ପରି ସୁଟ୍‌କେସ୍ ଟାଣି ଆଣୁ ଆଣୁ ଉପରୁ ଧଡ଼ାସ୍ କରି ଜଣେ ଯାତ୍ରୀଙ୍କ ଗୋଡ଼ରେ ପଡ଼ିଗଲା । ଯାତ୍ରୀ ଜଣଙ୍କ ରାଗିମାଗି ବାଞ୍ଛାଧର ବାବୁଙ୍କ ଉପରକୁ ମାରି ନମାରି । କରେ ! ଏଇଟା କଣ ଜୀବନରେ କାହିଁକି ଦେଖିନ ? ଗାଡ଼ି ନ ରହୁଣୁ ଏମିତି ବଜକଥା ହେଉଛ କାହିଁକି ?

ନୀରବରେ ଗାଳିଗୁଡ଼ାକ ହଜମ କରି ସେ ଜିନିଷପତ୍ର ଗୁଡ଼ାକ ସଜାଡ଼ିବାରେ ଲାଗିଗଲେ । କୁଆଗୁଡ଼ାକର ଛାଡ ଭାଙ୍ଗିଗଲାଣି । ଯାନଟା ଠିଆରେ ଠିଆରେ ଏକ କରି ପକାଇଲାଣି । ଆଉ ଦୁଇଟା କୁଛୁ କୁଛୁ ହେଉଛନ୍ତି ।

ଗାଡ଼ି ଯେମିତି ଷ୍ଟେସନରେ ରହିଛି ସେ ଅସମ୍ଭାଳ ହୋଇ କୁଲି କୁଲି ଡାକ ଛାଡ଼ିଲେ । ସାଙ୍ଗେ ସାଙ୍ଗେ ମଡ଼କୁ ଶାଗୁଣା ବେଢ଼ିଲା ପରି ନାଲି କୁରୁତା କୁଲି ଗଣ୍ଡାଏ କ ଛଅଟା ତାଙ୍କ ଡବାକୁ ପଶିଆସିଲେ । ଆଗ କୁଆଗୁଡ଼ାଙ୍କୁ ତଳକୁ ଓହ୍ଲେଇ ଦେଇ ନିଜେ କୁଲିଙ୍କ ସଙ୍ଗରେ ଜିନିଷପତ୍ର ଓହ୍ଲାଇଲେ । ବାବାରେ ବେଡ଼ିଙ୍ଗ୍, ସୁଟ୍‌କେଶ୍, ଗଣ୍ଠିଲି, କୁଲି ବାଉଁଶିଆ, ଟିଣଡବା ହୋଇ ଅଧଡ଼େକେ ଜିନିଷ ଗାଡ଼ି ଭିତରୁ ବାହାରିଲା । ସ୍କ୍ରୋଫିଟ୍ କୁଲି ମୁଣ୍ଡ ଉପରେ ଅଧାପଙ୍ଗା ଲଦିଲା ପରି ଟଳି ଟଳି ପ୍ଲାଟ୍‌ଫର୍ମ ବାହାରକୁ ଗଲେ । ତାଛଡ଼ା ନିଜେ ବାଞ୍ଛାଧର ବାବୁ ଓ ତାଙ୍କ ସ୍ତ୍ରୀ ପିଲାମାନେ ଯିଏ ଯାହା ପାରିଲେ ଗୋଟିଏ ଗୋଟିଏ ଧରି ଚାଲିଲେ । ଗେଟ୍‌ରେ ଟିକେଟ୍ ଦେଇ ପଦାକୁ ବାହାରିଲା ମାତ୍ରେ ରିକ୍‌ସାବାଲା ଗୁଡ଼ାକ ହାଉ ହାଉ ହୋଇ ବାବୁ ରିକ୍‌ସା···ବାବୁ ରିକ୍‌ସା କହି ବେଢ଼ିଗଲେ । ସାଙ୍ଗରେ ଏତେ ଜିନିଷ ପୁଣି କୁଆପିଲା ! ବାବୁ କୋଉ ବଜାର ଯିବେ ବୋଲି ପୁଚ୍ଛାରେ ପଣ୍ଡାମାନେ ନିଜ ନିଜ ଅଞ୍ଚଳ ଯାତ୍ରୀ ତଲାସ କଲାପରି ବଜାରର ରିକ୍‌ସାବାଲା ସବୁ ଟାଣୁ ଟାଣୁ ହେଲେ । ବାଞ୍ଛାଧର ବାବୁ ଟିକିଏ ଘାବୁରେଇ ଗଲେ । କନକନ ହୋଇ ଚାରିଆଡ଼େ ନଜର ପକେଇ ଅଣ୍ଟିଲେ । କାହିଁ ଜଟାଧାରୀ ? ଚାରିଚାରିଟା ଚିଠି ଗୋଟାଏ ଟେଲି-ଗ୍ରାମ୍ ସବୁ ପାଣି ଫାଟିଗଲା । ବାରମ୍ବାର ଯେ ଲେଖିଥିଲେ ଷ୍ଟେସନର ପ୍ରଧାନଗେଟ ପାଖରେ ଥିବୁ । ତୁ ନ ଆସିଲେ ଆମେ ତୋ ଘର ପାଇବୁନି । ଶଳା ମୋଗଲ ବନ୍ଦୀଆ ଲୋକଗୁଡ଼ାକୁ ଜମା ପରତେ ଯିବନି । ସେତେବେଳକୁ ପିଲଙ୍କ କାନ୍ଦ ରିକ୍‌ସାବାଲାଙ୍କ ପାଟିଗୋଳ କୁଲିମାନଙ୍କ ଚିତ୍କାର ଆଉ ମାଗିଛିଆଙ୍କ ଦୌରାତ୍ମ ସବୁ ଏକାକାର ହୋଇ ବାଞ୍ଛାଧର ବାବୁଙ୍କ ମୁଣ୍ଡଟାକୁ ପାଗଳ କରି ଦେଇଥାଏ ।

ଝୁଣ୍ଟୁଣା ତାଙ୍କ ମାଣ୍ଡଲପର ପତ୍ନୀ ତଗୁଲେଇ ତଗୁଲେ କହୁଲେ, ଆଉ ତୁମ ସ୍ୱାଗତଟି କାହିଁ ? ଆଗୁରୁ ଘରଭଡ଼ାବାବଦ ଦୁଇମାସର ଟଙ୍କା ପଠାଇଦେଲ । ଆଜକାଲି ତ ମା ପେଟର ଖାଇ ନଜର ହେଉନ, ଆଉ ଏଇଗୁଡ଼ା ସ୍ୱାଙ୍କୁ ସବୁ ସାହାଯ୍ୟ କରିଦେବେ । କଟକ ଆସିବବୋଲି ଉଚ୍ଛାଟ ହେଉଥିଲ, ପାଣିପରି ଟଙ୍କା ଗୁଡ଼ାକ ଖରଚକରିଦେଲ ଏବେ କୁଆଡ଼େ ଯାଉଛ ଯା ! ଅନ୍ଧାର ମାଡ଼ି ଆସିଲଣି । ପିଲାଗୁଡ଼ାକ ଭୋକରେ ଆଉଟି ହେଲେଣି ।

ବାଇଧର ବାବୁଙ୍କ ବନ୍ଧୁଙ୍କ ନିନ୍ଦା ଅସହ୍ୟ ହେଲ । ସେ ସଙ୍ଗେ ସଙ୍ଗେ କହିପକାଇଲେ ଅରେ କାର କଣ ସୁବିଧା ଅସୁବିଧା ନାହିଁ ? କଣ ଦେହ ଯା ଖରାପ ହୋଇଥିବ ତା ଛଡ଼ା ଗାଡ଼ିଟା ଦୁଇଘଣ୍ଟା ଲେଟ୍ । ସେ ବୋଧହୁଏ ଅପେକ୍ଷା କରି କରି ଫେରିଯାଇଥିବ । ତା ଛଡ଼ା ତା' ବସାଘର ଠିକଣା ମୋ ପାଖରେ ଅଛି । ଏକା ଗାଁରେ ଘର ପୁଣି ପିଲାଦିନର ସାଙ୍ଗ ସେ ତା ନିଜଆଡ଼ୁ ତା ବସା ଠିକ୍ କରିଦେଇଛି । ଚାଲ ତା ବସାକୁ ଗଲେ ସବୁ ଜଣାପଡ଼ିବ । ତାକୁ ସାଧାରଣ ବୋଲି ଭାବିଛ କି ? ସେ ମନ୍ତ୍ରୀଙ୍କ ପାଖ ଲୋକ । ମନ୍ତ୍ରୀଙ୍କର ଚକେ ହେଲେ ତାର ବାରହାତ ।

ଏତିକବେଳକୁ କୁଲିମାନେ ଗଦେଇଥିବା ଜିନିଷରୁ ହଠାତ୍ ଗୋଟେ ଠାଉରିଆ ଆସି ବ୍ୟାଗ୍‌ଟାଏ ଧରି ଚଂପଟ୍ । ନେଲା···ନେଲା···ହୋ···ହୁଲ୍ଲା··· ଧାଁ ଧପଡ଼ । ହଉ ଯାଉ, ଭାଗ୍ୟଭଲ ସେଥିରେ କିଛି ଦାମିକା ଜିନିଷ ନଥିଲା । ଖାଲି ପିଲାଙ୍କ ଖାଇବା ଜିନିଷଥିଲା ।

ବାସ୍ୱାଣୀଦେବୀ ମୁଣ୍ଡକୋଡ଼ି ହେଲେ ମୋ ପିଲେ ଏଇଲେ କଣ ଖାଇବେ । ବାଇଧରବାବୁ ଦେଖିଲେ ଆଉ ବେଶି ସମୟ ଏଠି ରହିଲେ ଆହୁରି କିଛି ବିପଦରେ ପଡ଼ିବେ, କୁଲିଙ୍କ ପଇସା ତୁଟେଇଦେ ତୁଳସୀପୁରିଆ ରିକ୍‌ସା ତ୍ରିଟିଧରି ଯିବାକୁ ନିର୍ଦ୍ଦେଶ ଦେଲେ । ଆଗ ରିକ୍‌ସାରେ ସେ ପୁଅ ତନୋଟିଙ୍କୁ ଧରି କିଛି ଜିନିଷ ସହ ଚାଲିଲେ । ମଝିରେ ଝିଅିଆ ପାହାଡ଼ପରି ଗୁରୋଟି ରିକ୍‌ସା ଜିନିଷପତ୍ର ଧରି ଓ ସବୁ ଶେଷ ରିକ୍‌ସାରେ ବାସ୍ୱାଣୀଦେବୀ ସାନ ଝିଅ ତନିଟାଙ୍କୁଧରି ଚାଲିଲେ ।

ଏ ବଜାରରୁ ସେ ବଜାର, ଏ ଗଳିରୁ ସେ ଗଳି ବୁଲି ବୁଲି ଶେଷରେ ତୁଳସୀପୁର ଦେଉଳସାହି ଛକ ପାଖରେ ପହଞ୍ଚିଲେ । ଓଭେଇପଡ଼ି ବାଇଧରବାବୁ ପାନ ଦୋକାନି, ଜଳଖିଆ ଦୋକାନି ସମସ୍ତଙ୍କୁ ଜଟାଧାରୀବାବୁଙ୍କ ବସା କେଉଁଠି ବୋଲି ପଚାରୁଥାନ୍ତି । କେହି ସଠିକ୍ କହି ପାରୁନଥାନ୍ତି । ରିକ୍‌ସାବାଲା ଗୁଡ଼ାକ ବିରିଡ଼ି ଗଲେଣି । ଛୁଆଗୁଡ଼ାକ ହୋଲମଚା ହୋଇଗଲେଣି । କେତେବେଳେ କଣ

ଖାଇଥିଲେ । ଖାଇବା ଜିନିଷତକ ଅଲପାଇଷିଆ ପେଟର ହାବୁଡ଼େଇଗଲା । ବାହ୍ମଣୀ-ଦେବୀ ମନେ ମନେ ଜଟାଧାରୀବାବୁଙ୍କ ସାତପୁରୁଷ ଉଦ୍ଧାରିଲେଣି । ସ୍ୱାମୀଙ୍କ ଉପରେ ରଗେଇ ଖଗେଇ ହୋଇ ଗୁଣୁ ଗୁଣୁ ହେଉଛନ୍ତି । ଶୀତଦିନିଆ ରାତି ହେମାଳ ପବନ ସୁଁ ସୁଁ ଶବ୍ଦରେ ଗଳିଯାଉଛି । ସାନ ପିଲାଟା ରାହାଧରି କାନ୍ଦୁଛି । ସେତେ ମୁହଁରେ ଖୀର ବୋତଲ ମାଡ଼ୁଛନ୍ତି ଜମା ଚୁପ ହେଉନି । ବାଇଧର ବାବୁ ତଥାପି ଧୈର୍ଯ୍ୟ ନହରାଇ ଯାହାକୁ ଦେଖୁଛନ୍ତି ପଚାରୁଛନ୍ତି । ରାସ୍ତା ଉପରେ ଅଧା ପାହାଡ଼-ପରି ରିକ୍ସା ଗୁଡ଼ାଏ ଦେଖି ଲୋକ ଜମା ହୋଇଗଲେଣି । ଗଳି ଆର୍ପଲି ବାଟୋଇ ମଧ୍ୟ କୌତୁହଳ ସମ୍ଭରଣ ନକରିପାରି ଠିଆ ହୋଇଯାଇ କଥା କଣ ବୋଲି ପଚାରୁଥାନ୍ତି । ଘର ତରେକୁନ୍ଦ ଆଉ ମନ୍ତ୍ରୀଙ୍କ ପାଖ ଲୋକବୋଲି କହିବାରୁ ଜଣେ ହୋଟେଲବାଲା ଚିହ୍ନିଲା । ରିକ୍ସାବାଲାଙ୍କୁ ତାଙ୍କ ଭଡ଼ାଘର ଠିକଣା ବତେଇ ଦେଲା ।

ବହୁତ କଷ୍ଟରେ ଖାଲଢିପ ଗଳି କନ୍ଦି ଦେଇ ରିକ୍ସାଯାଇ ଜଟାଧାରୀ ବାବୁଙ୍କ ଭଡ଼ାଘର ଗଳି ଆଗରେ ଠିଆହେଲା । ତେଣିକି ଆଉ ରିକ୍ସା ଯିବନି । ଖଣ୍ଡେ ବାଟ ଚାଲିଗଲେ ସେଇ ପ୍ରଥମ ସଜନା ଗଛଟା ପାଖରେ ଯେଉଁ ଟିଣ କବାଟ ଲାଗିଛି ସେଇଘର । ବାଇଧରବାବୁ ଏକା ଛୁଆଁକେ ଓହ୍ଲେଇପଡ଼ି ଛ ଖେପାରେ ଯାଇ ଟିଣ କବାଟ ଧଡ଼ ଧଡ଼ କଲେ । କେତେବେଳକେ ହଠାତ୍ ଟିଣ କବାଟ ଖୋଲି ଜଣେ ସଣ୍ଢାମାର୍କା ମରଦ ଫିଟି ପଡୁଥିବା ଖୋର୍ଦ୍ଧା ଲୁଙ୍ଗି ଖଣ୍ଡିକ ନାହି ତଳେ ଗୁଣ୍ଡେଇ ପୁଡ଼େଇ ପଚାରିଲା କିଏବେ ! ସେମିତି ଅଭଦ୍ରପରି କାହିଁକି କବାଟ ଧଡ଼୍ ଧଡ଼୍ କରୁଛୁ ?

ତା ଭଙ୍ଗ ରଙ୍ଗ ଆଖିର ଧମକ୍ ଦେଖି ତାଙ୍କ କଲିଜା ପାଣି । ସହଜେ ନୂଆ ଯାଗା । ଅଚିହ୍ନା ଲୋକ । ନରୁଟିଆ ରାତି ଦ'ଟା ସୁପୁଡ଼ା ଥୋଇଲେ କୋଉ ବୋପା ପିଠିରେ ପଡ଼ିବ । ମହରଗରୁ ଆସି କାନ୍ଥାରରେ ପଡ଼ିଲେ । ସେ ଥଙ୍ଗ ଥଙ୍ଗ ହୋଇ ଢୋକ ଗିଳି ଗିଳି ପଚାରିଲେ, ଏଠି ଜଟାଧାରୀ ବାବୁଙ୍କ ବସା ଘର କୋଉଟା । ତାଙ୍କ ଘର ତରକୁନ୍ଦ । ମିନିଷ୍ଟରଙ୍କ ପାଖଲୋକ ।

ତାଙ୍କୁ ଆଉ କୁହାଇ ନଦେଇ ଲୋକଟା ଗୋଟାଏ ବାଘୁଆ ହୁହାଣି ମାରି ଜଳିଲା ଯା ବେ ! ଏଠି କେଉଁ ଜଟାଧାରୀ ନାହିଁ । ଧଡ଼୍କରି ଟିଣ କବାଟଧା ବନ୍ଦକରି ଚାଲିଗଲା ! ଆଉ ଟିକେ ଯାଇଥିଲେ କଡ଼ା ମଦ ଗନ୍ଧରେ ତାଙ୍କର ବାନ୍ତିହୋଇ ଯାଇଥାନ୍ତା । ଟିଣ କବାଟ ଧଡ଼୍ ଧଡ଼୍ ଶବ୍ଦରେ ଆଶାର ଦୀପାଳୀଟା ଧକ୍କରି ଲିଭିଗଲା । ନିରାଶ ହୋଇ ଦୁଇ ପାହୁଣ୍ଡ ଫେରିଆସିଛନ୍ତି କି ନାହିଁ ବୁଢ଼ୀଟିଏ

ଉତ୍ତରରେ ଧଡ଼ ପାଖପଟରୁ କବାଟ ଖୋଲିଲା । ଲିଭି ଯାଉଥିବା ଆଶାର ଦୀପାଳିକି ପୁଣି ଚେଇଁ ଉଠିଲା । ଡରବରହୋଇ ପଚାରିଲେ, ମାଉସୀ ! ଏଠି ନଟାଧାରୀବାବୁଙ୍କ ବସାଘରଟା କେଉଁଠି କହିପାରିବେ ?

ବୁଢ଼ୀଟି ବଡ଼ହେବେଲ ଖୁଁ...ଖୁଁ କାଶି ଟେମଟାଏ କଫ ଥୁକରି ପକେଇ କହିଲା, ନଟିଆକୁ ଖୋଜୁଛୁ ବାପା ?

ବାଇଧର ବାବୁ ଅକୂଳରେ କୂଳ ପାଇଲେ । ହଁ ମାଉସୀ ତୁମେ ତାଙ୍କୁ ଜାଣ ? ବୁଢ଼ୀଟି ପୁଣି କାଶି କାଶି ତଣ୍ଟି ସଫାକରି କହିଲା, ମୁଁ ତାକୁ ଚିହ୍ନିନି ? ବାଣ୍ଡଖିଆ ଏଇ ଟିଣ କବାଟ ଘରେ ଭଡ଼ାଥିଲା । କଣ ଗପ୍ପେଇ ଅଫିମ ବେପାର କାରବାର ଲୁଚେଇ ଛପେଇ କରୁଥିଲା ଯେ ଏଇ ଦି'ଦିନ ତଳେ ପୁଲିସ ବାନ୍ଧି-ନେଇଛି । ଗଲା ତ ଗଲା ମୋର ଗୁଳସ୍ତ ଧଙ୍କା ବୁଡ଼ିଗଲା । ମୁଁ ଗରିବ ବୁଢ଼ୀଟାଏ ଗୁ'ପଲୁଡ଼ି ଦୋକାନ କରିଚଳେ । ମାସେ ଉପରେ ଖାଇଲାଣି ଆଜି ଦେବି କାଲି-ଦେବି ଏମିତି କରି ଟାଳଟୁଲ କଲା । ଝାଡ଼ୁବାଣ୍ଡିଆ ବନ୍ଧାହେଇଗଲା ଭଲ ହେଇଚି, ହେଲେ ପୁଅ ମୋ ବେଉସା ବୁଡ଼ିଗଲା । ତୁମେ କ'ଣ ତା'ର ନଜର ଲୋକ ? ଯଦି ମୋ ପଇସାତକ ତା ପାଇଁ ଦେଇ ଦିଅନ୍ତ କେତେ ବଇଲେଣ କରନ୍ତି ।

ଆଉ ଶୁଣିବାକୁ ଧୈର୍ଯ୍ୟ ନଥିଲା ତାଙ୍କର । ଛୋଉ ମୁହଁନେଇ ସେ ଏଇଲେ ଫେରିବେ । ଯିବେ କେଉଁଠିକି ? ଦିନେ ବା ଚହ୍ନା ଅଚିହ୍ନା ଏଇ କଟକ ସହର ବାଲିକା ବଜାର ଫେପନଗଲା କା ଘର ପାଇବେ । ରାତି ମାଡ଼ିଆସିଲାଣି । ଅନ୍ଧାରେ ଦେହ ହାତ କୋଳିମାରି ଯାଉଛି । ରାସ୍ତା ଉପରୁ କୁଆଙ୍କ କାଳ ସାଙ୍ଗରେ ରିକ୍ସା-ବାଲାଙ୍କ ପାଟି ଶୁଭୁଛି । ଘର ଜଣା ନଥିଲା ବଲେ ଅଡ଼ୁଥିଲା କାହାଁ । ଆମ ପଇସା ଦେଇପକା । ଆମେ ପଳେଇବାର । ପତ୍ନୀଙ୍କ ଠାଇଁ ଠାଇଁଆଦ୍ରେ ଶୁଭିଲା, ହଜ ପଇସା ନେଇ ସେମିତ ପାଟିକରୁଛ କାହିଁକି ?

ବାଇଧର ବାବୁ ତର ତର ହୋଇ ପାହୁଣ୍ଡ ପକାଇଲେ । ଯୋଗ ଗହାବଲୀ ସ୍ତ୍ରୀ ଏଇଲେ ରାସ୍ତା ଉପରେ ମହାଭାରତ ସୃଷ୍ଟି କରି ରିକ୍ସାବାଲାଙ୍କ ତଉଦ ପୁରୁଷ ଉଦ୍ଧାରିବ । ଅବଶରେ ଗୋଡ଼ ଦୁଇଟା ପଙ୍ଗୁ ହେଲାପରି ଲାଗୁଥାଏ । ଦୀର୍ଘ ବାର ବର୍ଷକାଳ କୋରାପୁଟ ମାଲ ଅଞ୍ଚଳରେ ରହି ରହି ବଦଳି ହୋଇ କେତେ ଚେଷ୍ଟାକରି ତଳଠାରୁ ଉପର ପର୍ଯ୍ୟନ୍ତ ହଜାର ହଜାର ଟଙ୍କା ହାତଗୁଞ୍ଜାଦେଇ କଟକ ବଦଳି ହୋଇଥିଲେ । ସାଙ୍ଗସାଥୀମାନଙ୍କର ଉପହାସପୂର୍ଣ୍ଣ ମିଛ ଆଶ୍ୱାସନାରେ ଭୁଲିଗଲେ । କାହିଁ କାହାର ଦେଖାନାହିଁ । ସମସ୍ତଙ୍କ ଧାଇଁକୁ ଗଠି ଦେଇଥିଲେ ।

ମାଳା ଅଞ୍ଚଳ ହେଉଥିଲେ କେତେ ଶାନ୍ତିରେ ଥିଲେ । ସରକାରୀ କ୍ୱାଟର, ବାଡ଼ି ବଗିଚା ମାଗଣା ଚାକର ସବୁ ପାଇଥିଲେ । ଘରେ ନପଶୁଣୁ ମୁଣ୍ଡରେ ଗୁଳା ବାଜିଲାପରି କେତେ ଦୁନସ୍ତା ହେଲେଣି । କଟକ ସହର ଧବଳ ଟଗରର ମଜା ବେଶ୍ ଚାଖିଲେ । ଏଇଲେ ଏତେ ଜିନିଷ ଛୁଆପିଲା ନେଇ ଯିବେ କେଉଁଠିକି ? ଗାରେ ଜ ଯେଉଁ ଗୁଳାଘର ଦବଦବା ବାପ ଅମଳରୁ ଥିଲା କେହି ନଦେଖିବାରୁ ବାତ୍ୟାରେ ଉଡ଼ି ଯାଇଛି ।

ଦେଖୁ ଦେଖୁ କାମୁଡ଼ା ବଲେଇପରି ଗର୍ଜି ଉଠିଲେ ବାସ୍ନାଣୀ ଦେବୀ । କ'ଣ ଘର ପାଇଲ ? ସେଠି ଲଖିଯାଇଥିଲ କଅଁ ? ଏ'ଣ ରିକ୍ସାବାଲା ଜିନଗପତ୍ର ଧର ।

ବାଇଧରବାବୁ ମୂର୍ତ୍ତି ପରି ରିକ୍ସା ଉପରେ ବସିପଡ଼ି ବାଦାମବାଡ଼ି ବସ୍ତିକୁ ଯିବାକୁ ନିର୍ଦ୍ଦେଶ ଦେଲେ । ରିକ୍ସାବାଲା ଗେଁ...ଗେଁ ହେଇ ରିକ୍ସା ଚଲାଇଲେ ।

ସାପ ଗାତରୁ ଫଣାଟେକି ଗୋଟେ ମାଈଲପରି ଫଁ ଫଁ ହୋଇ କହିଲେ ବାସ୍ନାଣୀଦେବୀ ମଲ କଣ ଧୁଆଁ ଲାଗିଛି କି ? ରେଲଷ୍ଟେସନରୁ ତୁଳସୀପୁର, ତୁଳସୀପୁରରୁ ବାଦାମବାଡ଼ି । କଣ କଟକ ସହର ଦେଖିନ କି ? ଏମିତି ଘିରି ଘିରି ହୋଇ ବୁଲିବାକୁ ଭଲ ଲାଗୁଛି ? ଛୁଆ ଗୁଡ଼ାକ ଧକେଇ ଧକେଇ ଶୋଇପଡ଼ିଲେ ଚାଲୁନ କୋଉଠି ବସା ଠିକ୍ ହୋଇଛି ସେଠିକି ଯିବା ।

ସହିବାର ସୀମା ହରେଇଥିଲେ ବାଇଧରବାବୁ । କ୍ରୋଧରେ ଫାଟିପଡ଼ି କହିଲେ, ତୁମ ବାପ ଏଠି, କୋଠା ତୋଳିଦେଇଛି ରହିବାକୁ । ଚାଲ ବସ୍ତିକୁ ! ସେଠି ଆଜି ରାତିଟା କଟେଇ କାଲି ଯାହା ବ୍ୟବସ୍ଥା ହେବ ।

ଆଉ ବାସ୍ନାଣୀ ଦେବୀଙ୍କ ସମ୍ଭାଳେ କିଏ ? କଣ ହେଲା...ମୋ ବାପା ଆଣ୍ଡିର କୋଠା ତୋଳିଦେଇଥାନ୍ତା -କାଳି କନଆଚୋଲ ନଗଦ ଦଶହଜାର ବେଦୀ ଉପରେ ଠନ୍ ଠନ୍ କରି ଗଣିନେଲ ? କୋଉ ଚାକିରୀ କି ଏତେ ଗର୍ଭ କାନମୁଣ୍ଡ ଆଉଁସି ଚୁପ୍ ହୋଇଗଲେ ବାଇଧରବାବୁ । ରିକ୍ସାବାଲା ପାଟିରେ... ବାବୁ ଭଦରଲୋକ ହେଇଚ ଦାଣ୍ଡ ବାଟୁଟାରେ ଗାଳି ହଉଚ । ଏଟା କଣ ତୁମ ଗାଁ ପାଇଲ । ଏଟା କଟକ ସହର । ପାଟି ଶୁଣିଲେ ପୁଲିସ ଧାଇଁଆସିବ ? କେତେ ଅଡୁଆ ଛାର କରିବ ।



# ଚହ୍ଲା ମୁହଁ

## ଡକ୍ଟର ପ୍ରତିଭା ରାୟ

ଗାଡ଼ି ଚଳିବାକୁ ଆରମ୍ଭ କରିଛି ତ ଭଦ୍ରଲୋକ ଅପ୍ରସ୍ତୁତ ହୋଇ ବସ୍ ପାଖରେ ରିକ୍ସା ଅଟକେଇଲେ । ରିକ୍ସା ଭଡ଼ା ଦେବା ପାଇଁ ମନିପର୍ସ ଭିତରେ ରେଜା ଖୋଜି ଖୋଜି ଘାଟିକରି କଣ୍ଡକ୍ଟରକୁ କହିଲେ—'ଗୋଟାଏ ମିନିଟ ଭାଇ, ଆଡଭାନ୍ସ ଟିକେଟ କରେଇ ଦେଇଛି ଅଥଚ ପହଞ୍ଚିବାରେ ଡେରି । ଆମେ ସବୁ ଏମିତି ଆଡ଼ଭାନ୍ସଡ ସବୁ କଥାରେ ।"

ବସ ଛାଡ଼ି ଗଲା । ସମସ୍ତେ ଭଦ୍ରଲୋକଙ୍କର ରସିକତାକୁ ମନେ ମନେ ତାରିଫ କରୁଥିଲେ । ଆଉ କେତୋଟା ସେକେଣ୍ଡ ଡେରି ହୋଇଥିଲେ, ବସ ଛାଡ଼ି ଦେଇଥାନ୍ତା । ଲମ୍ବା ରାସ୍ତାର ଟିକଟ ପଇସା ବରବାଦ । ସବୁ କାମ ଏପଟ ସେପଟ । ତଥାପି ବି ଭଦ୍ରଲୋକ କୌତୁକ କରିପାରୁଛନ୍ତି !

ଭଦ୍ରଲୋକ ବସରେ ଚଢ଼ିଲେ । ମୋ ପାଖ ସିଟ୍‌ରେ ବସିଲେ । ମୋ ଉପରେ ଆଖି ପଡ଼ିଥିବା ମାତ୍ରେ ଉଚ୍ଛ୍ୱସିତ ହୋଇ କହିଲେ—ଆରେ—ଆପଣ ଯେ ! ଗସ୍ତ କୁଆଡ଼େ—କ'ଣ ଏକା ? ମୁଁ ଇତସ୍ତତ ଭାବେ ନମସ୍କାରଟିଏ କରିଦେଲି । ଭଦ୍ରଲୋକଙ୍କୁ ଚିହ୍ନିପାରୁନି—ଯଦିଓ ମୁହଁଟା ଭାରି ଚହ୍ଲା ଚହ୍ଲା । କୋଉଠି ଦେଖିଛି—କିଏ—କୋଉ ସମ୍ବନ୍ଧରେ ତାଙ୍କ ସହ ମୋର ପରିଚୟ ? କିଛି ବି ମନେ ପଡ଼ୁନି । ଅଥଚ ମୁହଁଟା ଏତେ ଆପଣାର ଆଉ ପରିଚିତ ମନେ ହେଉଛି ଯେ, କିନ୍ତୁ ଗୋଟାଏ ଅନ୍ଦାଜରେ କହିବାକୁ ସାହାସ ହେଉନି । ଯଦି ଭଦ୍ରଲୋକ ଖୁବ ନିକଟ ସମ୍ପର୍କର କେହି ହୋଇଥିବେ ଏବଂ ମୁଁ ତାଙ୍କୁ ଆଦୌ ମନେ ପକାଇ ପାରୁନି ବୋଲି ଜାଣିପାରିବେ, କ'ଣ ଭାବିବେ ମତେ ? ପରିସ୍ଥିତିଟା ସତରେ ଭାରି ଅସୁବିଧାଜନକ । ଏକବାର ସଙ୍କଟଜନକ କହିଲେ ଚଳେ । ଯିଏ କେବେ ଥରେ ଏମିତି ପରିସ୍ଥିତିରେ ପଡ଼ିଛି ସେ ଏକା ବୁଝିପାରିବ । ଚିହ୍ନିପାରୁନି ବୋଲି କହିପାରୁ ନଥିବ ଅଥଚ ଚିହ୍ନିପାରିଥିବାର ମୁହଁ ଧରି କଥା କହିବାର ସାହସ ହେଉ ନ ଥିବ ।

ଆଜିକାଲି ପ୍ରାୟ ଏମିତି ହୁଏ । ଖାଲି ମୋର ନୁହେଁ—ଅନେକଙ୍କର । ଚହ୍ଲା ମୁହଁ ପୁଣି ଅଚହ୍ଲା ଅଚହ୍ଲା ଲାଗେ । ବେଳେବେଳେ ସବୁ ମନେ ପଡ଼ିବ ଖାଲି ନାଁ ଟିକୁ ଛାଡ଼ି । ଜିଭ ଅଗରେ ଥିବ, ଜିଭ ଲେଉଟି ନ ଥିବ । ଅବ୍ୟକ୍ତ ଗୋଟାଏ ବେଦନାରେ ଦିହ ଛଟପଟ ଲାଗୁଥିବ । ଅସଂଲଗ୍ନ ସ୍ମୃତି ସବୁ ଯୋଡ଼ି ହେଉ ହେଉ ଛିନ୍ନ ଯାଉଥିବ । ସବୁ ସଜାଡ଼ି ହୋଇ ଆସିଲା ବେଳକୁ ପୁଣି ବିଗିଡ଼ି ଯାଉଥିବ । ଦରକାରୀ ଜିନିଷଟିଏ ଅତି ହୁସିଆର ହୋଇ କେଉଁଠି ରଖିଦେଇଥିବ ଅଥଚ ଠିକଣା ବେଳରେ ଖୋଜି ଖୋଜି ପାଉ ନଥିବ । ସବୁ ଠିକ୍ ଜାଗା ତକ ମନେ ପକାଇ ପକାଇ ଖୋଜିଲା ବେଳେ ସବୁଥର ଲାଗୁଥିବ ଏଇ—ଏଥର ମିଳିଯିବ, ଅଥଚ ମିଳୁ ନ ଥିବ । ଅବସ୍ଥାଟା ଏକବାର ସେମିତି ।

ଭଦ୍ରଲୋକ ମୋର ଅତମେତ ଅବସ୍ଥା ଲକ୍ଷକରି ଆମୋଦିତ ହେଉଛନ୍ତି । ହସି ହସି ପଚାରିଲେ—"କ'ଣ ଚହ୍ନି ପାରିଲେନି—ମୁଁ ଜାଣେ ପରା—ବଡଲୋକ ଆପଣ—"

"ଆରେ ନାଁ—ନାଁ—ଚହ୍ନିବିନି ଆପଣଙ୍କୁ ? କି କଥା କହୁଛନ୍ତି ? ମୁଁ ତରବରରେ ଏତିକି କହିଦେଇ ପୁଣି ପଚାରିଲି—"ଆଉ—କେମିତି ଅଛନ୍ତି—ସବୁ ଭଲ ତ ?"

"ହଁ—ଚାଲିଛି ଏକରକମ । ବାପା ତ ସବୁଦିନ ବେମାର । ତା' ଭିତରେ ମୋର ତ ବର୍ଷକୁ ଅନ୍ତତଃ ଥରେ ବଦଳି । ଆପଣ ତ ସବୁ ଜାଣନ୍ତି—" ସେ ହସିଲେ । ଏତିକି କଥାର ଖିଅ ଧରି ମୁଁ ଭଦ୍ରଲୋକଙ୍କୁ ମନେ ପକାଇବାକୁ ଚେଷ୍ଟା ବ ଚେଷ୍ଟା କରୁଥାଏ । କିନ୍ତୁ ନାଁ—ସ୍ମରଣ ଶକ୍ତି ଏକବାର ଲୋପ ପାଇଗଲାଣି ।

ଅନ୍ଦାଜ ଉପରେ କଥାବାର୍ତ୍ତା ଚାଲିଥାଏ—ମାପି ଚୁପି ମୁଁ ଯାହା କହୁଥାଏ, ସବୁ ଭାଗ୍ୟକୁ ବାଜିଯାଉଥାଏ । ମୁଁ ଧିରେ ଧିରେ ସ୍ୱଚ୍ଛନ୍ଦ ହୋଇ ଉଠୁଥାଏ । ମନେ ମନେ ଭାବୁଥାଏ ଯା' ହେଉ ଏଇ ଲମ୍ବା ବସ ଯାତ୍ରା ପାଇଁ ଅନ୍ତତଃ ଚହ୍ଲା ମଣିଷଟିଏ ପାଖ ସିଟରେ ସହଯାତ୍ରୀ ଭାବରେ ମିଳିଛି । ଏକା ଏକା ବସ ଟ୍ରେନରେ ଯାତ୍ରା କଲେ ସ୍ତ୍ରୀ ଲୋକଙ୍କର ଏତିକି ହେଉଛି ଅସୁବିଧା । ବୟସ ଯେତେ ହେଉନା କାହିଁକି ଅଚହ୍ଲା ପୁରୁଷ ଲୋକଟିଏ ପାଖରେ ସ୍ୱଚ୍ଛନ୍ଦ ହୋଇ ବସି ହୁଏନା—ଆଜିକାଲି ତ ଅଚହ୍ଲା ଲୋକଙ୍କ ପ୍ରତି ମନରେ ଭୀତଭାବ ଜମାଟ ବାନ୍ଧି ରହିଥାଏ ।

ଯେତେ ଚେଷ୍ଟାକଲେ ଅଓଳ୍ପା ମଣିଷଙ୍କୁ ବିଶ୍ୱାସ କରିବାକୁ ମନ ଏକ୍‌ବାର ନାରାଜ୍ । ମଣିଷରେ ଅପରାଧ ପ୍ରବଣତା ବଢ଼ିବା ସଙ୍ଗେ ସଙ୍ଗେ ମନଟା ବେଶି ବେଶି ସନ୍ଦିଗ୍ଧ, ଅବିଶ୍ୱାସୀ, ଅଶାନ୍ତ ଆଉ ଅସ୍ଥିର ହେଇଉଠୁଛି । ସେଇଥି ପାଇଁ ଯେତେ ଆମୋଦ-ଦାୟକ ହେଲେ ମଧ୍ୟ ଏକୁଟିଆ ଯାତ୍ରା କଲେ ମୁଁ ଅତୌ ପୂର୍ଣ୍ଣପ୍ରାଣରେ ତାକୁ ଉପଭୋଗ କରିପାରେ ନାହିଁ । କଥା କଥାକେ ଧନ, ଜୀବନ ଆଉ ମାନ ସମ୍ମାନ ଉପରେ ଆଞ୍ଚ୍ ଆସିପିବ ବୋଲି ସାବଧାନ ହେଉ ହେଉ ନିଜ ଅଜାଣତରେ ମନର ସାବଲୀଳ ସରସତା ଟିକକ ହଜି ଯାଇଥାଏ । ଅନ୍ୟକୁ ସହଜରେ ବନ୍ଧୁ ଭାବରେ ଗ୍ରହଣ କରି ନେବାର ଜନ୍ମଗତ ସ୍ୱଭାବଟା ଧିରେ ଧିରେ ହାତଛଡ଼ା ହୋଇଯାଏ । ମୁଁ ଭାରି ଏକା ହୋଇଯାଏ ଯାତ୍ରାକାଳରେ ଅଥଚ ମୋର ଗୃହକର୍ତ୍ରୀଟା ଏମିତି ଯେ, ସ୍ତ୍ରୀ ଲୋକ ହେଲେବି ଲମ୍ବା ଗସ୍ତକୁ ଫାର୍କି ଦେଇ ହୁଏନି । ତେଣୁ ଯାତ୍ରା ଏବଂ ଜୀବନ ସଙ୍ଗେ ଅହରହ ଦୁର୍ଭାବନା ମୋ ପଛେ ପଛେ ଗୋଡ଼ାଇଥାଏ ।

ଭାଗ୍ୟବଶତଃ ଏମିତି ଦିନେ ଦିନେ କେହି ଚହ୍ଲା ଲୋକ ମିଳିଗଲେ ଯାତ୍ରା ସରସ ହୁଏ—ଭାରି ନିରାପଦ ଲାଗେ । ଭଦ୍ରଲୋକ ପାନ ବଢ଼ାଇ ଦେଲେ । ମୁଁ ବିଶେଷତଃ ସଙ୍କୁଚିତ ହେଇଉଠିଲି । ଅଚହ୍ଲା ଲୋକଙ୍କଠାରୁ ମୁଁ ପାନ ବି ଖାଏ ନାହିଁ । କଥାରେ ଅଛି "ଅଚହ୍ଲା ସାଧୁଠାରୁ ଚହ୍ଲା ସଇତାନ୍ ବେଶି ବିଶ୍ୱାସ ଯୋଗ୍ୟ ।" ଭଦ୍ରଲୋକ କହିଲେ—"ଆପଣ ତ ସାଧାପାନ ଖାଆନ୍ତି—"

—ଆଚ୍ଛା ଦିଅନ୍ତୁ । ମୁଁ ପାନ ଖଣ୍ଡେ ଖାଇଲି ।

ଭଦ୍ରଲୋକ କମ୍ ତ ଗପୁଡ଼ି ନୁହନ୍ତି ! ନିଜେ ନିଜ କଥା ଗପୁଥାନ୍ତି ଆଉ ମୋ କଥା ବି ପଚାରୁଥାନ୍ତି—"ମିଷ୍ଟର କେମିତି ଅଛନ୍ତି ? ପିଲାଏ ? ଆପଣଙ୍କ ଦେହ ଭଲତ ? ଆଗ ଅପେକ୍ଷା ଫ୍ରେସ୍ ଲାଗୁଛନ୍ତି । ଏତେବର୍ଷ ପରେ ଦେଖା ହେଲା ବୋଲି ଜମାରୁ ଜାଣି ହେଉନି ।"

ମୁଁ ଧାରି ଚୁପି ଉତ୍ତର ଦେଉଥାଏ । ଧିରେ ଧିରେ ନିଜକୁ ସ୍ୱଚ୍ଛନ୍ଦ ଆଉ ସହଜ କରିନେଇ ଆରାମ କରି ସିଟ୍‌ରେ ଆଉଜି ବସିଥାଏ । ବସ ଚାଲିଥାଏ । ଆଖି ପତା ବୁଜି ବୁଜି ଆସୁଥାଏ । ବର୍ତ୍ତମାନ ମୁଁ ନିଶ୍ଚିନ୍ତରେ ସିଟ୍‌କୁ ଆଉଜି ଶୋଇ ଯାଇପାରେ । ଭଦ୍ରଲୋକ ମତେ ଲକ୍ଷ କରି କହିରେ—ଆପଣ ଶୋଇଯାନ୍ତୁ । ମୁଁ ତ ଅଛି । ଚିନ୍ତା କଣ ?

ଏତେବେଳକୁ ଭଦ୍ରଲୋକଙ୍କୁ ମୁଁ ଆଂଶିକ ମନେପକାଇ ପାରୁଥାଏ । ପାଞ୍ଚବର୍ଷ ତଳେ ବୋଧହୁଏ କିଛିଦିନ ଆମ ପଡ଼ିଶା ଘରେ ଭଡ଼ାରେ ରହୁଥିଲେ । ଫୋନ୍

କରିବା ପାଇଁ ଆମ ଘରକୁ କେତେଥର ଆସିଛନ୍ତି । ରିକ୍‌ସା ମିଳୁନଥିଲେ ମତେ ରାସ୍ତା ଉପରେ ରିକସା ଡାକି ଦେଇଛନ୍ତି । ମୋ ପିଲାମାନଙ୍କୁ କେତେଥର ସ୍କୁଲରୁ ନେଇଆସିଛନ୍ତି ସ୍କୁଟର ପଛରେ ବସାଇ । ସ୍ୱାମୀ ଗସ୍ତରେ ଯାଇଛନ୍ତି ଶୁଣିଲେ ଭାଲମନ୍ଦ ବୁଝିପାଇଛନ୍ତି ଘରକୁ ଆସି । କେତେଥର ତାଙ୍କ ଗାଁରୁ ଆସିଥିବା ନଡ଼ିଆ, ଦେଶୀଆଳୁ ଆମ୍ବ ଘରକୁ ପଠାଇଛନ୍ତି । ଠାକୁର ପୂଜିବେ ବୋଲି ଓଷାବ୍ରତ ଦିନେ ତାଙ୍କ ସ୍ତ୍ରୀ ଆମ ବଗିଚାରୁ ଫୁଲ ମାଗିନେଇଛନ୍ତି । ଥରେ ମୋର ଦେହ ଖରାପ ହୋଇଥାଏ । ଭୀଷଣ ଜ୍ୱର । ଦେହରେ ଉତ୍ତାପ ଶହେ ତିନି, ଶହେ ଚାରି । ସ୍ୱାମୀ ଯାଇଥାନ୍ତି ବମ୍ବେ । ଛୁଆ ଦୁଆ ଛୋଟ ଛୋଟ ପିଲାଗୁଡ଼ା କଣ ବା ବୁଝିବେ । ଯାଇକରି ଯାଇ ଭଦ୍ରଲୋକଙ୍କ ଘରେ ଖବରଟା ଦେଇଦେଲି । ସାରା ରାତି ସ୍ୱାମୀ ସ୍ତ୍ରୀ ଜଗି ବସିଛନ୍ତି । ସ୍ୱାମୀ ଔଷଧ ଦେଉଥାନ୍ତି । ସ୍ତ୍ରୀ ବରଫ ବ୍ୟାଗ୍ ମୋ ମୁଣ୍ଡରେ ଦେଇ ବସିଥାନ୍ତି । ଜ୍ୱର କମିଗଲା । ଘରେ ଯାଇ ଦେଖନ୍ତି ରାତିରେ ଜ୍ୱର ଘୋରରେ ପାଣି ଖୋଜିଲି ଘରୁ ସବୁ ବାସନ କୁସନ ନିର୍ମୂଳ କରି ସଫା କରି ଦେଇଛନ୍ତି । କି ଲଜ୍ଜା ମୋର ! କେମିତି ତାଙ୍କୁ ମୁଁ ମୁହଁ ଦେଖାଇବି । ଯେମିତି କି ମୁଁ ସେ ଘଟଣା ସହ ସମ୍ପୃକ୍ତ ।

ତାପରେ ଥରେ ବୁଲିଯାଇଥିଲି କଲିକତା । ତାଙ୍କ ସ୍ତ୍ରୀଙ୍କ ପାଇଁ ଟାଙ୍ଗାଇଲ ଶାଢ଼ୀ ଖଣ୍ଡେ, ଭ୍ୟାନିଟି ବ୍ୟାଗଟାଏ ନେଇ ଆସିଲି । ଭାବ ଦୋସ୍ତି ଏମିତି ଟିକେ ବଢ଼ିଯାଇଥିଲା । ସେଇ ଜ୍ୱର ଘଟଣା ପରେ ଯେତେଥର ଆମେ କୁଆଡ଼େ ବୁଲି ଯାଇଛୁ ସେ ଆମ ଘର ଜଗନ୍ତି ଆଉ ସେ ଯେତେଥର ବୁଲି ଯାନ୍ତି ଆମେ ତାଙ୍କ ଘର ଜଗୁ । ସେ ବଦଳି ହୋଇ ଗଲାବେଳେ ତାଙ୍କ ସ୍ତ୍ରୀ ତ କାନ୍ଦି ପକାଇଲେ । କହିଲେ— ଏତେ ଭଲ ପଡ଼ୋଶୀ ଆଗରୁ କେବେ ପାଇନଥିଲି । ଭଦ୍ରଲୋକ ଚିଡ଼ିଯାଇ କହିଲେ—"ସେମାନେ କଣ ଆମର ପଡ଼ୋଶୀ ଥିଲେ ? ସେମାନେ ତ ଆମର ଘର ଲୋକ ଥିଲେ । ଆଜିଯାଏ ତମେ ତାଙ୍କୁ ପଡ଼ୋଶୀ ଭାବିଛ ?

ଏମିତି ଏ ଜୀବନ—ଯାହା ନିଜର ନୁହେଁ, ତାକୁଇ ନିଜର ଭାବି ଗୋଟାଏ ମାୟାରେ ଗୋଟାଏ ନିଶାରେ ଆମେ ଖୁବ ଗୁଡ଼ାଏ ଦିନ ବଞ୍ଚିଯାଉ । ମୋର କିଛି ନୁହେଁ—ମୋର କେହି ନାହିଁ—ମୁଁ ମିଛ—ମୋ ଚାରିପାଖେ ସମସ୍ତେ ମିଛ ଭାବିଲେ ମଣିଷ ମୁହୂର୍ତ୍ତେ ବି ବଞ୍ଚି ପାରନ୍ତା ନାହିଁ । ଆଜିର ଚାକିରି ସର୍ବସ୍ୱ ଯାଯାବର ଜୀବନରେ ଆମ ଚାରିପାଖେ ସମସ୍ତେ ଭିନ୍ନ ଜାତିର, ଭିନ୍ନ ଧର୍ମର, ଭିନ୍ନ ଇଲାକାର ମଣିଷ । ଅଥଚ ଆମେ ସେଇମାନଙ୍କୁ ନେଇ ବଂଚୁ—କିଏ ଦାଦା, କିଏ ମଉସା, କିଏ ବନ୍ଧୁ କିଏ ଭାଇ ମନେକରି ଆମେ ନିଜକୁ ସମସ୍ତଙ୍କ ଭିତରେ ନିରାପଦ ମନେକରୁ । ସମସ୍ତଙ୍କୁ ପର ଭାବିଲେ ମଣିଷ ବିପନ୍ନ ହୋଇଯାଏ— ପାଦେ ଆଗେଇ ପାରେ ନାହିଁ ।

ଭଦ୍ରଲୋକଙ୍କ ଉପରେ ଭରସା ରଖାଯାଇପାରେ । ତଥାପି ଭଦ୍ରତା ରକ୍ଷା କରି ମୁଁ କହିଲି—ଆପଣ ତ ଆଉ ସାରାରାତ ଗୁହିଁ ବସିବେନି । ଆପଣ ବରଂ ଟିକେ ଶୋଇଯାନ୍ତୁ ! ମୁଁ ଆମ ଦୁହିଁଙ୍କ ଜିନଷ ଜଗୁଛି । ସେ କହିଲେ—ଠିକ ଅଛି । ପାଳିକରି ଶୋଇବା ଆଉ ଦୁହେଁ ଦୁହିଁଙ୍କ ଜିନଷ ଜଗିବା ।

ମୁଁ ରାଜି ହେଲି । ଭଦ୍ରଲୋକ କହିଲେ—ଆଗ ଷ୍ଟେସନରେ ରାତି ଭୋଜନ କରିନେବା । ସେଠାପରେ ଆଉ ଖାଇବାକୁ ମିଳିବନି । ମୁଁ ଅକସ୍ମାତ କହି ପକାଇଲି—"ନାଁ । ବାବା; ଏକା ଗସ୍ତ କଲେ ମୁଁ କୋଉଠି ଓହ୍ଲାଏନି । ବ୍ୟାଗରେ ବିସ୍କିଟ ଅଛି । ଆପେଲ ଅଛି । ଆପଣ ଖାଇଲେ ବି ବଳିବ । ଭାଗ କରି ଖାଇବା ।" ସେ ହସିଦେଇ କହିଲେ—"ମୁଁ କ'ଣ ସ୍ତ୍ରୀ ଲୋକ ହେଇଛି ? ତା ଛଡ଼ା ଆପଣ କ'ଣ ଏକା ଯାଉଛନ୍ତି ? ମୁଁ ତ ସାଙ୍ଗରେ ଅଛି । ଆଗରେ ଯେଉଁ ଢାବା ଦେଖୁଛନ୍ତି ଚମତ୍କାର ଚିକେନ ଆଉ ନାନ କରେ । ଖାଇ ଦେଖନ୍ତୁ ଥରେ—ଜୀବନ ସାରା ଝୁରୁଥିବେ ।"

ସେ ବାଧ୍ୟକରି ମତେ ଓହ୍ଲାଇ ନେଲେ । ସାମ୍ନା ସାମ୍ନି ବସି ଦୁହେଁ ଖାଇଲୁ । ସେ ପଇସା ଦେଉ ଦେଉ ମୁଁ କାଉଣ୍ଟରରେ ଟଙ୍କା ଦେଇଦେଲି । ସେ ଅଭିମାନଭରା ସ୍ୱରରେ କହିଲେ—"ଆପଣଙ୍କର ସେଇ ଅଭ୍ୟାସ ରହିଛି ।" ମୁଁ ହସିଦେଇ କହିଲି—"ଆପଣ ମୋର ସାନଭାଇ ଭଳି । ତେଣୁ ପଇସାଟା ମୋର ଦବା ଉଚିତ ।"

ସେ ହସିଲେ ଆଉ କହିଲେ—ଅବଶ୍ୟ ବୟସରେ ନ ହେଉ ପଛକେ, ପୋଜିସନରେ, ସମ୍ମାନରେ, ଆପଣ ମୋ ଠାରୁ ଉପରେ । କିନ୍ତୁ ସାନମାନଙ୍କ ମନରେ ତ ଶ୍ରଦ୍ଧା ବୋଲି କିଛି ଅଛି ?

"ହଉ—କୋଲ୍ଡ଼ ଡ୍ରିଙ୍କ୍ସ ଗୋଟାଏ ପିଅନ୍ତୁ ।" ମୁଁ କହିଲି ।

ଦୁହେଁ କୋଲ୍ଡ଼ ଡ୍ରିଙ୍କ୍ସ ପିଇସାରି ବସରେ ଉଠିଲୁ । ପେଟ ଭରି ହେଇଥିଲା । ମନବି ବେଶ ନିଦକ ହେଇଯାଇଥାଏ । ବସ ଗଡ଼ିଲା ମାତ୍ରେ ଆଖିପତା ଖୋଲି ରହିବାକୁ ନାରାଜ । ଅଳସ କଣ୍ଠରେ ମୁଁ କହିଲି—ଆପଣ ଆସୁଛନ୍ତି ବୋଲି ଜାଣିଥିଲେ ମିଷ୍ଟର ନନ୍ଦକରେ ରହିଥାନ୍ତେ । ଆଜି ରାତିରେ ତାଙ୍କୁ ଭଲ ନିଦ ହେଇ ନ ଥିବ । ଆଜିକାଲି ବସ କହ ଟ୍ରେନ କହ କୌଣସି ଯାତ୍ରା ନିରାପଦ ନୁହେଁ ।"

ଭଦ୍ରଲୋକ ପ୍ରତ୍ୟୟ ଭରା ସ୍ୱରରେ କହିଲେ—ସେ ପଛକେ ଅନିଦ୍ରା ହୁଅନ୍ତୁ ଆପଣ ଏଥର କିଛି ସମୟ ଶୋଇଯାନ୍ତୁ । ମୁଁ ଜଗିଛି ।

ବସ୍‌ରେ ଯାତ୍ରୀମାନେ ଢୋଲେଇବାକୁ ଲାଗିଲେଣି । ମୁଁ ଶୋଇବ ବୋଲି ଆଖି ବୁଜିଲି । ମାତ୍ର ତେବେ ବି ମନ ସମ୍ପୂର୍ଣ୍ଣ ନିଦ୍ରକ ନୁହେଁ ବୋଲି ବୁଝି ପାରିଲି । ଭଦ୍ରଲୋକ ଯେ ଆମର ପଡ଼ୋଶୀ ଥିଲେ ସେ କଥା ତେବେ ବି ନିର୍ଧାର୍ଯ୍ୟ ହୋଇପାରି ନ ଥାଏ । ତାଙ୍କର ଭଲ ଲାଗୁଥାଏ ତାଙ୍କ ଚେହେରା, ଆଉ କଥାବାର୍ତ୍ତା । ତାଙ୍କ ସାଇ ବି ହୋଇପାରନ୍ତି । କଥାଟା ମୋ ଠାରୁ ପଚାରି ହେଉ ନ ଥାଏ ଏତେ ବାଟ ଆଳାପ କରି କରି ଆସିବା ପରେ ।

ଶେଷକୁ ଦେଖିଲି ମୁଁ ଜଗି ବସିଛି । ଭଦ୍ରଲୋକ ଢୋଲେଇବାକୁ ଆରମ୍ଭ କଲେଣି ଏବଂ ଅବଶେଷରେ ସେ ସିଟ୍‌କୁ ଆଉଜି କେଶ୍ ଶବ୍ଦ କରି ଘୁଙ୍ଗୁଡ଼ି ମାରୁଛନ୍ତି । ବସର ଗତି ସଙ୍ଗେ ତାଳ ରଖି ସେ ନିଦରେ ଝୁଲୁଛନ୍ତି ଓ ବେଳେବେଳେ ମୋ ମୁଣ୍ଡରେ ତାଙ୍କ ମୁଣ୍ଡ ଠୋକର ଖାଉଛି । ମୋ କାନ୍ଧ ଉପରେ ସେ ଭରା ଦେଇ ନିଦରେ ଝୁଙ୍କି ପଡ଼ୁଛନ୍ତି । କେହି ଅଚିହ୍ନା ଲୋକ ହୋଇଥିଲେ ମୁଁ ଯେମିତ ଯୁଦ୍ଧ ଘୋଷଣା କରି ପାରନ୍ତିଣି । ଲୋକଟାର ମତଲବ୍ ଯେ ଭଲ ନୁହେଁ ଏବଂ ଲୋକଟା ଜାଣି ଜାଣି ମୋ ଉପରକୁ ଝୁଙ୍କି ପଡ଼ୁଛି ବୋଲି ସ୍ଥିର ସିଦ୍ଧାନ୍ତରେ ପହଞ୍ଚି ପାରନ୍ତିଣି । ମାତ୍ର ଭଦ୍ରଲୋକ ଯେହେତୁ ମୋର ଚିହ୍ନା ପୁଣି ସେ ମତେ ଏତେ ଭଲ କରି ମନେ ରଖିଛନ୍ତି ଓ ମୁଁ ତାଙ୍କୁ ଭୁଲିଯାଇଛି ଏଇ ଆତ୍ମଗ୍ଲାନି ଯୋଗୁଁ ଭଦ୍ରଲୋକଙ୍କ ପ୍ରତି ମୋର ଅବିଶ୍ୱାସୀ ମନ ଅଧିକ ବିଚାରଶୀଳ ଆଉ ଉଦାର ହୋଇ ଉଠିଛି । ମୁଁ ଚୁପ୍‌ଚାପ୍ ବସି ରହିଥାଏ ଓ ମଝିରେ ମଝିରେ ଭଦ୍ରଲୋକଙ୍କ ସାବଧାନ କରିବା ଛଳରେ ସତର୍କ କରାଇ ଦେଇ କହୁଥାଏ—ହୁସିଆର ହୋଇ ବସନ୍ତୁ ଆଜ୍ଞା ବସ୍‌ଟା ଘାଟ ରାସ୍ତାରେ ଚାଲିଛି । ମୁଣ୍ଡ ପିଟି ହୋଇଗଲେ କି ସିଟ୍‌ରୁ ଖସିଗଲେ ବିପଦ ।

ଭଦ୍ରଲୋକ ତାଙ୍କର ମଫଲର୍, ଆଉଟା ସବୁ ମୋ କାନ୍ଧରେ ଗୁଡ଼ି ଦେଇ ଶୋଇଲେ କିଛି ସମୟ । ହଠାତ୍ ଗୋଟାଏ ଝାଙ୍କରେ ସେ ଆଖି ମେଲି କହିଲେ— ଆରେ ମୁଁ ଶୋଇଛି, ଆପଣ ଜଗି ବସିଛନ୍ତି, କି ଅନ୍ୟାୟ କଥା କହନ୍ତୁ ତ । ଏତେ ଝାଇଦେଲି ଯେ ତାପରେ ଆଉ ନଶୋଇ ରହି ନଥିଲି । ସେଥିପାଇଁ ଏକା ଯିବା ଆସିବା କଲେ ମୁଁ କମ୍ ଖାଏ । ଆପଣ ସଙ୍ଗରେ ଥିଲେ ବୋଲି ମୁଁ ଘର ଭଳି ଆଜଣ୍ଣୁ ଗାପ୍ ମାରି ଦେଇଛି । ମୁଁ ହାଇ ମାରୁ ମାରୁ ହସିଲି—ସେ କହିଲେ—ଏଥର ଆପଣ ଶୁଅନ୍ତୁ । ମୁଁ ନିଦ ଛଡ଼ାଏ— । ସେ ଫ୍ଲାସ୍କରୁ ଚା' ଢାଳି ପିଇଲେ । ମୁଁ ତାଙ୍କ ହାତକୁ ତାଙ୍କ ମଫଲର୍‌ଟା ବଢ଼ାଇ ଦେଇ କହିଲି—ବେଶ୍ ମୁଁ ଏଥର ଶୋଇଲି ।

ମୁହଁ ଉପରେ ଲୁଗାଟା ଘୋଡ଼େଇ ସିଟ୍‌କୁ ଆଉଜି ମୁଁ ଶୋଇଗଲି ଘୋର୍

ପର୍ଯ୍ୟନ୍ତ । ନିଦ ଭାଙ୍ଗିଲା ବେଳକୁ ଦେଖେ—ମୋ ସମ୍ପର୍କଶୂନ୍ୟଟାକୁ କାନ୍ଧରେ ଟେକେଇ ସେ ଦୁଇ ଗ୍ଲାସ୍ ଚା’ ଧରି ବସ ଉପରକୁ ଉଠୁଛନ୍ତି । ବସ ଛାଡ଼ିବା ହେଉଛି ଗୋଟାଏ ଗ୍ରେଟିଆ ଷ୍ଟପେଜରେ ।

ସେ ମୋ ହାତକୁ ଚା ବଢ଼ାଇ ଦେଲେ ଓ ମୋ ଭ୍ୟାନିଟି ବ୍ୟାଗ୍‌ଟା ବି ବଢ଼ାଇ ଦେଇ କହିଲେ—ଧରନ୍ତୁ ଆପଣଙ୍କ ଅମାନତ । କେତେ ଟଙ୍କା ଧରି ଯା’ ଆସିକରୁଛନ୍ତି ? ଭାରି ଓଜନିଆ ହେଉଛି ତ—

ମୁଁ ହସି ଦେଇ କହିଲି—ସ୍ତ୍ରୀ ଲୋକମାନଙ୍କ ମନିବ୍ୟାଗ ପଇସା ଯୋଗୁଁ ଭାରି ହୁଏନି—ଘର ଚାବି, ପ୍ରସାଧନ ସାମଗ୍ରୀ, ରୁମାଲ, ଆଉ ଅଦରକାରୀ କେତେଟା ଜିନିଷରେ । ସ୍ତ୍ରୀ ଲୋକଗୁଡ଼ା ଅବୁଝା ପଣଯୋଗୁଁ ଜୀବନରେ ଗୁଡ଼ାଏ ଭାର ବୁହନ୍ତି ନାହିଁକି ? ଯାହା ଦରକାର ସେଥିପାଇଁ ବ୍ୟସ୍ତ, ଯାହା ଦରକାର ନାହିଁ ସେଥିପାଇଁ ମଧ୍ୟ କମ ବ୍ୟସ୍ତ ନୁହନ୍ତି । ତାଙ୍କ ଜୀବନଟା ଠିକ୍ ଏଇ ମୋଟାଣି ମୁଣି ଭଳି ଅଯଥାରେ ଜଞ୍ଜାଳମୟ, ଆଉ ଓଜନିଆ—

ସେ ହସି ଦେଇ କହିଲେ—“ଆପଣ କଥା କହୁଛନ୍ତି ଯେମିତି ଆପଣ ଜଣେ ସ୍ତ୍ରୀଲୋକ ନୁହନ୍ତି—”

“ସେଥିପାଇଁ ତ ଠିକ୍ କଥାଟା କହୁଛି । ଆପଣ ପୁରୁଷ ଲୋକ ବୋଲି ସିନା ଥିଲେ ମୋ ମୋଟାଣି ମୁଣି ପଇସାରେ ଭାରି ଲାଗୁଛି— ।” ମୁଁ ହସିଲି । ଭ୍ୟାନିଟ୍ ବ୍ୟାଗ୍ ଖୋଲି ପାନିଆ କାଢ଼ି ଅଳିଆ ବାଳଗୁଡ଼ା ଯାକିକାଭଳି ସଜାଡ଼ି ଦେଲି । ରୁମାଲ କାଢ଼ି ମୁହଁ ପୋଛିଲି । ଗ୍ରେଟ ଆଇନାରେ ଟିପାଟା ଠିକ୍ ଅଛି କି ଝାଳରେ ଲିଭିଯାଇଛି ଦେଖି ନେଲି । ତାପରେ ହସି ଦେଇ ଭଦ୍ରଲୋକଙ୍କୁ କହିଲି—ଆପଣଙ୍କର ତେଲ ସାବୁନ, ପାଉଡ଼ର, ଦାନ୍ତଘଷା ପେଷ୍ଟ, ଯାହା ଦରକାର ନିର୍ଦ୍ଦ୍ୱନ୍ଦ୍ୱରେ ମତେ ମାଗନ୍ତୁ । ଏପରି କି ଏଇ ଭାନୁମତୀ ପେଡ଼ି ଭିତରୁ ଚକୋଲେଟିଆ ବି ମିଳିଯିବ । ଭଦ୍ରଲୋକ ପ୍ରାଣଖୋଲା ହସହସି କହିଲେ—ସତରେ ମୁଁ ଭାବେ ସ୍ତ୍ରୀ ଲୋକଗୁଡ଼ା ଏତେ ଗୁଡ଼ାଏ ପଇସା ଧରି କାହିଁକି ସବୁବେଳେ ବୁଲନ୍ତି ଆଉ ବିପଦ ମୁଣ୍ଡାନ୍ତି ! ଦୁହେଁ ହସିଲୁ ।

ବସ ଯାଉ ଯାଉ ଆସୁଛି । ଯା’ ହେଉ ଏତେ ବଡ଼ କ୍ଳାନ୍ତିକର ଯାତ୍ରାଟା ଭଦ୍ରଲୋକଙ୍କ ମେଲାପି ସ୍ୱଭାବ ଓ କୌତୁକ ଆମୋଦରେ ବେଶ ଉପଭୋଗ୍ୟ ହେଲା । ଏତେ ଲମ୍ବା ରାସ୍ତା ମୋ କେମିତି ଗଡ଼ିଗଲା ଜାଣି ହେଲାନି । ସେଥିପାଇଁ ଭଦ୍ରଲୋକଙ୍କୁ ଧନ୍ୟବାଦ ନ ଜଣାଇବା ନିତାନ୍ତ ଅଭଦ୍ରାମି ହେବ । କିନ୍ତୁ କି ମୁସ୍କିଲ—ତେବେ ବି ଭଦ୍ରଲୋକଙ୍କୁ ଠିକ୍ ମନେ ପକାଇ ପାରୁନି । ସେହି କାରଣରୁ ମନ ଭିତରଟା

ଟୋକେଇ ଘାଣ୍ଟି ହେଉଛନ୍ତି । ନିଜର ସ୍ମୃତି ବିଭ୍ରାଟ ଯୋଗୁଁ ନିଜ ଉପରେ ମୁଁ ଖୁବ୍ ରାଗୁଛି ।

ଭଦ୍ରଲୋକ ମଧ୍ୟ ହଠାତ୍ କେମିତି ଗମ୍ଭୀର ହୋଇଯାଇଛନ୍ତି । ବସ୍ ଚାଲିଲା ଭଦ୍ରଲୋକ ମୋ ଜିନିଷପତ୍ର ଉଠାଇଦେଲେ । ମୋ ପାଇଁ ରିକ୍ସା ଡାକି ଦେଲେ । ତାପରେ କିଛି ସମୟ ଚୁପ୍ ଚାପ୍ ଠିଆ ହେଲୁ ଦୁହେଁ । ରିକ୍ସାରେ ଜିନିଷ ଲଦା ହୋଇଥାଏ । ରିକ୍ସାବାଲା ମତେ ଅପେକ୍ଷା କରିଥାଏ ।

ମୁଁ କହିଲି—"ଯା' ହେଉ, ଅନେକ ଦିନ ପରେ ଆପଣଙ୍କ ସଙ୍ଗେ ଦେଖା ହେଲା । ଘରେ ସମସ୍ତଙ୍କୁ ବହୁତ ବହୁତ କହିବେ ।"

ଭଦ୍ରଲୋକ ଉଦାସ ହୋଇଯାଇ କହିଲେ—"ଘରେ ମୋର ଆଉ କିଏ ଅଛି ?" —ମାନେ ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି ।

ଭଦ୍ରଲୋକ ଥଙ୍ଗ ଥଙ୍ଗ ହୋଇ କହିଲେ—"କିଛି ମନେ କରିବେନି, ମୋର ବିଶ୍ୱାସ । ଆପଣ ଏଯାଏ ମତେ ଠିକ୍ ଚିହ୍ନି ପାରି ନାହାନ୍ତି ବୋଧହୁଏ—" ମୋର ହସିଲା ମୁହଁଟା ପାଣିଚିଆ ହୋଇଗଲା । ପରୀକ୍ଷା ହଲ୍‌ରେ ହାତେ ହାତେ କପି ଧରା ପଡ଼ିଗଲେ ଫାଙ୍କିବାର ଚାରା କାହିଁ ?

ମୁଁ କହିଲି "ସତକଥା ଆଜ୍ଞା—ମୋର ଏବେ ଏତେଦୂର ବିସ୍ମରଣ ହେଉଛି ଯେ ମୁଁ ଭାବୁଛି ଏଥିପାଇଁ ଚିକିତ୍ସା ଦରକାର—" ମୁଁ ଲଜ୍ଜାରେ ତାଙ୍କୁ ଚାହିଁଥାଏ । ଭଦ୍ରଲୋକ ନିଜେ ମଧ୍ୟ ଲଜ୍ଜିତ ହେଲାଭଳି କହିଲେ, "ଭୁଲ୍ ଆପଣଙ୍କର ନୁହେଁ ଆଜ୍ଞା, ସମସ୍ତଙ୍କର—ମୁଣ୍ଡରେ ବାର ପ୍ରକାର ଚିନ୍ତା ତ—ମୋ ଅବସ୍ଥା ଆଜ୍ଞା ଆହୁରି ଶୋଚନୀୟ । କ୍ଷମା କରିବେ । ଆପଣ ଡାକ୍ତର ସୁନନ୍ଦା ଦେବୀ ତ ? ଦେଖିଲା ବେଳଠୁ ସେଇଆ ଭାବି ମୁଁ ଏତେବାଟ କଥା କହି ଆସିଛି ।" ଭଦ୍ରଲୋକ ସତ୍ୟପାଠ କଲେ ।

ମୁଁ ଅବାକ୍ ହୋଇଗଲି । ଡାକ୍ତର ସୁନନ୍ଦା କିଏ ? ତାର ଅର୍ଥ ଭଦ୍ରଲୋକ ମଧ୍ୟ ମତେ ଠିକ୍ ମନେ ପକାଇ ପାରି ନାହାନ୍ତି । ମୁଁ କହିଲି—ନାଇଁ ଆଜ୍ଞା ମୁଁ ମିସେସ୍ ଜାହ୍ନବୀ ଲେଙ୍କା । ପୁରୀ ହେଡ୍‌ବୋହେସ୍ ସାହିରେ ଘର—ଆପଣ ଆମର ପଡ଼ୋଶୀ ହୋଇ କିଛିଦିନ ରହୁଥିଲେ ନା—" ଭଦ୍ରଲୋକ ହାତଯୋଡ଼ି କହିଲେ—"ପାପୀ ଲୋକ ଆଜ୍ଞା । ଜଗନ୍ନାଥ ପୀଠରେ ରହିବାର ସୁଯୋଗ ହୋଇନି ଏଯାଏ । ଅବଶ୍ୟ ବୁଲି ଯାଇଛି ଅନେକ ଥର । ଭୁଲ ହୋଇ ଯାଇଛି ଆଜ୍ଞା ଆପଣ ମୋର ସମ୍ପୂର୍ଣ୍ଣ ଅପରିଚିତା । ମୁଁ ବିନୟ ମିଶ୍ର—" ବିନୟ ମିଶ୍ର ପୁଣି କିଏ ? ଏ ଭଦ୍ରଲୋକ ତେବେ ମୋର ସମ୍ପୂର୍ଣ୍ଣ ଅଚିହ୍ନା । ଅଥଚ ଚିହ୍ନା ହୋଇଥିବେ ଭାବି ମୁଁ ଆରାମରେ ଯାତ୍ରା ଶେଷ କରି ଦେଇଛି ..!

ମୋ ମୁହଁର ଅସନ୍ତୋଷ ଭାବକୁ ଧରି ନେଇ ଭଦ୍ରଲୋକ କହିଲେ—"ଯା' ହେଉ ଚାହାଁ ଲୋକ ଭାବ ଆପଣ ବେଶ ଆରାମରେ ଯାତ୍ରା କରି ପାରିଲେ । ନ ହେଲେ ମୋର ଯାହା ଚେହେରା ଅଚାହାଁ ଲୋକେ ପ୍ରଥମ ଦେଖାରେ ମତେ ଗୁଣ୍ଡା ବଦମାସ ଛଡ଼ା ଅନ୍ୟ କିଛି ଭାବି ପାରନ୍ତି ନାହିଁ । ଆପଣ ସେଇଆ ଭାବିଥିଲେ ଖୁବ୍ କଷ୍ଟ ପାଇଥାନ୍ତେ ବାଟ ସାରା ।" ସେ ହସିଲେ ।

ବର୍ତ୍ତମାନ ସତକୁ ସତ ଭଦ୍ରଲୋକଙ୍କ ଚେହେରା ମୋ ଆଖିକୁ ଗୁଣ୍ଡା ବଦମାସ ଭଳି ଦିଶୁଥିଲା । ଭଦ୍ରଲୋକ ପକେଟରୁ ଗ୍ରେଟ ଡାଏରିଟିଏ ଓ ଡଟ୍‌ପେନ ବାହାର କରି ମୋ ହାତକୁ ବଢ଼େଇ ଦେଲେ । ଅନୁରୋଧ କଲେ—"ଏବେତ ଆପଣ ଆଉ ମୋର ଅଚାହାଁ ନୁହଁନ୍ତି । ମୋର ବଡ଼ ଭଉଣୀ ହେଇଯାଇଛନ୍ତି ଆପେ ଆପେ । ଆପଣଙ୍କ ଠିକଣାଟା ଲେଖି ଦିଅନ୍ତୁ ଆଜ୍ଞା । କେବେ ପୁରୀ ଗଲେ ନିଶ୍ଚୟ ଆସିବି । ଆଉ ଭିଣୋଇ ସାହେବଙ୍କ ସଙ୍ଗେ ବି ଭଲପରେ ପତ୍ର ପରିଚୟ କରେଇ ଦେବି—ସେ ଠୋ ଠୋ ହସିଲେ ।

ଠିକଣାଟା ଠିକ୍ ଲେଖିବି କି ନାଁ ଭାବୁ ଭାବୁ ଲେଖି ଦେଲି ଏବଂ କହିଲି—ଆପଣଙ୍କ ଠିକଣା ?

ଭଦ୍ରଲୋକ ବେପରୁଆ ଭାବେ କହିଲେ—"କହିବୁତ ବର୍ଷକୁ ଅନ୍ତତଃ ଥରେ ବଦଳିଯାଏ ମୋର । ମୋ ଠିକଣା ନେଇ ଲାଭ କଣ ? ଆପଣ ଏବେ ମତେ କୋଉ ଚିଠି ଲେଖିବେ—ଆଜିକାଲି ନିଜ ଆତ୍ମୀୟଙ୍କ ପାଖକୁ ଦିଧାଡ଼ି ଚିଠି ଲେଖିବାକୁ ବି ଫୁରସତ ନାହିଁ । ଆଚ୍ଛା ନମସ୍କାର । ଭଗବାନ କଲେ ପୁଣି ଦେଖା ହେବ । ଗଲିଲି—କିଛି ମନେ କରିବେନି— ।"

ଭଦ୍ରଲୋକ ହାତ ହଲେଇ ହଲେଇ ଚାଲିଗଲେ ଆଉ ଗୋଟାଏ ପ୍ଲାଟଫର୍ମରେ । ବାଟ ସାରା ତାଙ୍କର ଆତ୍ମୀୟତାଭରା ହସିଲା ମୁହଁଟା ଦିଶିଯାଉଥାଏ ।

ଅନେକ ବର୍ଷ ଏ ଭିତରେ ଗଲିଗଲାଣି । ଭଦ୍ରଲୋକଙ୍କ ସହ ଆଉ ଦେଖା ହେଇନି । ତେବେ ପ୍ରତି ବର୍ଷ ଅଚାହାଁ ଦସ୍ତଖତ ଥାଇ ନୂଆ ବର୍ଷର ଶୁଭେଚ୍ଛା କାର୍ଡ ଖଣ୍ଡେ ମୋ ଠିକଣାରେ ପହଞ୍ଚେ—ଆସିଥିବା ସ୍ଥାନର ମୋହରଟା ସବୁବେଳେ ଅସ୍ପଷ୍ଟ । ଅନୁମାନ କରେ କାର୍ଡଟା ବନମାଳି ମିଶ୍ର ନାମଧାରୀ ସେଇ ଭଦ୍ରଲୋକ ପଠାଇ ଥିବେ । କାରଣ ସେଇ ପଢ଼ି ନ ହେଉଥିବା ନାମାଙ୍କନର ମୂଳ ଅକ୍ଷରଟା 'ବ' ହେଉଥିବ ବୋଲି ମୋର ଅନ୍ଦାଜ ।

—*—



# ଜୀବନ ଯାପନ

## ଜ୍ୟୋତ୍ସ୍ନା ରାଉତରାୟ

ଜୀବନର ରାସ୍ତା ବୋଲି କଣ କିଛି ଅଛି ! ମାଳତୀ ବିଶ୍ୱାସ କରି ପାରେନା । ଯଦି ଜୀବନର କିଛି ରାସ୍ତା ଥାଏ ତେବେ ତାହା ସହଜ ସୁଗମ ନୁହେଁ, ଅଙ୍କାବଙ୍କା, ଉଚ୍ଚା ନିଚା, ଦୁର୍ଗମ । ସେ ରାସ୍ତାର ଧାରରେ ବସନ୍ତର ଫୁଲ ଖୁବ୍ କମ୍ ଫୁଟେ । ବେଶୀ ଲାଗେ ଧୂ ଧୂ ଖରା । ଅବିରାମ ସେ ଗ୍ରୀଷ୍ମର ତାପ, ଶେଷ ହୁଏନା ।

କିନ୍ତୁ ଏଇ ଆଶ୍ରମ ପାଖ ଦେଇ ଯେଉଁ ଲମ୍ବା ରାସ୍ତାଟା ନଈକୂଳ ପର୍ଯ୍ୟନ୍ତ ଲମ୍ବି ଯାଇଛି, ସେ ରାସ୍ତାକୁ ଦେଖିଲେ ମାଳତୀର କେବଳ ହିଁ ଜୀବନର ରାସ୍ତା କଥା ମନେପଡ଼େ । ସହର ପରି ଏ ରାସ୍ତା ଭିଡ଼ାଭିଡ଼ ଭାବେ ଲୋକାରଣ୍ୟ ହୁଏନାହିଁ । ଏଠି ଦ୍ରୁତ ମୁହୂର୍ତ୍ତରେ ଆଗେଇ ଯିବାର ପ୍ରତିଯୋଗିତା ନାହିଁ । ଏ ରାସ୍ତାରେ ଭିଡ଼ ହୁଏ କେବଳ ସକାଳେ । ଲଙ୍ଗଳ ନେଇ ଯାଉଥିବା ଚାଷୀ, ବଳଦ ଗାଡ଼ିର ଅଦ୍ଭୁତ ଶବ୍ଦ, ଏଇ ଆଶ୍ରମକୁ ପାଠ ପଢ଼ି ଆସୁଥିବା ଶ୍ରେଷ୍ଠ ଆଦିବାସୀ ପିଲାମାନଙ୍କର କଳକାକଳୀରେ ଭରିଯାଏ ଏହି ଚଉପାଖର ପୃଥିବୀ । ରାସ୍ତାର ଦୁଇ ପାଖେ ଧାଡ଼ିବାନ୍ଧି ବଡ ବଡ଼ ବର ଅଶ୍ୱତ୍ଥ ଗଛ । ସେତେବେଳେ ମାଳତୀର ଜୀବନର ରାସ୍ତା କଥା ମନେପଡ଼େ । ବିଜ୍ଞାନ ଯେତେ ଉନ୍ନତ କଲେ ମଧ୍ୟ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳକୁ ଏକାକାର କରିଦେବାକୁ ଚାହିଁଲେ ମଧ୍ୟ, ବୋଧହୁଏ ଏଇ ନୈସର୍ଗିକ ପୃଥିବୀ ହିଁ ଚିରନ୍ତନ ।

ଏ ପଥରେ ସକାଳ ହୁଏ, ମଧ୍ୟାହ୍ନ ହୁଏ, ଅପରାହ୍ନ ହୁଏ, ସନ୍ଧ୍ୟା ହୁଏ । ସନ୍ଧ୍ୟାର ଘନ ଅନ୍ଧାର ରାତିରେ ରୂପାନ୍ତରିତ ହୋଇଯାଏ । ଅପେକ୍ଷା କରେ ପୁଣି ସକାଳକୁ । କିନ୍ତୁ……ମାଳତୀର ଜୀବନ ପଥ କେବଳ ହିଁ ଅନ୍ଧାର । ରାତି, ଦିନ ମିଳେନା । ସକାଳର ଆକାଂକ୍ଷା ନାହିଁ, ଆଶାହୀନ ।

ଏ ଆଶ୍ରମରେ ଦୀର୍ଘ ଦୁଇ ବର୍ଷ ବିତିଗଲାଣି ମାଳତୀର । ଜୀବନର ଆଉ କେତେ ବର୍ଷ, ତାହା ମାଳତୀ କେବେ ହିସାବ କରିବାକୁ ଚାହେଁନା । ତିରିଶ ବର୍ଷର ମାଳତୀ ମାତ୍ର ଦୁଇ ବର୍ଷ ଅତିକ୍ରମ କରିଛି । ଆଶ୍ରମର ପରିଚାଳକ ଫାଦର ବର୍ଣ୍ଡ୍ ମହାନ୍ତି

କହନ୍ତି, "ମା, ଜୀବନରେ ସତ୍‌ ଭାବେ ବଞ୍ଚିବା ହେଉଛି ବଡ଼ କଥା । ଆଉ ସବୁକିଛି ଉପଲକ୍ଷ । ଏମିତି ଭାବରେ ଜୀବନକୁ ସଙ୍କୁଚିତ କରିଦିଅ ନାହିଁ । ପ୍ରଭୁ ଯୀଶୁ କାହାକୁ ଦୁଃଖ ଦିଅନ୍ତିନାହିଁ ।"

କିନ୍ତୁ ମାଳତୀର ଆଜି କେଉଁ ଠାକୁରଙ୍କୁ ବିଶ୍ୱାସ କରିବା ପାଇଁ ଇଚ୍ଛା ନାହିଁ । ତା ଆଖି ସାମ୍ନାରେ କେବଳ ଅନ୍ଧାରର ପ୍ରତିବିମ୍ବ । ଅବସନ୍ନ ଦେହ, ଅବସାଦଗ୍ରସ୍ତ ମନକୁ ବୋହିନେଇ ସେ ଏଇ ଅନ୍ଧକାରଗ୍ରସ୍ତ ଅଙ୍କାବଙ୍କା ରାସ୍ତାରେ ଚାଲେ ମାତ୍ର । କେବେ ପୁଣି ଜ୍ୱରର ଧାସରେ ଜଳି ପୋଡ଼ି ଯାଏ ମନ ଦେହ । ଆଉ ସେ କେବଳ ଭାବେ ଜୀବନର ଶାନ୍ତ୍ୱିତ୍ୱ ଯଦି ଖୁବ୍ ଶୀଘ୍ର ଶେଷ ହୋଇଯାଏ ତେବେ କ୍ଷତି କଣ ଜୀବନର ମୂଲ୍ୟ କିଛି ନାହିଁ । ବଞ୍ଚିବାରେ କୌଣସି ସୁଖ ନାହିଁ ।

ଧ୍ୱଂସ ସ୍ତୁପ ଖୋଳି ସ୍ମୃତିର ମହେଞ୍ଜୋଦାରୋ ଆବିଷ୍କାର କରିବାକୁ ପଡ଼େନା ମାଳତୀକୁ । ମାତ୍ର ଦୁଇ ବର୍ଷ ଜୀବନ ପାଇଁ ଦୀର୍ଘ ହୋଇପାରେ କିନ୍ତୁ ଏମିତି କିଛି ସମସ୍ତ ନୁହେଁ । ଏତେ ବଡ଼ କୁଳୀନ ପୃଥିବୀରେ ସାମାନ୍ୟତମ ଗୋଟିଏ ଘଟଣା । ଆଜି କେହି ମନେରଖିନାହାନ୍ତି । ଏ ମଣିଷ, ଏ ସମାଜ, ଏ ସଂସାର କେହି ନୁହେଁ । ଭୁଲିଯିବା ଏମାନଙ୍କର ଧର୍ମ ।

କିନ୍ତୁ ମାଳତୀ······ଭୁଲିବା ପାଇଁ ଚେଷ୍ଟା କରି ମଧ୍ୟ ପାରୁନାହିଁ ।

ଆଖି ସାମ୍ନାରେ କେବଳ ହିଁ ଉଭା ହୁଏ ଜୀବନର ସେଇ ସୂର୍ଯ୍ୟୋଦୟର ଘଟଣା । ମଧୁଚନ୍ଦ୍ରିକା ପାଇଁ ସମୁଦ୍ର କୂଳର ସହରକୁ ଆସିଥିବା ଦୁଇଟି ପାଗଳ ମଣିଷ । ସମୁଦ୍ରର ଉଚ୍ଛଳ ଢେଉ, ଝାଉଁବଣର ମର୍ମର, କିଛି ଫିସ୍ ଫିସ୍ କଥାବାର୍ତ୍ତା, ମନ ଓ ଦେହରେ ପ୍ରବଳ ଆଲୋଡ଼ନ ସମୁଦ୍ରକୂଳର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଥିଲା ସେମାନଙ୍କ ପାଇଁ ବିରଳ ସୌନ୍ଦର୍ଯ୍ୟ । ସହରର ଜନାକୀର୍ଣ୍ଣ ପୃଥିବୀ ଭିତରେ ବଢ଼ିଥିବା ମଣିଷ ଜୀବନରେ ଏ ପ୍ରକାର ଆଶ୍ଚର୍ଯ୍ୟ ଅନସ୍ୱସ୍ତତା ଯେମିତି ପରମ କାମ୍ୟ ଥିଲା ।

କିନ୍ତୁ......ଏହା ସତ ଯେ ସବୁ ସୁଖର ଅନ୍ତରାଳରେ ରହିଥାଏ ଏକ ଚିରନ୍ତନ ଦୁଃଖର ରାଗିଣୀ । ସମୁଦ୍ରର ଢେଉ, ଝାଉଁର ମର୍ମର ଓ ରୋମାଞ୍ଚଭରା ସୁନ୍ଦର ପୃଥିବୀ ଭିତରେ ମାଳତୀ ଲକ୍ଷ୍ୟ କରିଥିଲା ସେମାନଙ୍କୁ । ହିପ୍ପି ବା ବିଟ୍‌ନିକ୍ ପରି ଦିଶୁଥିବା ସେଇ ତଥାକଥିତ ସଭ୍ୟ ମଣିଷ ମଣିଷମାନଙ୍କୁ । ନିଶା ଢଳ ଢଳ ଆଖି, ଅସଂଲଗ୍ନ କଥାବାର୍ତ୍ତା ଭିତରେ ପ୍ରାୟ ସକାଳ ଓ ସନ୍ଧ୍ୟାରେ ସମୁଦ୍ର କୂଳେ କୂଳେ ସେମାନେ ଅନୁସରଣ କରନ୍ତି । ମାଳତୀ ବିବ୍ରତ ହୋଇ ସ୍ୱାମୀଙ୍କୁ ଜଣାଏ ।

ସ୍ୱାମୀ ପରିହାସରେ କଥାର ଗୁରୁତ୍ୱକୁ ହାଲ୍କା କରି କହନ୍ତି, ସମସ୍ତଙ୍କୁ ସନ୍ଦେହ କରିବା ନାରୀମାନଙ୍କର ଏକ ଅଭ୍ୟାସ ନା ବିଳାସ । ଏଠିକି ଅନେକ ଆସନ୍ତି । ସହର ମାତ୍ର ପାଞ୍ଚ କିଲୋମିଟର ଦୂରରେ । ତେଣୁ ସେମାନଙ୍କୁ ସନ୍ଦେହ କରିବା ଅମୂଳକ । ତା' ଛଡ଼ା ସୁନ୍ଦର ଫୁଲଟିଏ ଦେଖିବାକୁ କିଏ ବା ଇଚ୍ଛା ନ କରେ । ତମେ ତ ଏକଦା 'କଲେଜ କୁଇନ୍' ଥିଲ ।

ସ୍ୱାମୀଙ୍କୁ ବୁଝାଇ ପାରେନା ମାଳତୀ । ଭିତରେ ଭିତରେ ସେ ଭୟଭୀତ ହୋଇପଡ଼ୁଥିଲ । ଅବଚେତନ ମନରେ ଏକ ଅଜଣା ଭୟ, ବିପଦର ସ୍ୱର……।

କିନ୍ତୁ ଝିଅମାନଙ୍କ ଜୀବନ କେତେକ ଅନୁଭୂତ । ଅଘଟଣ ଘଟିଯାଏ । ମଣିଷ ସମାଜ ସହାନୁଭୂତି ଦେଖାଏ । କିନ୍ତୁ ଶେଷ ପର୍ଯ୍ୟନ୍ତ ଏହି ମଣିଷ ବା ସମାଜ କେହି ଉଦ୍ଧାର ହୁଅନ୍ତି ନାହିଁ ବରଂ କ୍ରମଶଃ ନିଷ୍ଠୁର ହୋଇ ଯାଆନ୍ତି ।

ସବୁଦିନ ପରି ସେଦିନ ମଧ୍ୟ ବିସ୍ତୀର୍ଣ୍ଣ ବାଲି ଉପରେ ପାଦ ରଖି ରଖି ବହୁ ଦୂର ଚାଲିଯାଇଥିଲେ । ନିର୍ଜନତାର ସୁଯୋଗରେ ମାଳତୀର କଣ୍ଠରେ ଥିଲା ପ୍ରୀତିର ସଙ୍ଗୀତ ଭରି ହୋଇ ଆସୁଥିବା ସନ୍ଧ୍ୟା, ବସନ୍ତର ନିଶାଭରା ସାମୁଦ୍ରିକ ପବନ ଏକ ଦୂରନ୍ତ ଶିଶୁପରି ମାଳତୀକୁ ଅସ୍ତବ୍ୟସ୍ତ କରୁଥିଲ । ଚତୁର୍ଦ୍ଦଶୀର ଜ୍ୟୋତ୍ସ୍ନାକୁ ଚାହିଁ ସ୍ୱାମୀର କାନ୍ଧରେ ମଥା ରଖି ଚାଲ୍ ଚାଲ୍ ମାଳତୀ ଭାବୁଥିଲା, ଜୀବନ କି ମଧୁର ! ପୃଥିବୀ କି ସୁନ୍ଦର !! କେତେ ନମନୀୟତା ଅଛି ଏହି ବଞ୍ଚିବାରେ !!!

କିନ୍ତୁ ମାଳତୀର ଏଇ ଭାବନା ସେଇ ମୁହୂର୍ତ୍ତରେହିଁ ବିରାଟ ଭୁଲରେ ରୂପାନ୍ତରିତ ହୋଇଯାଇଥିଲା । ଏକ ହିନ୍ଦୀଚିତ୍ରରେ ଦୃଶ୍ୟ ପରି ଅଚାନକ ଘଟିଯାଇଥିଲା ସେଇ ବିଡ଼ମ୍ବିତ ଘଟଣା ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟା ଉପରେ ଚାରିଜଣ ମାଂସ ଲୋଭୀଙ୍କର ଅତର୍କିତ ଆକ୍ରମଣ । ସ୍ୱାମୀଙ୍କର ଚିତ୍କାର, ମାଳତୀର ବୁକୁଫଟା କ୍ରନ୍ଦନ ସବୁ କିଛି କେବଳ ଇଥରରେ ମିଳାଇ ଯାଉଥିଲା । ଘଟଣା ଘଟିଯାଉଥିଲା । ସ୍ୱାମୀଙ୍କର ଚିତ୍କାର ଅସ୍ପଷ୍ଟ ହୋଇ ଆସୁଥିଲା । ମାଳତୀ ଅନୁଭବ କରୁଥିଲା ତା ଦେହ ଉପରେ ପ୍ରବଳ ଝଡ଼ ବହିଯାଉଛି, ସେ ପ୍ରତିରୋଧ କରି ପାରୁନି । କ୍ଷତବିକ୍ଷତ ହୋଇ ଯାଉଛି । ଗୋଟିଏ ପରେ ଗୋଟିଏ ପୁରୁଷ ଦେହର ବିଧ୍ୱଂସ ଆସୁରିକ ଲୀଳା ସହ୍ୟ କରି କ୍ଷତବିକ୍ଷତ ଚେତନାହୀନ ମାଳତୀ ଶେଷ ଶକ୍ତି ସଞ୍ଚୟ କରି ଜାଣିବାକୁ ଚାହୁଁଥିଲା କେଉଁଠି ତାର ସ୍ୱାମୀ କିନ୍ତୁ କେହି ନ ଥିଲେ । କେବଳ ଚୁପ୍‌ଚାପ୍ ଜ୍ୟୋତ୍ସ୍ନା ଓ ସମୁଦ୍ରର କାନଫଟା ଗର୍ଜନ ।

ତାପରେ···ସେଇ ଅଣ୍ଟୁସ୍ତିକର ଜୀବନ । ଡାକ୍ତରଖାନା ପୋଲିସ, କହୁ ଲୋକଙ୍କର ସମାଗମ । ପ୍ରଶ୍ନ ପରେ ପ୍ରଶ୍ନ । ମଣିଷ ଓ ସମାଜର ଅପଥା କରୁଣା । କହୁଦନ ପାଇଁ ଏକ ଦର୍ଶନୀୟ ବସ୍ତୁ ହୋଇଗଲ ମାଳତୀ ସେ ସମୁଦ୍ର କୂଳଆ ସହରରେ । ମଧୁ ଚନ୍ଦ୍ରିକାର ସ୍ୱପ୍ନ କେଉଁ ଅନ୍ଧାର ଭିତରେ ହଜିଯାଇଥିଲା ।

ସମସ୍ତ ବଦଳିଗଲା । ପୂର୍ବପରି ଗତାନୁଗତିକ ଜୀବନଧାରା । ସବୁ ଠିକ୍ ପୂର୍ବପରି । କିନ୍ତୁ ମାଳତୀକୁ ପାଲ୍ଟେଇ ନେବା ପାଇଁ କେହି ଆସି ନ ଥିଲେ । ମାଳତୀ ଜାଣିଥିଲା ସ୍ୱାମୀଙ୍କର କିଛି କ୍ଷତି ହୋଇ ନାହିଁ । ମନେ ମନେ ଈଶ୍ୱରଙ୍କ କିଛି କ୍ଷତି ହୋଇ ନାହିଁ । ମନେ ମନେ ଈଶ୍ୱରଙ୍କୁ ଶତ ଧନ୍ୟବାଦ ଜଣାଇଥିଲା ସେ । ସମାଜର ନିୟମ, ମାନ ସମ୍ମାନ ଏହିପରି କେତେଗୁଡ଼ିଏ ବୃହତ୍ତ୍ ଶବ୍ଦ ନିକଟରେ ସ୍ନେହ, ମମତା ଭଲ ପାଇବା, ବା ପ୍ରେମର କୌଣସି ମୂଲ୍ୟ ନାହିଁ 'ଧର୍ଷଣ' ଏକ ନାରୀ ପାଇଁ କିଏ କାହିଁକି ହୃଦୟକୁ ବଳି ଦବ ! ସ୍ୱାମୀ, ପରିବାରର କେହି ମାଳତୀ ପାଇଁ ଆଶ୍ୱାସନାର ହାତ ବଢ଼ାଇ ଦେଇ ନ ଥିଲେ । ମାଳତୀ ପାଇଁ ସବୁପଥ ନିଃଶେଷରେ ବନ୍ଦ ହୋଇ ଯାଇଥିଲା ।

ମରୁଭୂମିରେ ବାଲିଝଡ଼ ଉଠେ । କିନ୍ତୁ କେହି କଣ ପଥ ହରାଏ । କେମିତି ଓ କିପରି ଏଇ ଆଦିବାସୀ ପାହାଡ଼ିଆ ଇଲାକାକୁ ଚାଲି ଆସିଲି, ତାହା ଭାବିବାକୁ ଆଦୌ ଇଚ୍ଛା ହୁଏନା ମାଳତୀର । କେବଳ ଏଇ ନୈସର୍ଗିକ ପୃଥିବୀ, ଭ୍ରେଷ୍ଟ ପିଲାମାନଙ୍କର ସ୍ନେହ ସମ୍ଭାଷଣ, ଫାଦରଙ୍କର ଅମାପ ସ୍ନେହ ଓ ସେହି ଅଦୃଶ୍ୟ ଦେବତାର କରୁଣା ଭିତରେ ମାଳତୀର ମନେ ହୁଏ । ଜୀବନର ଅର୍ଥ ବହୁ ପ୍ରକାର । ତା ଜୀବନରେ ଇଏ ବି ଏକ ଅର୍ଥ । ଏଠାରେ କୌଣସି ଅହମିକା ନାହିଁ ଦୁଃଖ ଅପମାନ ନାହିଁ । ସମାଜର ଗୁରୁଗମ୍ଭୀର ନିୟମ ନାହିଁ । କେବଳ ବଞ୍ଚିବାର ଗୌରବ । ମାଳତୀର କିଛି ମନେ ପଡ଼େନା,ସ୍ୱାମୀ, ପରିବାର ପରିଜନ କେହି ନୁହେଁ । କେବଳ ଶୂନ୍ୟତା ମନକ ଏକ ଅସ୍ତିତ୍ୱ ପୀଡ଼ା ଦିଏ । ବେଳେ ବେଳେ ସ୍ମୃତିରେ ଯନ୍ତ୍ରଣା ହୁଏ ଖୁବ୍ । ଅସହ୍ୟ ଲାଗେ । ଚିତ୍କାର କରି ନିଜର ଅସ୍ତିତ୍ୱ ଜଣାଇବାକୁ ଇଚ୍ଛା ହୁଏ । ମୁଠା ମୁଠା ଧୂଳି ନେଇ ସମସ୍ତଙ୍କର ସୁଖୀ ଜୀବନ ଉପରେ ବିଚୁଡ଼ାବାକୁ ମନ ହୁଏ । ଖୁବ୍ ବଡ଼ ପାଟିରେ କହିବାକୁ ଇଚ୍ଛା ହୁଏ, ମୋର କ'ଣ ଦୋଷ ? କେଉଁଥି ପାଇଁ ମୋର ଏ ଅଦ୍ଭୁତ ଜୀବନଯାପନ !! କାହିଁକି ଏ ଶାସ୍ତି ମୋ ପାଇଁ !!!

କିନ୍ତୁ କିଛି କହି ପାରେନା ମାଳତୀ । ଧିକ୍କାର କରେ ସେ । ଧିକ୍···ଧିକ୍ ପୃଥିବୀ··· ଶତାଧିକ ମଣିଷ । ଅପରିଷ୍କୃତାର ଦୁର୍ବଳତାରେ କେବଳ ତା ଆଖିରୁ ବହିଯାଏ ଗରମ ଲୁହର ଅଜସ୍ର ଧାରା । ଅନେକ ଦୀର୍ଘଶ୍ୱାସ ତେଣିକି ଇଥରରେ ମିଳାଇ ଯାଏ ଓ ମାଳତୀ ପୁଣି ଥରେ ବଞ୍ଚିବା ପାଇଁ ଚେଷ୍ଟା କରେ ।

—:※:—



# ଆଲୋକିତ ଅନ୍ଧକାର

## କାଳନ୍ଦି ଚରଣ ଜେନା

କ୍ରମାଗତଃ ତିନି ଦିନ ବର୍ଷା ପରେ ବି ଆକାଶରେ ଟିକେ ବି ଫାଙ୍କା ନ ଥିଲା । ଗର୍ଭିଣୀ ଗାଈର ପେଟ ପରି କଳା ହାଣ୍ଡିଆ ବାଦଲଗୁଡ଼ା ଓହଳି ପଡ଼ି ଭୂଇଁକୁ ଛୁଇଁ ଦୁମ୍ ଦୁମ୍ ହୋଇ ବର୍ଷି ଯାଉଥିଲା । ବର୍ଷାର ତାଣ୍ଡବ ନୃତ୍ୟ ସହିତ ଅଣ-ଗୃଣ ପବନ ଯେମିତ ଏକାକାର ହୋଇ ମିଶି ଯାଇଛି ଶୀତୁଆ ସକାଳର ଉତ୍ତରୀ ପବନ ପରି । ସୁ-ସୁ ଗର୍ଜନ ଭିତରେ ବର୍ଷାଗୁଡ଼ା ଟାଇଁ ଟାଇଁ ପିଟି ହୋଇ ଯାଉଥିଲା କାନ୍ଥ ଦେହରେ । ଘରଟା ଦୁଲୁକି ଉଠୁଥିଲା । କଣ ପ୍ରଳୟ ହେବ ? ଗୋଟେ ଓଁକାର ଶବ୍ଦ ଭିତରେ ସମସ୍ତିଙ୍କର ସ୍ୱର କଣ ବନ୍ଦ ହେଇଯିବ ? ପାଟିଖୋଲି ଡାକିବାକୁ କେହି ଫୁରସତ୍ ପାଇବେ ନାହିଁ ବା ଆଖି ଖୋଲି କିଛି ଦେଖିବାକୁ ମଧ୍ୟ ବେଳ ନଥିବ ! ସେମିତି ଅଶୁଭ ଅଶୁଭ ବୋଧ ହେଉଥିଲା ଗୋପିନାଥକୁ ।

ଟଣ୍ଡିଆ ବିଡ଼ିକୁ ପାଟିରୁ କାଢ଼ି ଥୁ-ଥୁ-କରି ମେଞ୍ଚାଏ ଛେପ ପକାଇଦେଲା ଗୋପିନାଥ । ସହଜା ବର୍ଷା କମିବାର କୌଣସି ଲକ୍ଷଣ ଦେଖାଯାଉ ନ ଥିଲା । ବରଂ ସକାଳ ଅପେକ୍ଷା ତାର ସ୍ୱଭାବଟା କ୍ରମଶଃ ଅମାନିଆ, ଅଝଟିଆ ହୋଇ ପଡ଼ୁଥିଲା । ବର୍ଷା ଅପେକ୍ଷା ପବନକୁ ବେଶୀ ଭୟ କରୁଥିଲା ଗୋପିନାଥ । ପୁବେଇ ପବନଟା ମୋଟେ ଶୁଭ ଲକ୍ଷଣ ନୁହେଁ । ମୁହୂର୍ତ୍ତିକ ଭିତରେ ଅଘଟଣ ଘଟାଇ ବସିବ । କିଛି ଲୁଆଡ଼େ ନ ଥିବା ବୋମା ବିସ୍ଫୋରଣ ପରି ଅକସ୍ମାତ ସମୁଦ୍ର ମୁହାଣଟା ଗର୍ଜି ଉଠିବ ଓ ଅକ୍ଟୋପାସ୍ ପରି ଜିଭ ଲହ ଲହ କରି ସମୁଦ୍ର ଜୁଆରଟା ପ୍ରବଳ ବେଗରେ ମାଡ଼ି ଆସିବ । କ୍ଷଣିକ ଭିତରେ ସବୁ ଆଶା, ଆକାଙ୍କ୍ଷାକୁ ଟେକ୍ ଜରି ପାଣିରେ ପକାଇ ଦେଇ ଗୋଧିଭଳି ଭୂଇଁରେ ଲେଟି ଲେଟି ଫେରିଯିବ ।

ଗତ ବର୍ଷର ଦାଗଟା ଏବେବି ମନ ଭିତରେ ରହିଛି । ଟିକେ ଉଖାରି ଦେଲେ ତତଲ ରକ୍ତ ସହ ନିଗିଡ଼ି ପଡୁଛି । ଖାଇବା ବିନା ତାର ଦି'ଟା ବଳଦ ମରିଗଲେ । କେଢ଼ାଏ କୁଟା ବା ବିଡ଼ାଏ ଛଣ ପାଇଁ ଖଣ୍ଡମଣ୍ଡଳ ବୁଲି ଆସିଥିଲା ସେ । ଛଣ ଅଭାବରୁ ଘର ଦୁଇଟାକୁ ବେଢ଼ପରି ରଖି ଦେଇଥିଲା । ମଥାନ ପାଖରେ ଯୋଉଠି ଟିସ ଖୁଣ୍ଟା ଦେଇଥିଲା ଆଜିର ଅଲକ୍ଷଣା ପବନଟା ସେଇ ପୁଳାକୁ ଅନାଥଙ୍କ ଭଳି ଉଜାଡ଼ି ଦେଇଥିଲା । ଗଳ ଗଳ ହେଇ ବର୍ଷାଗୁଡ଼ା ପେଇବାଟ ଦେଇ କସୁଡ଼ି ହୋଇ ପଡୁଥିଲା ଘର ଭିତରେ । ଗୋପିନାଥ ଛିଡ଼ିଯାଇ ବାଲଟିଟି ଆଖି ଥୋଇ ଦେଲା ବର୍ଷା ମୁହଁରେ ।

ସନ୍ଧ୍ୟା ସୁଦ୍ଧା ବର୍ଷା ବା ପବନ କୌଣସିଟା କମି ନ ଥିଲା । ବରଂ ପବନର ବେଗଟା ବେଳକୁବେଳ ଭୟଙ୍କର ରୂପ ଧାରଣ କରୁଥିଲା । ବାତ୍ୟାଭରା ଘୁ-ଘୁ-ଗର୍ଜନ କରି ସାରା ଗାଁଟିକୁ ହୁଲୁସ୍ଥୁଲ୍ କରି ଦେଉଥିଲା ।

ଗତ ବର୍ଷର ଦାଗଟା ମନ ଭିତରୁ ପୋଛି ଦେଇ ଏଥର ସେ ପୁରା ଦମ୍‌ରେ ଲଗି ପଡ଼ିଥିଲା । ବାବୁଘରୁ ଦି' ଟଙ୍କା ପାଇ ହଳ ମାଗି ଆଣି ସେ ପହିଲ ପହିଲ ବୃଷ୍ଟି କାର୍ଯ୍ୟଟା ସାରି ଦେଇଥିଲା । ବାବୁଘର ତାକୁ ଅନେକ ସାହାଯ୍ୟ ହୋଇଛନ୍ତି । ତା ପାଇଁ ସେମାନେ କେବେ କାର୍ପଣ୍ୟ କରି ନାହାନ୍ତି । ବାବୁଙ୍କର ଏପରି ଦୟା, ହୃଦ ଖୋଲା ସଦାନୁଭୂତି ଯାହାକି ଗୋପିନାଥ ପାଇଁ ଭୁଲିବାର ନୁହେଁ ।

ଗଲେନ ଜମିରେ ଲୁଣା ହେଉ ମାଡ଼ିଗିବା ପରେ ସେଥିରେ କୃଷି ବ କର୍ମକ ନ ଥିଲା କେତେଦିନ ପର୍ଯ୍ୟନ୍ତ । ପୋଖରୀ, କୂଅ, ଘର, ବାହାର ସବୁ କେବଳ ଲୁଣି-ମୟ ହୋଇ ଯାଇଥିଲା । ଟୋପେ ପାଣି ପାଇଁ ଗାଁ ଲୋକଙ୍କ ଓହଳ ବିକଳ ଯାହା କେବେ ପାଶୋରିବାର ନୁହେଁ । ଗୋରୁ ଗାଈ ସବୁ ଲୋ ବାଡ଼ରେ ପଡ଼ି ଛଟ୍‌ଛଟ୍ ହୋଇ ମରିଗଲେ । ମୁଠେ ଖାଦ୍ୟର ଅପେକ୍ଷାରେ ବୁକୁଫଟା କରୁଣ ଆର୍ତ୍ତନାଦ ଗଳେ, ପବନର ସ୍ରୋତ ଥରାଇ ଦେଇଥିଲା । ସେ ସମୟର ଭୟାବହତା କଥା ମନେ ପଡ଼ିବା କ୍ଷଣି ଗୋପିନାଥର ଲୋମକୂଡ଼ା ଉପରେ ଠିଆ ହୋଇ ପଡୁଥିଲା ।

ଥିଲାବାଲା, ନଥିଲାବାଲା ସମସ୍ତେ ଏକାକାର । ଗୋଟେ ଅଶୁଣା କେନ୍ଦୁଆ ଉପରେ ମର୍ମସ୍ପର୍ଶୀ ଘଟଣା ସମସ୍ତିଙ୍କର ମୁଣ୍ଡ ଉପରେ ଶାଗୁଣା ଭଳି ଚକର କାଟୁଥିଲା । ତାର ମନେ ଅଛି, ସେଦିନ କଲେ ଗୁଡ଼ିଲ ପାଇଁ ସେ ଗୋଟିଏ ଏକା ବାବୁଙ୍କ ଘରେ ଧାରଣା ଦେଇଥିଲା । କେତେ କାକୂତି ମିନତି କରିଥିଲା । ସେହି ଗୁମାସ୍ତା ପାଇଁ ତାକୁ ସେଦିନ, ଏତେ ହନସ୍ତା ହେବାକୁ ପଡ଼ିଥିଲା । ସେ ବାବୁଙ୍କ କାନେ କାନେ ଶିଖାଇଥିଲା, ଗୋପିର ତ ଜମି ଅଛି, ଦେଖନ୍ତୁ ମାଗେ, ଦି' ପାଆ ଖର୍ଚ୍ଚ କରୁନ । ଏତେ ଅବସ୍ଥା ହେଉଛି କାହିଁକି ?

ବାବୁ ମଧ୍ୟ ସେଦିନ ତା'ର କଥାରେ ପ୍ରତିନାଳ କହିଥିଲେ, ସେମି ଏବେ ହଇରାଣ ହବା ଅପେକ୍ଷା ଜମି କଛି ବନ୍ଧକ କରିଦିଏ ।

ଥକ୍କା ମାରିଲା ପରି ଟିକିଏ ଆଉଜା ଠିଆ ହୋଇ ପଡ଼ିଲା ଗୋପିନାଥ । ହାତ ମଳି ମଳି ଖୋସାମତ ଢଙ୍ଗରେ କହିଲା, ବାବୁ ! ଜମି ବୋଲିଲେ ତ ଦି' ମାଣ, ସେ ପୁଣି ମୋ ସ୍ତ୍ରୀ ନାଁରେ ଅଛି । ଆଗକୁ ଆଶା ଅଛି । ଆଜି ତାକୁ ଖର୍ଚ୍ଚ କରିଦେଲେ ଭବିଷ୍ୟତରେ ପୁଣି କଣ କରିବ ।

ତା' କଥା ଶୁଣି ବାବୁ ଅଳ୍ପ ହସିଥିଲେ ! ମୁଣ୍ଡ ହଲାଇ କହିଥିଲେ, ତୁ ଯା' ଭଲ ବୁଝୁଚୁ କର । ତୋ ବାବୁଆଣୀ ମଲା ଦିନରୁ ସମ୍ପତ୍ତି ପ୍ରତି ମୋର ମଧ ମୋହ ତୁଟି ଯାଇଚ୍ଛ, ତୁହେଲ୍ ଏ ଘରର ପୁରୁଣା ଚାକର । ଏଘର ଦୁଆର ତୋ ପାଇଁ ସଦାଦିନେ ଖୋଲା । ଜମି ବାଡ଼ିକୁ ଟିକେ ଭଲଭାବେ ନଜର କର । ଆଉ ଘରଟା ଅଚଳ ହୋଇ ପଡ଼ିଚି; ମୋ ମତରେ, ତୋ ସ୍ତ୍ରୀକୁ କହ ସେ ଟିକେ ଆସି ଦେଖାଶୁଣା କରୁ ।

ସେ ଦିନ ଦୋ' ଦୋ' ପାଞ୍ଚ ହୋଇ ଘରକୁ ଫେରିଥିଲା ଗୋପିନାଥ । କହିବ କହିବ ବୋଲି ଇଚ୍ଛା କରିବ ସହସା ପାଟି ଖୋଲି ନ ଥିଲା ତାର । ସୀତାର ମୁହଁ ଦେଖି ସେ ଯେମିତ ସବୁ କିଛି ପାଶୋରି ପକାଇଥିଲା । ଏତେ ଡ଼ହୁଳ ଡାହୁଳ ରୂପଟିକୁ ସେ ପାଖରୁ ଦୂରେଇ ଦବାକୁ ମୋଟେ ଇଚ୍ଛା କରୁ ନ ଥିଲା । କିନ୍ତୁ ଅଭାବର ନିଷ୍ଠୁର ଚାବୁକଟା ପାଏଁ ପାଏଁ କରି ଦେହସାରା ପିଟି ହୋଇ ଯାଉଥିଲା ଅବିରାମ-ଭାବେ । ଚଙ୍ଗୁଡ଼ି ମାଡ଼ିରେ ଯନ୍ତ୍ରଣାରେ ଛଟ ପଟ ହୋଇ ଅହରହ ଡ଼େଉଁଥିଲା ଗୋପିନାଥ ।

ସେ ମନେ ମନେ ଚିନ୍ତାକଲା; ବେଳଟା ଆସିଚି, ପୁଣି ଚାଲି ଯିବ । କେହିତ ସଦାଦିନେ ରହିନ, ଏ ହତଲକ୍ଷ୍ମୀ ବେଳଟା କଣ ରହିବ ? ଅବସ୍ଥା ଟିକେ ସୁଧୁରିଗଲେ ସେ ପୁଣି ସୀତାକୁ ପାଖକୁ ନେଇ ଆସିବ । ଦି'ମାଣ ଜମିରେ ଧାନହେଲେ ସେମାନେ ବର୍ଷେ ଖାଇବେ । କଏ ବା ଝାଉଁଅଛି—ଆଗକୁ ନା—ପଛକୁ ।

ଅକସ୍ମାତ ଗୋପିନାଥ ମନଟା ବିଶୃଙ୍ଖଳ ହୋଇ ପଡ଼ିଲା । ତା' ମନ ଭିତରେ ଗୋଟେ ଅଜଣାଶ୍ୱାସ ଝଡ଼ ପ୍ରବଳ ବେଗରେ ବହିବାକୁ ଆରମ୍ଭ କଲା । ସୀତା ଏ ଘରକୁ ବୋହୂ ହୋଇ ଆସିବାର ଦଶବର୍ଷ ହୋଇଲାଣି । କିନ୍ତୁ ତାର କୋଳଟା ଆଜିଯାଏ ଖାଲି ପଡ଼ିଚି । ନୂଆ ଲୋକର ମୁହଁଟି ଦେଖିବା ପାଇଁ କେତେ ଆଶା କରିଥିଲା ତା'ବୋଉ, ଅନାଇ ଅନାଇ ବର୍ଷ ବର୍ଷ ଶରଧନ ପାଇଁ ଆଖିବୁଜିଲା ହେଲେ ଗଛଟା ସେହିଭଳି ଅଫଳନ୍ତ ରହିଗଲା । ଗୁଣି, ଗାରେଡ଼ି, ଚଣ୍ଡିପାଠଠାରୁ ଆରମ୍ଭ-କରି କବିରାଜ ପର୍ଯ୍ୟନ୍ତ ସବୁ ଚେଷ୍ଟା ସାରି ଦେଇ ଏବେ ଭାଗ୍ୟ ଉପରେ ଛାଡ଼ି ଦେଇଚି ଗୋପିନାଥ । ଭାଗ୍ୟଟା ସଳଖ ଥିଲେ ଦିନେ ନାଁ—ଦିନେ ତା'ଘର ହସି ଉଠିବ ।

ବିଭାଘରର ଦୀର୍ଘ ବ୍ୟବଧାନ ପରେବି ଆଜିଯାଏ ସୀତାର ଯୌବନ ଅତୁଟ ରହିଚି । ତାର ମନ ଲୋଭା ରୂପଟି ଦେଖିବା କ୍ଷଣି, ଗୋପିନାଥର ପେଟ ଭର୍ତ୍ତି ହୋଇଯାଏ । ଦୁନିଆର ସବୁ ଯାତନା କଥା ସେ ସେଇ ମୁହୂର୍ତ୍ତିରେ ହଜାଇ ବସେ ।

ଅସ୍ଥିର ସଂସାର ଭିତରେ କେବଳ ସୀତାର ରୂପଟା ଅନେକ ସମୟରେ ଗୋପିନାଥକୁ ସାହସ, ଭରସା ଦେଇଛି । ସେ ଶୋକ-ଶୋଷ ଭୁଲିଯାଇଛି । ସୀତାକୁ ଦେଖି ଦେବା କ୍ଷଣି ସେ ଅନୁଭବ କରେ, ଯେମିତି ସୀତା ମୁହଁରେ ଖାଦକ ପାଇଁ ପ୍ରଚୁର ଖାଦ୍ୟ ଭରି ରହିଛି ଏବଂ ସୀତାର ଭାବନାଟା ମଧ୍ୟ ଅନୁରୂପ । ଗୋପିନାଥର ପାହେଲା ପୌରୁଷ ପାଖରେ ସେ ଦୁନିଆଟିକୁ ହଜାଇ ଦିଏ ।

ସୀତା ଉପରେ ଦୃଷ୍ଟି ପଡ଼ିବା କ୍ଷଣି ଗୋପିନାଥ ପ୍ରଥମେ ସଙ୍କୋଚ କଲା । କେମିତି କଥାଟା ଆରମ୍ଭ କରିବ ଚିନ୍ତା କଲା, ତାପରେ ସୀତାକୁ ଚାହିଁ ଥଙ୍ଗ ଥଙ୍ଗ ହୋଇ କହିଲା, ଆଜି ବାବୁଘର କହୁଥିଲେ, ବାବୁଆଣୀ ମଲାଦିନରୁ ତାଙ୍କ ଘରଟା ପୂରା ଅଚଳ । ତୁ ଟିକେ ଯାଇ ଦେଖାଶୁଣା କର ।

ସୀତା ଆଶ୍ଚର୍ଯ୍ୟ ହୋଇ ଗୋପିନାଥକୁ ଚାହିଁଲା ଘଡ଼ିଏ । ଅବିଶ୍ୱାସପୂର୍ଣ୍ଣ ସ୍ୱରରେ କହିଲା, ତମେ କମିତି ଚଳିବ ?

ଗୋଟେ, ଦୁଇଟି ଜୋରରେ ନିଶ୍ୱାସ ଟାଣିନେଲା ଗୋପିନାଥ । ଜିଭ ତଳେ କଥାଗୁଡ଼ା ବାଟବଣା ହୋଇ ପଡ଼ୁଥିଲେ । ସେ ଅନୁଭବ କଲା, ତାର ଚତୁଃପାର୍ଶ୍ୱଟା ଯେମିତି ଅନ୍ଧାର । ଟିକେ ବି ଫାଙ୍କ୍ ନାହିଁ ଦେଖିବାକୁ । କ୍ଲାନ୍ତଙ୍କ ଭଳି ଧୀରେ ପାଟି ଖୋଲିଲା, ପେଟ ପାଇଁ ସବୁକିଛି ସହିବାକୁ ପଡ଼ୁଛି ସୀତା । ସବୁ ଦିନେତ ଏ ଦୁର୍ଦ୍ଦିନ ନ ଥିବ ! ଆଉ ମାତ୍ର ଦିନ କେଇଟା । ଦି' ଗୁର ଅସର୍ ବର୍ଷା ହୋଇଗଲେ କାମ ଲାଗିଯିବ । ତେଣିକି ଦି'ଟା ପେଟ କ'ଣ ଅଟପାପା ରହିବ ? ବାବୁଙ୍କ ହଳ ବଳଦରେ ଜମି କୃଷି ଦେଲେ ଗୋଡ଼ କଗୁଡ଼ା ବର୍ଷେ ଖାଇଲେ ବି ଧାନ ସରିବ ନାହିଁ ।

ମୁଆଁରେ ଥିବା ଦି' ମାଣ ଜମି ତାର ସବୁ ଆଶା ଭରସା । ବାପ ମଲା, ମା' ମଲା, ସେ ବିଭା ହେଲା । ଏତେ ଦୈନ୍ୟ ଭିତରେ ସେ ସେତକ ହାତଛଡ଼ା କରିନି । ବରଂ ବା' ଘର ପରେ ପରେ ସେ ସେତକ ଜମି ସୀତା ନାଁ-ରେ କରି ଦେଇଛି । କେତେବେଳେ କୋଉ କଥା । ତା' ନାଁରେ ଥିଲେ ଅଭାବ ସମୟରେ ମନଟା ହୁଏତ ବଳିଥାନ୍ତା ଖର୍ଚ୍ଚ କରିବାକୁ । ସେ ବାଟ ଜାଣିଜାଣି ବନ୍ଦ କରିଦେଇଛି ଗୋପିନାଥ । ଏ ବର୍ଷ ସିନା ଫସଲ ହେଲାନି । ଲଗଲଗ ଦି'ଟା ବର୍ଷ ଫସଲ ହେଲେ ଜମିଦାମ ହୁ-ହୁ-ହୋଇ ବଢ଼ିଯିବ । ଖୋଜିଲେ ବି ମିଳିବ ନାହିଁ ।

ଏତେ ଅଭାବ ଭିତରେ ମଧ କେବେ ଭାଙ୍ଗି ପଡ଼ିନି ଗୋପିନାଥ । ନିଜକୁ ଅତି ସହଜ ଭାବେ ସାମିଲ କରି ଦେଇଛି ପ୍ରତିଥର । ସୀତା ମଧ କେବେ ଅବୁଝା ହୋଇନି । ଗୋପିନାଥର ସମସ୍ତ ଇଚ୍ଛାକୁ ସୀତା ଆପେ ନିଜ ଦେହ ଉପରକୁ ଟାଣି ନିଏ ବିନା ଆମନ୍ତ୍ରଣରେ ।

ପ୍ରଥମ ଆଷାଢ଼ରେ ଜୋରରେ ଅସରାଏ, ଦି' ଅସରା ବର୍ଷା ହେବା ପରେ ଗୋପିନାଥର ମନଟା ଆନନ୍ଦରେ ନାଚି ଉଠିଥିଲା, ଝାଳରେ ଚକ୍ ଚକ୍ କରୁଥିବା ଜମିର ଲୁଣି ଅଂଶଟା ଆସ୍ତେ ମଉଳି ଯାଇଥିଲା । ତଥାପି ପରାସ୍ତ ହୋଇଥିଲା ସେ । ପ୍ରଥମ ବିହନ ମାଡ଼ିଟାଇସିବା ପରେ ସେ ଦ୍ୱିତୀୟ ଥର ବୁଣିଥିଲା, କିନ୍ତୁ ସେଥିରୁ ମଧ ଗୋଟିଏ ବି ଗଛ ବାହାରି ନ ଥିଲା । ତଳି ପକାଇବା ପାଇଁ ବିହନ କେତେ ଗୌଣି ପାର୍ଟି ବାବୁଙ୍କ ପାଖରେ ସେ ହାତ ପାତି ଆଣିଥିଲା । କାମରୁ ଫେରି ଘଡ଼ିଏ ଘଡ଼ିଏ ତଳି ଉପାଡ଼ି ରୁଆ କାର୍ଯ୍ୟଟା ସାରି ଦେଇଥିଲା ଗୋପିନାଥ । ମାତ୍ର ଦିନ ପନ୍ଦରଟାରେ ରୁଆଧାନ କଳା ବୁଲିଗଲା । ଟିକେ ଉଶ୍ୱାସ ବୋଧ କଲା ଗୋପିନାଥ । ମନେ ମନେ ଚିନ୍ତା କଲା; ମା' ହେଉ ଏଥର ତାର ଦୁଃଖ ମେଣ୍ଟିବ । ଠିକ୍ ସମୟରେ ଅସରାଏ ଜୋରରେ ବର୍ଷା ହେଲେ ତେଣିକି ଆଉ କିଛି ଡର ନାହିଁ ।

ଝୁବ୍ ଜୋରରେ ଝଲକାଏ ପବନ ମାଡ଼ି ଆସିଲା ଗୋପିନାଥ ଆଡ଼କୁ । ଧପ୍ କରି ଡିବିଉଟା ଲିଭିଗଲା । ଗୋପିନାଥର ସର୍ବାଙ୍ଗ ଥରହୁଠିଲା ଶୀତୁଆ ପବନରେ ଘରଟା ସମ୍ପୂର୍ଣ୍ଣ ଅନ୍ଧାର ଭିତରେ ବୁଡିଯାଇଛି । କୁଆଡ଼େ କିଛି ଦେଖାଯାଉନି । ବାହାରେ ପବନର ଭୁକୁଥିବା ସୁ—ସୁ—ଗର୍ଜନ ସହିତ ଆକାଶ ଫଟାଇ ମେଘ ସବୁ ଗଳିପଡ଼ୁଥିଲା । ଖାଲ୍ ଢିପ, ପୋଖରୀ, ବିଲ ସବୁ ଜଳାର୍ଣ୍ଣବ ହୋଇଗଲାଣି ଦିନୋଟି ଦିନ ଲଗାଏତ ବର୍ଷା ଫଳରେ ।

କବାଟଟି ଭିତରପଟୁ ବନ୍ଦ କରି ଲିଣ୍ଡନ ଲଗାଇଲା ଗୋପିନାଥ । ଘରଟା ଖାଁ—ଖାଁ—ଜଣାପଡ଼ୁଛି । ସୀତାର ଅବର୍ତ୍ତମାନରେ ସବୁକିଛିକ ଯେମିତି ଶ୍ରୀହୀନ ବୋଧ ହେଉଥିଲା ତାକୁ । ଆଜି ତେବେ ଆସିବ ନାହିଁ ସୀତା ? ମନକୁ ମନ ଗୋପିନାଥ କହିବାକୁ ଲାଗିଲା, କେମିତି ବା ଆସିବ ! ଛୁଆ ପଟିଆ କୌଣସିଟା ସମ୍ଭାଳା ପଡ଼ିବ ନାହିଁ ଏ ଉଦଣ୍ଡିଆ ବର୍ଷା—ପବନ ଦାଉରୁ ।

ପାଗଟା ଅନୁକୂଳ ଥିଲେ ବା ହାତରେ କାର୍ଯ୍ୟଟା ଊଣା ଥିଲେ ଆସିବା ପାଇଁ ସୀତାର ବାଧା ନାହିଁ । ପ୍ରତିଦିନ ରାତିରେ ଅପେକ୍ଷା କରେ ଗୋପିନାଥ । ସୀତା କେଉଁ ଦିନ ଆସେ ଅବା କେଉଁଦିନ ନ ଆସେ । ତା'ର କିଛି ଠିକ୍

ଠିକଣା ନାହିଁ । ତଥାପି ମୁହଁ ସଞ୍ଜଠାରୁ ଦୁଆର ପିଣ୍ଡାରେ ବସି ଗୋପିନାଥ ପ୍ରତିଦିନ ନିବିଷ୍ଟ ଭାବେ ଚାହିଁଥାଏ ଗାଁ ଦାଣ୍ଡକୁ । ସଞ୍ଜୁଆ ତାରା ବୁଡ଼ି ଗଲେ ଶିଆଳମାନେ ଦ୍ୱିତୀୟ ଥର ପାଇଁ ହୁକେ—ହୁ—ର ଡାକଟା ତା' କାନରେ ବାଜିଲେ ସେ ଜାଣେ ରାତି ଅନେକ ହେଲାଣି । କବାଟଟି ଦେଇ ଘର ଭିତରେ କିଛି ସମୟ ଟହଲ ମାରେ, ତାପରେ ବିଛଣାକୁ ଯାଏ ଶୋଇବାକୁ । କିନ୍ତୁ ସହସା ଆଖିକୁ ନିଦ ଆସେନା । କାନ ଦୁଇଟା ଡେରିଁ ରହିଥାଏ ବାହାର ଶବ୍ଦକୁ । କୋଉଠି ଖସ୍‌କିନା ଶବ୍ଦଟାଏ ହେଲେ ଧଡ଼୍‌ପଡ଼୍ ହୋଇ ସେ ଉଠିପଡ଼ି କବାଟଟା ଖୋଲିଦିଏ ଓ ଲଣ୍ଠନକୁ ଟେକି ଦେଇ ଦାଣ୍ଡଆଡ଼େ ମାଡ଼ିଯାଏ ।

ସୀତା ଆସିଲେ ସେ ଖୁସିହୁଏ । କିନ୍ତୁ ନ ଆସିଲେ ସେ ଦୁଃଖ କରେନା । ଏଠି ଭୋକ ଉପାସରେ ଦୁଃଖ କଷ୍ଟ ସହିବା ଅପେକ୍ଷା ବରଂ ବାବୁ ଘରେ ସେ ବେଶ୍ ଆରାମରେ ଅଛି । ଗୋପିନାଥର ମଧ୍ୟ କିଛି ଅସୁବିଧା ହୁଏନା । ବାବୁ ଘରେ କାମ ସାରି ସେ ଖାଇଦେଇ ସନ୍ଧ୍ୟାରେ ଫେରି ଆସେ । ସୀତା ଫେରିଲା ବେଳକୁ ରାତି ଟିକେ ଗମ୍ଭୀର ହୋଇସାରିଥାଏ । ସଙ୍ଗରେ ଜଣକୁ ଧରି ସେ ଆସେ । ଉଗ୍ରସେନ ଭଳି ସେ ଅଧାବାଟରୁ ଡାକଟା ଛାଡ଼ିଦେଇ ଫେରିଯାଏ ଗୀତ ଗାଇ ଗାଇ ।

ଆଖିବୁଜି ଶୋଇବା ପାଇଁ ଇଚ୍ଛାକଲା ଗୋପିନାଥ । ନିଦଟା କ'ଣ ସହସା ଆସୁଛି ! ସେ ବି ଆଜି ଦାଉ ସାଧୁଛି । ପେଟର ଭୋକଟା ଆପେ ଆପେ ମରିଗଲାଣି ।

ଠିକ୍ ପାହାନ୍ତା ପ୍ରହରକୁ ମେଘ-ପବନ ଟିକେ କମିଯାଇଥିଲା ଏବଂ ପବନଟା ମଧ୍ୟ ଦିଗ ପରିବର୍ତ୍ତନ କରି ସାରିଥିଲା । ଗୋପିନାଥର ମନେହେଲା, ବିପଦଟା ଆସ୍ତେ ଦୂରେଇ ଯାଉଛି, ଯେମିତି ଋଢ଼ୀଆଣୀ ଜାଲ ଭିତରୁ ଛନ୍ଦି ହୋଇଥିବା ମାଛଟି ଧୀରେ ଧୀରେ ମୁକୁଳି ଯାଏ । ନିଶ୍ଚିନ୍ତରେ ଗୋଟେ ଦୁଇଟି ହାଇମାରି ସେ ଆଖି ବୁଜିଲା ।

ଆଉ ସକାଳୁ ନିଦ ଭାଙ୍ଗିଯାଇଥିଲା ଗୋପିନାଥର, ବର୍ଷାଟା ମଧ୍ୟ ସମ୍ପୂର୍ଣ୍ଣ ଛାଡ଼ି ଯାଇଥିଲା । ଉଠିପଡ଼ି ତରତରରେ କବାଟଟି ଖୋଲି ଦେଇ ସାପ ଦେଖିଲା ପରି ସେ ଚମକି ପଡ଼ିଲା । କବାଟକୁ ଲାଗି ଜାକି ଜୁକି ହୋଇ ସ୍ତ୍ରୀ ଲୋକଟି ଶୋଇଛି । ଭୟମିଶା କୌତୂହଳ ଭିତରେ ଗୋପିନାଥ ଡାକିଲା, କିଏ...... କିଏ ସେ...... ?

—ମୁଁ··· । ଆଖିଖୋଲି ଚାହିଁଲି ସୀତା ।

—ସୀତା··· ! ବିଶ୍ୱାସ କରିପାରୁ ନ ଥିଲି ଗୋପିନାଥ, ନଥ୍ କରି ତା' ପାଖରେ ବସି ପଡ଼ିଲା ଗୋପିନାଥ । ଆଖି ବଡ଼ ବଡ଼ କରି ଚାହିଁଲା । ସୀତା ଆଜି କାହାରି ଅଚିହ୍ନା ଦେଖାଯାଉଛି । ଶାଢ଼ୀ ଚିରିଯାଇଛି, ଜାଗା ଜାଗା ରକ୍ତର ଦାଗ ଲାଗିଛି, ବ୍ଲାଉଜର ପଛ ପାଖଟା ଫାଳେ ଚିରା । ଗାଲ, ଓଠ, ଗ୍ରୀବ ସବୁଆଡ଼େ ଆଞ୍ଚୁଡ଼ା ଦାଗ । ମୁଣ୍ଡର ବାଳଗୁଡ଼ା ବିପର୍ଯ୍ୟସ୍ତ ହୋଇ ଫିଟି ପଡ଼ୁଛି । ଗୋପିନାଥ ଭୟାଳୁ ସ୍ୱରରେ ପଚାରିଲା, ତତେ ଏମିତି କିଏ କଲା ସୀତା ?

ସୀତା କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା ଓ ସେହି କାନ୍ଦଣା ଭିତରେ କହିଲା, ସେଇ ବାବୁଟା । ଗୋଟେ ରାକ୍ଷସ । ତା'ର କିଏ ବନ୍ଧୁ ଆସିଥିଲା । ତାକୁ ଖୁସି କରିବା ପାଇଁ ସେ ମତେ କହିଲା । ମୁଁ ରାଜି ନ ହେବାରୁ ଜୋର କରି ମତେ ଖଟ ଉପରକୁ ଟେକି ନେଲା । କଥା ଶେଷରେ ଅଧିକ ଜୋରରେ କାନ୍ଦିବାକୁ ଆରମ୍ଭ କଲା ସୀତା ।

କ୍ରୋଧରେ ଗୋପିନାଥର ଦେହଟା ଥରିଉଠିଲା, ପରମୁହୂର୍ତ୍ତରେ ସେ ସୀତାକୁ ଘର ଭିତରକୁ ଟାଣିନେଇ କହିଲା, ପାଟି କରନା । ସବୁ ଆମ ଭାଗ୍ୟ ! ଗାଁରେ ଶୁଣିଲେ ମୁହଁ ଟେକି ଚାଲି ହବନି ।

ଥପ୍ କରି କାନ୍ଦଣା ବନ୍ଦ ହୋଇଗଲା ସୀତାର । ସେ ଅବିଶ୍ୱାସପୂର୍ଣ୍ଣ ଆଖିରେ ଗୋପିନାଥକୁ ଚାହିଁଲା । ମୁହଁଟା କେତେ ସଫା, କେତେ ଆଲୋକିତ ! କ୍ଷଣିକରେ ତାର ମନଟା ଦୂରି ଉଠିଲା । ସେ ଚିନ୍ତା କଲା, ସତରେ କେଡ଼େ ସହଜିଆ ତାର ମନର ମଣିଷଟି । ଏତେ ବଡ଼ ପାପର ଦାଗକୁ ଏତେ ସୂକ୍ଷ୍ମରେ ପୋଛି ଦେଇ ପାରିଲା, ଟିକେ ବି ଚିହ୍ନ ବର୍ତ୍ତି ରହିଲା ନାହିଁ ।

—※—



# ଅପହୃତ ବିମାନରେ ଅଟକିଯାଇଥିବା ଯାତ୍ରୀ

* ହୃଷୀକେଶ ପଣ୍ଡା

ରାତି ଆଠ ଘଣ୍ଟା ବାଜିଲାଣି । ଅମରେଶର ଷଣ୍ଡିଆ ସିଗାରେଟ୍‌ରେ ଆସ୍‌ଟ୍ରେ ପୂରିଗଲାଣି । ପଞ୍ଚତାରକା ହୋଟେଲରେ ଫୋର୍ଥ ଫ୍ଲୋରର ଏଇଟା ଶେଷ ରୁମ୍ । ଅମରେଶ ବେଡ୍ ଛାଡ଼ି ଝରକା ପାଖରେ ଆସି ଛିଡ଼ାହେଲା । ରୁମ୍‌ର ଦୁଇକଡ଼କୁ ସାମନାସାମନି ଦୁଇଟା ଝରକା । ଗୋଟିଏ ସହର ପଟକୁ ଅନ୍ୟଟି ସିକୋଷ୍ଟ୍ ଆଡ଼କୁ । ଗ୍ରେଟ ସହରଟା ଚୁପ୍‌ଚାପ୍ । ସୁନ୍‌ସାନ୍ । ଗଭୀର ରାତି କୋଳରେ ଘୁମେଇ ପଡ଼ିଛି । ରଙ୍ଗଛଡ଼ା ରୂପଜୀବୀପରି । ଷ୍ଟ୍ରିଟ୍ ଲାଇଟ୍‌ଗୁଡ଼ିକ ନିଷ୍ପ୍ରଭ ହୋଇ ଏକା ଏକା ଛିଡ଼ା ହୋଇଛନ୍ତି । ବୁଲିକୁକୁର କେତୋଟି ଡଷ୍ଟବିନ୍ ପାଖରେ କଳିଆ ଲଗେଇଛନ୍ତି । ସହର ସାରା କେବଳ ଆଲୋକ ଓ ଅନ୍ଧାରର ଅଶ୍ଳୀଳ ଶୃଙ୍ଗାର । ସହରର କୋଠାବାଡ଼ିଗୁଡ଼ିକ ଡିଟେକ୍‌ଟିଭ ଉପନ୍ୟାସର ବର୍ଣ୍ଣିତ ରହସ୍ୟମୟ ମାନଚିତ୍ର ପରି ଦିଶୁଛି । ଦୀର୍ଘଶ୍ୱାସଛାଡ଼ି ଅମରେଶ ଫେରି ଆସିଲା ବେଡ୍ ପାଖକୁ । ସିଗାରେଟ୍ ଖଣ୍ଡିଏ ପାଟିରେ ଦେଇ ନିଆଁ ଧରାଇଲା । ଦୁଇଢୋକ ନିଆଁ ଗିଳିଦେଇ ପୁଣି ଛିଡ଼ାହେଲା । ପାଖ ବେଡ୍ ଅନିନ୍ଦିତାର । ଅନିନ୍ଦିତା ନିଶ୍ଚିନ୍ତରେ ଶୋଇ ଯାଇଛି । ଦୁଇଟା ବେଡ୍ ମଝିରେ ନାଲି ମାଟ ପତଳା ପର୍ଦ୍ଦା । ଖଣ୍ଡିଏ । ଅନିନ୍ଦିତା ଶୋଇଛି ସୁପ୍ତ ଆଗ୍ନେୟଗିରିପରି । ନିଦ୍ରିତ ମୁହଁରେ ଉଚ୍ଛନ୍ନ ଯୌବନଶ୍ରୀର ଚିହ୍ନ । ଶୋଇବାରେ ଖୁବ୍ ସଜାଗ ନହେଲେବି ଅସଜାଗ ମୋଟେ ନୁହେଁ । ତେବେ ନିଦ୍ରିତା ଅନିନ୍ଦିତା ସ୍ୱାଭାବିକ ଭାବରେ ଲୋଭନୀୟ । ସନ୍ଧ୍ୟାର ଲାଲ୍ ବନାରସୀ ପାଲଟେଇ ନେଇଛି । ବ୍ରିଫ୍‌କେସ୍ ଭିତରେ ସାଇତି ଦେଇ ଜର୍ଜେଟ୍ ଖଣ୍ଡିଏ ପାଲଟେଇ ପକାଇଛି । ପରିଷ୍କାର-ଭାବରେ ସାବୁନରେ ମୁହଁ ଧୋଇ ଦେଇ ଶିଂଗାର ଟୋପାଟିଏ ଲଗେଇ ନେଇଛି । ହୁଏତ ସିନ୍ଦୂରଟୋପାଟି ପୋଛି ନଥିଲେବି ଚଳିଥା'ନ୍ତା । ଲାଲ୍ ବନାରସୀ ପିନ୍ଧି ବଧୂବେଶରେ ଶୋଇବା ବିଡ଼ମ୍ବନାରେ ବୋଧହୁଏ କୁଣ୍ଠିତ ହୋଇଥିବ । ମିରର୍ ସାମନାରେ ଠିଆହୋଇ ପାଉଡ଼ର ପଫ୍‌ଟା ମୁହଁରେ କେବଳ ସ୍ୱାଭାବିକ ଭାବରେ ବୁଲେଇ ନେଇଛି । ସନ୍ଧ୍ୟାର ଦେହ ରଜନୀଗନ୍ଧାର ସ୍ତବକ ଖୋଲି ରଖିଛି ଡ୍ରେସିଂ-ଟେବୁଲ । ଉପରେ ସତେଇଶ ବର୍ଷର ଅବିବାହିତା ଅନୂଢ଼ା ଯୁବତୀର ସ୍ୱାଭାବିକ

ଭଙ୍ଗୀରେ ଶୋଇଛୁ ଅନନ୍ଦିତା, ଅଥଚ ପଇଁତିରିଶ ବର୍ଷର ଯୁବକ ଅମରେଶ ସାରାରାତି ସିଗାରେଟ ଫୁଙ୍କି ଫୁଙ୍କି ଅନିଦ୍ରା ଦେହ ଭିତରେ ଅଶାନ୍ତ ଅସନ୍ତୋଷ ଆଉ ଜ୍ୱଳନକୁ ଘୃଣି ଚାଲିଛି କୃତ୍ରିମ ଉପଗ୍ରହ ପରି ନିଜର ଅନିଚ୍ଛା ସତ୍ତ୍ୱେ ଘୂରି ବୁଲୁଛି । ଅଥଚ ସନ୍ଧ୍ୟାରେ ଅନନ୍ଦିତା ଦେହରେ ଲାଲ ବନାରସୀ ଭିଡ଼ି ସର୍କିଟ ହାଉସରେ ତାକୁ ରଜନୀଗନ୍ଧାର ସ୍ତବକ ଖୋସି ଅମରେଶ ସହିତ ସୋଏମୋରସ୍ୱାମ ଯାଇଥିଲା । ପାର୍କରେ ବସିଥିଲା, ସମୁଦ୍ରକୂଳକୁ ଯାଇ ଉତ୍ତାଳ ଅଶାନ୍ତ ସମୁଦ୍ରର ଗୁଡ଼ିକୁ ଅନେକ ସମୟ ଧରି ଅନାଇ ରହିଥିଲା । ହୋଟେଲର ଡାଇନିଂ ହଲରେ ସମୁଦ୍ରର ସ୍ପନ୍ଦନ ବାଜୁଥିଲା । ଅନିଚ୍ଛାସତ୍ତ୍ୱେ ଅମରେଶ ଅନନ୍ଦିତାର ଆହ୍ୱାନରେ ଫେରି ଆସିଥିଲା ରୁମକୁ । ରୁମ୍‌ର ତାଲା ଖୋଲି ପଶିବାବେଳକୁ ଅମରେଶ ଦେଖିଥିଲା ଡୋର ପାଖରେ ଗ୍ରେଟ୍ ଏକ ସାଇନ୍‌ବୋର୍ଡ଼ ଟଙ୍ଗା ହୋଇଥିଲା । ଅମରେଶ ମନେ ମନେ ହସିଥିଲା । ସିଟ୍‌ବୋର୍ଡ ଉପରେ ହାତ-ଲେଖା ଇଂରାଜୀ ବାକ୍ୟ ଦୁଇଟି ପଢ଼ି—"ଡୋଣ୍ଟ୍ ଡିଷ୍ଟର୍ବ । ନିଉ ମେରେଡ୍ କପୋଲ, ହନିମୁନ୍ ନାଇଟ୍ ।"–ଘରୁ ଖୋଲିଲା ବେଳକୁ ହାତରେ ଗୋଟିଏ ତଟକା ରଜନୀଗନ୍ଧାର ଗୁଚ୍ଛ ଧରି ସଲାମ ପାହେବ କହି, ହୋଟେଲ ବୟ ହାଜର । ସ୍ମିତ ମୁହଁରେ ପାଞ୍ଚଟଙ୍କିଆ ନୋଟ ଖଣ୍ଡିଏ ବୟ ହାତକୁ ବଢ଼ାଇ ଦେଇ ଫୁଲଗୁଚ୍ଛ ନେଇଥିଲା ଅମରେଶ । ବୟ ମଧ୍ୟ ସଂସ୍କୃତ ବାଳକାସ୍ତ କୃତଜ୍ଞ ସର ମୁଦ୍ରା ଅଙ୍କନ କରି ପାହାଚ ପରେ ପାହାଚ ଡେଇଁ ଡେଇଁ ତଳକୁ ଓହ୍ଲେଇ ଯାଇଥିଲା । ଅଥଚ···

ଡ୍ରେସିଂଟେବୁଲ ଆଗରେ ଯାଇ ଛିଡ଼ାହେଲା ଅମରେଶ । ଦର୍ପଣରେ ତା'ର ପ୍ରତିବିମ୍ବ । ଅସଜଡ଼ା ମୁଣ୍ଡର ବାଳ । ଆଖିଦୁଇଟା ଟକ୍‌ଟକ୍ ଲାଲ ଦିଶୁଛି । ଉତ୍ତେଜନାରେ କଣ୍ଠ ପାଖର ଶିରା ବେଶ୍ ନୀଳ ଧରି ଆସିଲାଣି । ଗୁଡ଼ି ଭିତର ସ୍ପନ୍ଦନ ଖୁବ୍ ବଢ଼ିଯାଇଛୁ । ମୁଣ୍ଡର ଶିରାଗୁଡ଼ିକ ଉତ୍ତେଜିତ ବେଶ୍ ଦମ୍ ଦମ୍ ହେଉଛୁ । ମୁହଁ ସାରା ଝାଳେଇ ଯାଇଛୁ । ଅମରେଶ ଫେରିଆସିଲ ଝରକାପାଖକୁ । ସିଗାରେଟ୍‌ରେ ନିଆଁ ଧରେଇ ପୁଣି ଦୁଇଦମ ଟାଣିଦେଲ । ଧୂଆଁ ଛୋକ ଝରକା ଖୋଲିଲା । ସୁ ସୁ କରି ପଶିଆସିଲ ସମୁଦ୍ରର ଜୁଆରିଆ ପବନ । ଅମରେଶ ଚାହିଁଲା ଦୂରକୁ । ଗଭୀର ରାତିରେ ବେଳାଭୂଇଁରେ ଶ୍ମଶାନବତ ଶୂନ୍ୟତା । ନିର୍ଜନ ବେଳାଭୂଇଁ ଲମ୍ବା କରିଡ଼ର ପରି ପଡ଼ିରହିଛୁ । ଅଶାନ୍ତ ସମୁଦ୍ରର ଉତ୍ତାଳ ଲହରୀ ମାଡ଼ି ଆସୁଚି ବେଳାଭୂଇଁ ଉପରକୁ । ସୀମାରେଖା ଛୁଇଁ ପୁଣି ଫେରିଯାଉଛୁ ସମୁଦ୍ରର ରହସ୍ୟ ଘେରା ନୀଳ ନିବିଡ଼ ଅରଣ୍ୟ ଭିତରକୁ । ମୁଖର କରି ତୋଳୁଚି ଶାନ୍ତ ନୀରବତାକୁ । ଶବ୍ଦର ଶବ୍ଦନ ବେଳେବେଳେ ଦୁହିଁ ଦେଉଛୁ ନୀରବତାର ଦେହରେ । ଅମରେଶ ଅନେଇ ରହିଚି ଅସୀମ ଅଥଳ ସମୁଦ୍ରକୁ । ଅଗସ୍ତିପୁର ପରେ ଅଷ୍ଟମୀର କଣେଇ ଜହ୍ନ ସମୁଦ୍ରର ଉତ୍ତାଳ ଢେଉ ସାଥିରେ ଲୁଚକାଳି ଖେଳୁଚି ।

କ'ଣ କହୁଚି ଏ ସମୁଦ୍ର ? ବସ୍ତ୍ରୀ ରାତିର ବିଜନ ବେଳାରେ ଯେ

କ'ଣ ଅମରେଣକୁ କିଛି କହିବାକୁ ଚାହେଁ । କ'ଣ ସେ କଥା । ମୋତେ ଦେଖ । ମୁଁ କିମିତି ଥକି ଯାଉଚି । କ୍ଲାନ୍ତ ହୋଇ ପଡୁଚି । ଶିଥିଳ ହୋଇ ଯାଉଚି । ମୁଁ ଉଚ୍ଛ୍ୱଳ । ମୁଁ ଉଦ୍ଦାମ । ମୁଁ ଅଶାନ୍ତ । ମୁଁ ଫେନାୟିତ । ମୁଁ ମୁଖର । କ'ଣ ଯେତେ ଏତେ ସବୁ ଭାବୁଚ । ଗଭୀର ରାତି । ସମସ୍ତେ ନୀରବ । ସୁପ୍ତ । ସାରା ସହର ଶୋଇ ଯାଇଛି । ସବୁ ଶୁନ୍‌ଶାନ୍ । କାହିଁକି ତୋ ଭିତରେ ଫଲ୍ଗୁର ଯନ୍ତ୍ରଣା । କାହିଁକି ଶୂନ୍ୟତା । ତୁ ମୋ ପରି ସମୁଦ୍ରଟେ ପାଲଟି ଯା । ଉଚ୍ଛ୍ୱଳା ହୁଅ । ଉଦ୍ଦାମ ହୁଅ । ମୁଖର ହୁଅ । ମୋ ଭିତରେ ବି ଯନ୍ତ୍ରଣା ଅଛି । ଅକ୍‌ଟୋପାସର ଯନ୍ତ୍ରଣା । ମୋ ଭିତରେ ବି କ୍ଷୁଧା ଅଛି । ବିରାଟ ଶାର୍କର କ୍ଷୁଧା । ମୋ ଭିତରେ ବି ତିକ୍ତତା ଅଛି । ଲୁଣି ପାଣିର ତିକ୍ତତା । ମୋ ଭିତରେ ବି ଅସହାୟତା ଅଛି । କୂଳ ଖୋଜି ନପାଇବାର ଅସହାୟତା । ତଥାପି ମୁଁ ଅଶାନ୍ତ । ଉଚ୍ଛ୍ୱଳ । ଅବିରାମ । ମୋ ପରି ସବୁକିଛି ଆକୁଳି ନେ—ଶୋଷି ନେ—ଆଉ ତା'ପରେ ଫିଙ୍ଗି ଦେ ବେଳାଭୂମିକୁ । ଏଇ ଯେଉଁ ମୁହୂର୍ତ୍ତ, ଏହାର କ'ଣ ଆଉ ପୁନରାବୃତ୍ତି ଅଛି ? ଅନନ୍ତ ମହାକାଳ ଭିତରୁ ଏଇଟା ହିଁ ସେହି ମୁହୂର୍ତ୍ତ । ବଞ୍ଚିବା ପରି ବଞ୍ଚିବାର ମୁହୂର୍ତ୍ତ । ବାକି ସବୁ ପୁନରାବୃତ୍ତି । ଅସହାୟର ଯନ୍ତ୍ରଣା ।

ଅମରେଣ ନିଃଶବ୍ଦରେ ଚିତ୍କାର କରି ଉଠିଲ । ସିଗାରେଟ୍‌ଟା ଜଳିଜଳି ହାତରେ ଚଆଁ ଲଗି ଯାଇଛି । ଏକ ଅସହାୟତାର ବ୍ୟାର୍ଥରେ ସଙ୍କମିତ ହୋଇ ପୋଡ଼ା ସିଗାରେଟ୍‌ଟା ନେଇ ବାହାରକୁ ଫିଙ୍ଗି ଦେଲା ଅମରେଣ । ଦୃଷ୍ଟି ଫେରାଇଲା ରୁମ୍ ଭିତରକୁ । କାନ୍ଥ ଦେହର ବିଦେଶୀ ଲିକର କମ୍ପାନୀର କ୍ୟାଲେଣ୍ଡରଟା ପିଟି ହେଉଛି । ପର୍ଦ୍ଦା ଉଡ଼ି ଚୁଲ୍‌ଚି ପବନରେ । ସ୍ପଷ୍ଟ ଦେଖା ଯାଉଛି ନିଦ୍ରିତା ଅନନ୍ଦିତାର ଶାନ୍ତ ସ୍ନିଗ୍ଧ ମୁହଁ । ନିର୍ଭୟ ନିଃସଙ୍କୋଚରେ ସେ ଶୋଇ ଯାଇଛି । ସତେ ଯେମିତି ତାକୁ ସମ୍ପୂର୍ଣ୍ଣ ଅଜଣା ସେ ଜଣେ ପଇଁତିରିଶ ବର୍ଷର ଯୁବକ ସହିତ ଏକ ଫାଇଭ୍‌ଷ୍ଟାର୍ ହୋଟେଲର ସିଂଗଲ୍‌ରୁମ୍‌ରେ ସେ ରାତି ବିତାଉଛି । ଅଥଚ ଅମରେଣ ଭିତରେ ଗୋଟାଏ ଭୟଙ୍କର ଟାଇଫୁନ୍ । ଭୟଙ୍କର ଶାର୍କର ଅସୀମ କ୍ଷୁଧା—ଅମରେଣ ଆଗେଇ ଗଲା ଅନନ୍ଦିତାର ବେଡ୍ ପାଖକୁ । ପାଖକୁ ଲାଗିଛୁଡ଼ା ହେଲା । ମୁଣ୍ଡ ନୁଆଁଇ ନିବିଡ଼ ଭାବରେ ତା' ମୁହଁ ପାଖକୁ ମୁହଁ ଆଣିବାକୁ ଚେଷ୍ଟା କଲା । କିନ୍ତୁ ଏ କ'ଣ ? ସେ ପାରୁନି । କାହିଁକି ? କାହିଁକି ଏ ଅସହାୟତା ? କାହିଁକି ଏ ଫଲ୍ଗୁର ଯନ୍ତ୍ରଣା ? ଗୋଡ଼ ହାତ ଯେମିତି ଶିଥିଳ ହୋଇ ଆସୁଛି । ମାର୍ଗଶିର ସକାଳର ନରମ ପଶପଶ ଶାନ୍ତଦେହ ଥରୁଛି, ହୁଏତ ଅନନ୍ଦିତା ବାରଣ କରିବନି । ତା' ଭିତରେ ସୁପ୍ତ ଆଗ୍ନେୟଗିରି ହୁଏତ ଜୀବନ୍ତ ହୋଇ ଉଠିପାରେ । ସେ ବି ହୁଏତ ଉଚ୍ଛ୍ୱଳ ଅଶାନ୍ତ ସମୁଦ୍ର ପାଲଟି ଯାଇ ପାରେ । ଗୋଟିଏ ଶ୍ରେଷ୍ଠ ନଦୀର ଆବେଗ ନେଇ ଅମରେଣ ତା' ସହିତ ମିଶି ଏକାକାର ହୋଇ ଯାଇପାରେ । କିନ୍ତୁ—ଅମରେଣ ପାରୁନାହିଁ—

ଦୁର୍ବଳ ହୋଇ ପଡ଼ୁଛି । ପ୍ରତି ଆଗରେ ଭାସିଉଠୁଛି ଅନିନ୍ଦିତାର ସ୍ନିଗ୍ଧ ସଜଳ ମୂର୍ତ୍ତି । କରୁଣ ଆକୁତି, ପାଦଧରି ଆକୁଳ ନିବେଦନ କରିବାର ଅସହାୟ ଦୃଶ୍ୟ । ଅମରେଶର ସାନ ଭଉଣୀ ସୁକାନ୍ତିର କଲେଜ୍ ମେଟ୍ ଅନିନ୍ଦିତା । ଥରେ କି ଦୁଇଥର ସୁକାନ୍ତି ସହିତ ଆସିଛି ଅମରେଶ ଘରକୁ । ସେଇ ଯାହା ସାମାନ୍ୟ ପରିଚୟ । ବେଳେ ବେଳେ ସୁକାନ୍ତି ଅନିନ୍ଦିତା କଥା ଅମରେଶଙ୍କୁ କହେ—ଖୁବ୍ ଭଲ ଝିଅ । ଭଲ ପଢେ । ଭଲଗୀତ ଗାଏ ବାର୍ଷିକୋତ୍ସବରେ ମୁଖ୍ୟ ନାୟିକା ଭୂମିକାରେ ପ୍ରଥମ ପୁରସ୍କାର ପାଇଛି ।

ସେ ପ୍ରାୟ ବର୍ଷେ ତଳର ଘଟଣା । ଏ ଭିତରେ ସୁକାନ୍ତି ଆପଣାର ଘର ସଜାଡ଼ି ଦୁଇଟା ପିଲାର ମାଆ ହୋଇ ସାରିଲଣି । ତେଣୁ ଅଫିସ୍‌ରେ ସେଦିନ ହଠାତ୍ ଅନିନ୍ଦିତାକୁ ଦେଖି ଅମରେଶ୍ ମୋଟେ ଚିହ୍ନି ପାରିଲା ନାହିଁ । ବାଧ୍ୟ ହୋଇ ଅତୀତର ସ୍ମୃତି ସ୍ମରଣ କରି ପରିଚୟ ଦେଇ ଥିଲା ଅନିନ୍ଦିତା ।

—ହଠାତ୍ କୁଆଡ଼େ ଆସିଲ ? ପ୍ରଶ୍ନ କଲା ଅମରେଶ,

—ଗୋଟିଏ ଜରୁରୀ କାମରେ ଆସିଛି ଆପଣଙ୍କ ପାଖକୁ ମୋତେ ସାହାଯ୍ୟ ନକଲେ ...... ବିନମ୍ର କଣ୍ଠରେ ଉତ୍ତର ଦେଇଥିଲା ଅନିନ୍ଦିତା ।

—କ'ଣ କୁହ ?

—ନା ଅଫିସରେ ନୁହେଁ, ବ୍ୟକ୍ତିଗତ , ଜରୁରୀ ନିଭୃତ ସ୍ଥାନରେ କହିବି ।

ଅନିନ୍ଦିତାର ଏମିତି କ'ଣ କଥା ଥାଇପାରେ ଯାହା ଅମରେଶକୁ ସେ ଏକାନ୍ତ ନିଭୃତ ସ୍ଥାନରେ କହିବ । ଆଶ୍ଚର୍ଯ୍ୟ ହେଲା ଅମରେଶ—ତାପରେ ଅନିନ୍ଦିତା ସହିତ ଅଫିସ୍ ଛାଡ଼ି ଅମରେଶ ବାହାରି ଆସିଥିଲା । ପାର୍କର ଏକ ନିଭୃତ ସ୍ଥାନରେ ବସି ଥିଲେ ଦୁହେଁ ।

—ଆରେ ଏ କ'ଣ ପାଦ ଛାଡ଼—ଆଶ୍ଚର୍ଯ୍ୟ ହୋଇ କହିଥିଲା ଅମରେଶ ।

—ନାହିଁ ଆପଣ କଥା ଦିଅନ୍ତୁ, ମୋତେ ସାହାଯ୍ୟ କରିବେ—ଆର୍ଦ୍ର କଣ୍ଠରେ ଅନୁନୟ କରୁଥିଲା ଅନିନ୍ଦିତା ।

—କଥା କ'ଣ ନଶୁଣି......

ତା'ପରେ ଅନିନ୍ଦିତା କହି ଚାଲିଲା—ଆପଣଙ୍କୁ ଲୁଚେଇ ଲାଭ ନାହିଁ । ତେଣୁ ସବୁ କଥା କହୁଚି ଆପଣଙ୍କୁ କୌଣସି ଦୂର ସହରର ଲଜିଂରେ ମୋ ସହିତ ଗୋଟାଏ ରାତି କଟାଇବାକୁ ପଡ଼ିବ ।

—ମାନେ ? ଚମକି ପଡ଼ିଲ ଅମରେଶ । "କ'ଣ କହୁଛ ? ଝିଅଟା ପାଗଳ ହୋଇ ଗଲଣି ବୋଧ୍ ହୁଏ ।" ଅମରେଶର ପ୍ରଶ୍ନିଳ ଆଖି ଦେଖି ବୁଝି ପାରିଲା ଅନନ୍ଦିତା ।

ଢୋକ ଢୋକ କହିଲା କିଛି ଭାବିଲେ ବୋଧ୍ ହୁଏ ।

ମୋ ମତରେ ଆପଣ ଲଜ୍‌ଂରେ ରାତି କଟାଇବେ ମୋର ସ୍ୱାମୀ ଭାବରେ । ଅନ୍ୟମାନେ ଜାଣିବେ ବିବାହପରେ ଆମେ ହନିମୁନ୍ ପାଇଁ ଫେଠାକୁ ଯାଇଛୁ ।' ନିର୍ବିକାର ଭାବରେ କହିଚାଲିଥିଲା ଅନନ୍ଦିତା ।

କଣ କହୁଛ ଅନନ୍ଦିତା । ଏହାର ମତିଭ୍ରମ ଘଟିନାହିଁ ତ ? ଦ୍ୱନ୍ଦ୍ୱର ଦୋ-ଛକରେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଚାଲି ଅମରେଶ । କି ଉତ୍ତର ସେ ଦେବ ଅନନ୍ଦିତାକୁ । କୌଣସି ଶିକ୍ଷିତା ବୟସ୍କା ସୁସ୍ଥ ମସ୍ତିଷ୍କର ଯୁବତୀ ଏକଥା ତ କହି ନ ପାରେ ।

—ପ୍ଲିଜ୍ ଆପଣ ମୋତେ ଭୁଲ ବୁଝନ୍ତୁନି ଅମରେଶ ବାବୁ । ମୁଁ ବିପଦରେ ପଡ଼ି ଆପଣଙ୍କ ପାଖକୁ ଆସିଛି । ପ୍ଲିଜ୍ ଡୋଣ୍ଟ୍ ମାଇଣ୍ଡ୍ । ହୋଟେଲକୁ ଯିବା ଆଗରୁ ଆମର କୋର୍ଟରେ ମ୍ୟାରେଜ ହୋଇ ଯିବ । ଅବଶ୍ୟ ଏ ସବୁ ଫଲ୍‌ସ୍ । ନିର୍ବିକାର ଭାବରେ ଅନନ୍ଦିତା କହି ଚାଲିଛି ।

ଅମରେଶ୍ ଏସବୁ କିଛି ବୁଝି ପାରୁନି । ବୁଢ଼ିଆଣି ଜାଲ ଭିତରେ ଅସହାୟ ମାଛିଟିଏ ପରି ସେ ଯେମିତି ଛନ୍ଦିହୋଇ ଯାଉଛି । ମୁକୁଳିବାର ଉପାୟ ନାହିଁ । ନିର୍ବୋଧ ପରି ଅନନ୍ଦିତା ମୁହଁକୁ ଚାହିଁଛି କେବଳ ସେ ।

—ମୁଁ ଯାହା ସବୁ କହିଲି ସବୁ ହେବ ପୁଣି କିଛି ହେବନି—

ତଳକୁ ମୁହଁ ପୋତି ଅନନ୍ଦିତା କହୁଛି ।

ମାନେ ?

—ମାନେ—କେବଳ କାଗଜପତ୍ରରେ ଆପଣ ଦିନକପାଇଁ ମୋର ସ୍ୱାମୀ ହେବେ, ବାସ୍ତବରେ ଆମ ଭିତରେ କିଛି ସମ୍ପର୍କ ନାହିଁ—

ଏସବୁ ମୁଁ କିଛି ବୁଝି ପାରୁନି ।

କୁଣ୍ଠିତ ସ୍ୱରରେ କହିଲା ଅମରେଶ ।

—ଆପଣଙ୍କ ଛଡ଼ା ମୋତେ ଏ ବିପଦରେ ଅନ୍ୟ କେହି ସାହାଯ୍ୟ କରି ପାରିବେନି । କାରଣ, ମୁଁ ଜାଣେ, ଆପଣ ବେଶ୍ ଭଦ୍ର, ଶାନ୍ତ, ଶିକ୍ଷିତ ବ୍ୟକ୍ତି ଆଉ

—ଢୋକ ଢୋକିଲା ଅନନ୍ଦିତା ।

ଆଉ ପ୍ରଶ୍ନ କଲା ଅମରେଶ ।
ଆଉ ଆପଣ ଅବିବାହିତ ।

କିନ୍ତୁ ଏତେ ବଡ଼ ଜଟିଳ ବିଷୟ ଟିଏ ହଠାତ୍ କାହିଁକି ତୁମେ ସିଦ୍ଧାନ୍ତ ନେଲ ? ପ୍ରଶ୍ନ କଲେ ଅମରେଶ ।

ମୁଁ ଯେଉଁ କମ୍ପାନୀରେ ଚାକିରୀ କରେ ଅନିରୁଦ୍ଧ ସାମନ୍ତ ସେଇଠି ପର୍ସୋନାଲ ଅଫିସର ଅଛନ୍ତି । ସେ ବିବାହିତ । ତିନୋଟି ସନ୍ତାନର ବାପା । ବୟସବି ବେଶ୍ ହେଲାଣି । ତେବେ ଆମ ଭିତରେ ଭଲପାଇବା ସମ୍ପର୍କ ଅଛି, ଆମେ ପରସ୍ପରକୁ ଭଲ ପାଉ । ତେଣେ ବିବାହ କରି ପାରିବୁନି ।—

କାହିଁକି ?

ତାଙ୍କ ମୋ ଭିତରେ ତାରତମ୍ୟ ବେଶୀ । ତା'ଛଡ଼ା ତାଙ୍କ ସ୍ତ୍ରୀ ଜଣେ ମାନସିକ ରୋଗୀ । ବିବାହ କଥା ଶୁଣିଲେ ସେ ଆତ୍ମହତ୍ୟା କରି ପାରନ୍ତି ବା ଅଘଟଣ କିଛି ଘଟାଇ ପାରନ୍ତି । ତେଣୁ ସେ ଭୟ କରୁଛନ୍ତି । ଆଉ ମୁଁ ତାଙ୍କୁ ଛାଡ଼ି ବି ପାରିବିନି । ରୁଦ୍ଧ କଣ୍ଠରେ କହିଲା ଅନନ୍ଦିତା ।

ଦୀର୍ଘଶ୍ୱାସ ଛାଡ଼ିଲା ଅମରେଶ ।

ଏଇ କାରଣରୁ କମ୍ପାନୀର କର୍ମଚାରୀମାନଙ୍କ ମଧ୍ୟରେ ସନ୍ଦେହ ଓ ଉତ୍ତେଜନା ସୃଷ୍ଟି ହୋଇଛି । କମ୍ପାନୀର ଜଣେ ଦୁଇଜଣ ବୟସ୍କ କର୍ମଚାରୀ ମୋର ଅନ୍ୟତ୍ର ବିବାହ ପାଇଁ ପ୍ରସ୍ତାବ ଆଣିଥିଲେ । ମୁଁ ସିଧା ଅନ୍ୟାନ୍ୟ କାରଣ ଦର୍ଶାଇ ମନାକରି ଦେଇଥିଲି । ହେଲେ ଏବେ ଏମ୍. ଡ଼ି.ଙ୍କ କାନକୁ କଥା ଗଲାଣି । ହୁଏତ ଆମଭିତରୁ କାହାର ଚାକିରି ଯାଇପାରେ । ତେଣୁ ଅନିରୁଦ୍ଧ ବାବୁଙ୍କ ସହିତ ମୋ ସମ୍ପର୍କ ନେଇ ଯେପରି କେହି କିଛି ନ ଭାବିବେ ସେଥିପାଇଁ ମୋତେ ବିବାହିତା ବୋଲି ପ୍ରମାଣ ଦେବାକୁ ହେବ । ଆପଣ ଯଦି ମୋତେ ସାହାଯ୍ୟ ନକରନ୍ତି ମୁଁ ବାଧ୍ୟହେବି ସୁଇସାଇଡ୍ କରିବାକୁ ।

ଅମରେଶ ଭାବୁଥିଲା କହିଦେବ—ଅନନ୍ଦିତା ତୁମେ ଯଦି ଆତ୍ମହତ୍ୟା କର ତେବେ ଅନିରୁଦ୍ଧ ବାବୁଙ୍କର ହୋଇ ସବୁଦିନତ ରହି ପାରିବନି ।—ହେଲେ କିଛି ନ କହି ଛେପଢୋକି କଥା ଦୋହରାଇଲା ଅମରେଶ ।

ଗୋଟାଏ ଚରିତ୍ରକୁ ନିର୍ମଳ ରଖିବାକୁ ଯାଇ ଆଉ ଗୋଟେ ବାହାର ଆ କଳଙ୍କକୁ ମୁଣ୍ଡରେ ବୋହିବାକୁ ଚାହୁଁ ଅନନ୍ଦିତା ! ସେଥିରେ ତୁମର ବୈଶିଷ୍ଟ୍ୟ ହୋଇପାରେ ।

Digitized by srujanika@gmail.com

ଅନିରୁଦ୍ଧଙ୍କୁ ପାଇବାପାଇଁ ମୁଁ ଯେ କୌଣସି କଳଙ୍କ ଅକୁଣ୍ଠିତ ଭାବରେ ଗ୍ରହଣ କରି ପାଇବି ଅମରେଶ ବାବୁ ।

—କିନ୍ତୁ ଏଥିରେ ମୋର ମଧ୍ୟ ଆତ୍ମସମ୍ମାନ ଇଜ୍ଜତ୍, ଭୂନିଅନ୍ଧ କଳଙ୍କିତ ହେବ । ସେଥିପାଇଁ...

ମୁଁ ଜାଣେ ଅମରେଶ ବାବୁ । ଗୋଟାଏ ରାତିର ଘଟଣା ମାତ୍ର । ଆଉ ଆପଣଙ୍କପାଇଁ ମୁଁ କେବଳ କାଗଜର ବୋହୂ ଆପଣଙ୍କ ଘରେ ଏବଂସ୍ୱପ୍ନରେ ଆଉ କେହି ଜାଣିବେନି । ମୁଁ କଥା ଦେଉଛି । ଆପଣ ମୋତେ ଦୟାକରି ବଞ୍ଚାନ୍ତୁ ।''

ଅମରେଶ ନିର୍ବାକ ନିସ୍ପନ୍ଦ । ଯେମିତି ଜଡ଼ ପାଲଟି ଯାଇଛି । ବେଡ଼୍‌କୁ ଆସି ଚିତ୍‌ହୋଇ ଶୋଇଗଲା । ଅଶାନ୍ତ ଉପଗ୍ରହ ପରି ମହାକାଶ ଗ୍ରୁଡ଼ି ସେ ଯେମିତି ଛୁଟି ଚାଲିଚି ତଳକୁ ତଳକୁ ଅନେକ ତଳକୁ । ହୁଏତ ଏମିତି ଧାଇଁବାରେ ସେ ନିଃଶେଷ ହୋଇଯିବ ମହାଶୂନ୍ୟରେ । ସାରାରାତି ସେ ଶୋଇ ପାରିନି । ତାର ମନେ ହୋଇଛି ଏକ ଅପହୃତ ଯାତ୍ରୀବାହୀ ବିମାନ ଭିତରେ ସତେ ଯେମିତି ଏଇ ଅନିର୍ଦ୍ଦିଷ୍ଟ କାଳ ଅଟକି ଯାଇଛି ଏକ ଅନିଶ୍ଚିତ ମୁହୂର୍ତ୍ତିର ଶୀକାର ହୋଇ ଯାଇଛି । ଜୀବନ-ମୃତ୍ୟୁର ସୀମାରେଖାରେ ସେ ଆସି ଛିଡ଼ାହୋଇଛି । ହୁଏତ ଯେକୌଣସି ମୁହୂର୍ତ୍ତିରେ ନିଃଶେଷ ହୋଇ ଯାଇ ପାରେ ।

ଶ୍ୱାସରୁଦ୍ଧ ହୋଇଉଠୁଛି । ଆଖିବୁଜିବାକୁ ଚେଷ୍ଟା କରୁଛି ଅମରେଶ ।

ଅମରେଶ ଆଖି ଖୋଲି ଚାହିଁଲା ଅନିନ୍ଦିତା ମୁହଁକୁ । ସ୍ନାନ ସାରି ପ୍ରସାଧନରେ ସଜେଇ ନେଇଛି । ଦେହରେ ସେହି ଲାଲ୍‌ଶାଢ଼ୀ । କକ୍ଷରେ ବାନ୍ଧି ରଜନୀଗନ୍ଧାର ସ୍ତବକ । ମୁଣ୍ଡରେ ସିନ୍ଦୂରଟୋପା । ଏ ବେଶରେ ଖୁବ୍ ସୁନ୍ଦର ଦିଶୁଚି ଅନିନ୍ଦିତା ।

—ସାରାରାତି ବୋଧହୁଏ ଆପଣ ଶୋଇ ନାହାନ୍ତି । ଅଯଥାରେ କଷ୍ଟଦେଲି । କ୍ଷମାକରିବେ । ଏବେ ସକାଳ ଟିକେ ଉଠନ୍ତୁ । ମୋତେ ସାତଟାର ଏକ୍‌ସପ୍ରେସରେ ଫେରିବାକୁ ହେବ । ହୁଏତ ଆପଣଙ୍କ ସହିତ ମୋର ଏଇଟା ଶେଷ ଦେଖା । ଆପଣଙ୍କ ସାହାଯ୍ୟ ମୁଁ ଭୁଲି ପାରିବିନି । ଅମରେଶ ଯେମିତି କିଛି ବୁଝିପାରୁନି । ହିପ୍ନୋଟାଇଜ୍ ହେଲାପରି ସେ ବେଡ଼୍ ଛାଡ଼ି ଉଠି ଛିଡ଼ା ହେଉଛି ଝରକା ପାଖରେ । ଅଶାନ୍ତ ଉତ୍ତାଳ ସମୁଦ୍ରକୁ ଦେଖୁଛି । ଦେଖୁଛି ଅସଫଳ ଇଚ୍ଛାର ଢେଉମାନଙ୍କ ଅସହାୟ ଭାବରେ ପୁଣି କେମିତି ଫେରିଯାଉଛନ୍ତି ।

———



# କପୋତୀର ପ୍ରତିଶ୍ରୁତି

ମନଜ୍ୟୋତ୍ସ୍ନା ସାମଲ

ଯେତେବେଳେ ସାରା ଦୁନିଆଁରେ ଫଗୁଣର ସମାରୋହ, ବସନ୍ତର ଜୁଆର । ସେତେବେଳେ କେତକୀ ଜୀବନରେ କେବଳ ଗ୍ରୀଷ୍ମ ଋତୁ । ପଚିଶିଟା ନିଦାଘର ଦୁଃଖ, ଦୈନ୍ୟ ଓ ନିର୍ଯାତନାର ରୌଦ୍ରତାପରେ ଅହରହରେ ଦେହ ମନରେ ସବୁଜିମା ହରାଇ କେତକୀ ସାଜିଛି ସର୍ବହରା, ଅଥଚ ବର୍ଷିକ ତଳେ ଅଗନା ଅଗନି ବଣ ରାଇଜର ଅପରିଚ୍ଛନ୍ନ ବସ୍ତିରେ ସେତ ଥିଲା ଝଲକାଏ ମଉସୁମୀ ବାଆ--କେଉଁଏ ସୁରକ୍ଷିତ ମଳୟ ଓଠରେ । ପାହାଡ଼ ଝରଣାର ଖିଲ ଖିଲ ହସ । ଜଙ୍ଗଲ ସାରା ଘୂରି ବୁଲୁଥିଲା, ଲଗାମଛଡ଼ା ପ୍ରଜାପତିଟିଏ ଭଳି । ଦିନ ଅଦିନ ବର୍ଷାରେ ଓଦା ହୋଇ ବଡ଼ ପାଟିରେ ଗୀତ ଗାଏ । ପାଦରେ ଜଙ୍ଗଲୀ ଅଟହ୍ଲା ଲତା ବାନ୍ଧି ନାଚେ । ବସ୍ତିର ଅନ୍ୟ ଝିଅମାନଙ୍କ ଅପେକ୍ଷା କେତକୀ ଥିଲା ବେଶି ଚଞ୍ଚଳା, ଉଚ୍ଛଳା, ଆଉ ସ୍ୱାଧୀନଚେତା । କାରଣ ତା'କୁ ଧାଡ଼ିଏ ପଦେ କହିବାକୁ ତା'ର କେହି ନ ଥିଲେ । ସେ ଯେତେବେଳେ ଥିଲା ସାତବର୍ଷର କଅଁଳିଆ ଲତାଟିଏ ତା'ର ମା' ଚାଲିଗଲା ଆରପାରିକୁ, ତା ପରଠୁ ବାପଟା ତା'ର ମଦ ହାଣ୍ଡିଆ ପିଇ ପିଇ ମା' ପଛେ ପଛେ ସେ ବି ଗଲା । ତା ପରଠୁ କେତକୀ ତା' ବଣ ରାଇଜରେ ହେଲା ଅସହାୟା । ଝୁବ୍ ଏକା । ଆହା କହିବାକୁ ଆଉ କେହି ନାହିଁ । ତଥାପି କେତକୀ ସବୁବେଳେ ହସ ହସ । ଭାରି ଫୂର୍ତ୍ତି । ଜଙ୍ଗଲର ଫଳମୂଳ ଖାଏ । ଝରଣାର ପାଣି ପିଏ । ତା' ମନକୁ ଦୁଃଖ କେବେ ଛୁଇଁ ନାହିଁ । ଟାଙ୍ଗରା ଭୂଇଁରେ ମେଘ ଅସରା ପରି ସେ କେବେ କାନ୍ଦିନି । କେବଳ ସେହିଦିନ ଝୁବ୍ ବଡ଼ ପାଟି କରି କାନ୍ଦିଥିଲା, ପାହାଡ଼ର ପଥର ସନ୍ଧିରେ ତା' ଖିଲ ଖିଲ ହସର ପ୍ରତିଧ୍ୱନି ବଦଳରେ । ସେ ଦିନ ତା' ବୁକୁଫଟା କାନ୍ଦଣାର ପ୍ରତିଧ୍ୱନି ସୃଷ୍ଟି ହୋଇଥିଲା, ଯେଉଁ ଦିନ ସପନାକୁ ଜଙ୍ଗଲରୁ ବାଘ ଟାଣି ନେଇଥିଲା । ସେ ଦିନ ତା' କାନ୍ଦଣା ଲହରରେ କେତକୀ କହିଥିଲା—ସପନା ! ତୁ ଫେରିଆ, ତୁ ପରା ମତେ ବାହା କରି ନବୁ, ତୁ ପରା ମୋ ବା' ପାଖେ ଖୋଲା ଟଙ୍କା ବାନ୍ଧିଛୁ । ଆଗରେ ଚଇତ ପରବ ଆସୁଛି । ଏ ସପନା ! ମତେ ପରା ସେଦିନ ତୁ ତୋ ଘରକୁ ଟାଣି ନବୁ । ସେ ଦିନ କେତକୀର ମହୁଲିଆ ମନଟା ଫିକା ପଡ଼ିଯାଇଥିଲା । ତାପରଠାରୁ

ନାଚି ନାଚି ସପନାକୁ ଖୋଜେ । ମାଳତୀ, ସେବତୀ ବଣରେ, ଝରଣାର କଳା ମୁଚ୍ ମୁଚ୍ ଗୁଡରେ , ଯୋଉଠି ସପନା ତାକୁ ଗୁଡ ଉପରକୁ ଟାଣି ନଏ । ମାଳତୀ ଫୁଲରୁ ମେଞ୍ଚାଏ ତା ଅଳସ୍ୱ ଖୋସାରେ ଖୋସି ଦଏ, ଆଉ କହେ, ତୁ ମୋ ଘରଣୀ ହେଲେ ତତେ ସହରକୁ ବୁଲେଇ ନେବ । ନାଲି କୁମ୍ପ ଧକା ଲୁଗା କିଣି ଦେବ । ସପନା କଲ୍ଲୁ ତାକଥା ଖେଳିଲନ । ସେଦନ ଠାରୁ କେତକୀ ଓଠର ଆଉ ହସ ଝେନାହିଁ । ଅ.ଖି ଆଉ ଛଲ ଛଲ, ଚଳାଚଞ୍ଚଳା ହରଣୀର ଆଖି ପର ଚଞ୍ଚଳ ହେଉ ନାହିଁ । କେତକୀର ଉଦାସିଆ ଭାବ ଦେଖି ବନ୍ଧୁ ର ଶୁକଦାଦା କେବଳ ଦୀର୍ଘଶ୍ୱାସ ଟିଏ ଟାଣେ, କୋଉଠି କାମରେ ଲଗେଇ ଦେଲେ ପିଲାଟାର ମନ ବଦଳି ଯିବ । ଏଇ କଥା ଭାବି ଶୁକଦାଦା ଦନେ କେତକୀକୁ କହିଲା—କେତେ ଦନ ଆଉ ଏମିତ ବୁଲୁଲୋ ବାଇଆଣୀ ! ଗଛର ଫଳ, ଝରଣାର ପାଣି କ'ଣ ତତେ ସବୁଦନ ମିଳୁଥିବ ? ଏବେ କାମ ଧନ୍ଦାରେ ମନ ଦେ । ଶୁକଦାଦା କଥାରେ କେତକୀ ଖିଲ୍ ଖିଲ୍ ହୋଇ ହସି ଉଠିବା ବଦଳରେ ତା ଗୁଡ ଉପରେ ତଳ ପଡ଼ି କହିଁ କହିଁ ହୋଇ କାନ୍ଦ ଉଠିଥିଲ । ସେ କାନ୍ଦରେ ଥିଲା, ଅସହାୟତା, ସଙ୍କୋ, ନିଷ୍କପଟ ଓ ଜଙ୍ଗଲୀ ମନ ଅବ୍ୟକ୍ତ ବେଦନା ।

ପ୍ରଥମେ ଶୁକଦାଦା ମୁହଁରୁ ଡାକବଙ୍ଗଳାର ବାବୁମାନଙ୍କର କାମ କରିବା କଥା ଶୁଣି, କେତକୀ ଭୟରେ ଶିହରି ଉଠିଥିଲ । କାରଣ ତା ବଉଳ ଝୁମୁରୁ ପାଖରୁ ଶୁଣିଥିଲ ବାବୁମାନଙ୍କର ବାଘୁଆ ମନ କଥା । ତଥାପି ମନରେ ସାହସ ବାନ୍ଧିଥିଲ । ଶୁକଦାଦା ଉପରେ ତାର ବେଶ୍ ଭରସା ଥିଲ । ତାପରେ ଠାରୁ ବଙ୍ଗଳାକୁ ଆସିଥିବା ନୂଆ ବାବୁଙ୍କର ବାସନ ମାଜେ, ପାଣି ଆଣେ, କିଛିଦନ ପରେ କେତକୀ ଅନୁଭବ କଲି, ଏ ବାବୁ ଭାର ଭଲ ଲୋକ । ଅନ୍ୟବାବୁମାନେ ଯେମିତ ଝୁମୁରୁକୁ କଣେଇଁ କଣେଇଁ ଅନାନ୍ତି । ଏ ବାବୁ ସେମିତ ନୁହନ୍ତି । ଯୌବନ କଅଁଳୁ ଥିବା ଦେହକୁହିଁ ବହଲେଇ ପାଖକୁ ଡାକନ୍ତିନ । ତେଣୁ କେତକୀ ନର୍ଭୟରେ ଚଲବୁଲ କରେ । ବାବୁ ଯେତେବେଳେ କହିଲେ ତାଙ୍କ ଘରକୁ ନେଇ ଯିବେ, ସେ ତାଙ୍କ ଘରେ ରହିବ । ସେତେବେଳେ ସହର ନାଁଟା ଶୁଣି କେତକୀ ଆନନ୍ଦରେ କୁଦ୍ଧୁଳ ଉଠିଥିଲ । ଆଗରୁ ଯାହା ଖାଲି ସହର ନାଁ ଟା ଶୁଣିଥିଲ । ସହରୀ ବାବୁମାନେ ବଙ୍ଗଳାକୁ ଆସିଲେ ସାରା ଜଙ୍ଗଲଟା ମହକ ଉଠେ । ସେ ସହରରେ ନିଶ୍ଚୟ ମଣ୍ଡୀ ଚମ୍ପା ବାସନାଠାରୁ ଭଲ ବାସନା ଥିବ । ଆଜି ବାବୁ କହୁଛନ୍ତି ସହରକୁ ନେଇ ଯିବେ । ସତରେ ଏ କଥା ବିଶ୍ୱାସ କରି ପାରୁ ନଥିଲ କେତକୀ । ହୁଁ ମୋର ବା ଏଠି କିଏ ଅଛି ? କାହା ପାଖରେ ରହିବ ? ଅନ୍ଧାର ଆକାଶର ଝିକମିକ ଜୁଳୁଜୁଳିଆ ପୋକ ଭଳି କେତକୀର ବାର ବର୍ଷର କଣେଇଁ ଆଖିରେ କୌତୂହଳ ଚକମିକ କରି ଉଠିଲ ।

କରି କରି ଆଖି କହିଲା—ଏବେ ଏଭଳି ନ ସଜ ନବୁଛୁ । ନାଁଟା କ'ଣ ନା କେତକୀ, ନ୍ୟାନ୍ସି··· । ବାପା ସହରରେ ନମର ଅଫିସ଼ି ଚାକିରି କାହିଁ । କେତକୀ ତାର ଆଧୁନିକ ଶିକ୍ଷା କରୁ ବୁଝିପାରିଲାନି । ବଙ୍ଗ ଖୁସିରେ କହି ପକାଇଲା—ଦେଇ ! ମୁଁ "ସାବୁନ୍ ଲଗେଇ ଗାଧୋଇଲେ ଅଣ୍ଡ ଗଙ୍ଗ କରିବିନି । ନାକ ଦୂରା ଫୁଲେଇ ଲୁନ କହିଲା—ଦେଖିଲ ମାମି, ଆମ୍ଭ ଅମ୍ଭ କେମିତି କଥାବାର୍ତ୍ତା କରୁଛୁ । ଷଣ ମାହାତ ? ଆଉ କ'ଣ କହୁ ଆସୁଥିଲ, ବାବୁଙ୍କ ପୁଅ ମାନବାବୁ ଆକଟ କରିବାରୁ ଚୁପ୍ ରହିଗଲା । ମା କିଛି ନ କହି ଦୁମ୍ ଦୁମ୍ ହୋଇ ଘର ଭିତରକୁ ଚାଲିଗଲେ । ମାନବାବୁ କେତକୀଙ୍କ ପାଉଡ଼ର ସ୍ନୋ, କ୍ରିମ୍ ଆଉ ସାବୁନ ଦେଲେ । ବନ୍ଧେଇ ଦେଲେ କେମିତି କ'ଣ କରିବାକୁ କେତକୀ ସହରୀ ହେବାର ଲାଳସାରେ ଖୁବ୍ ଶୀଘ୍ର ନିଜକୁ ବଦଳାଇ ଦେଲା । ସବୁ କାମ କରି ଶିଖିଲା, ରୂପ ରଙ୍ଗ ସବୁ ବଦଳିଗଲା ।

କେତକୀର ଏ ନୂଆ ରୂପ ଦେଖି ମୁଁ ଟାଙ୍ଗି ଗାମ ନାନା ପାଟିରୁ ଲାଳ ବୁହାଏ, ଖାଁ ଖାଁ ହେଇ ବାଉଁରେଇ ପାଖକୁ ଡାକେ, ନ ଜାଣିଲା ପରି ତା ଦେହରେ ହାତ ବଳେଇ ଦିଏ । ବାହାନେଇ ପାଖକୁ ଡାକେ । କେତକୀ ଧରା ନଦେଲେ ତା ରାଗ ବଢ଼ିଯାଏ, ଜାଣି ଜାଣି ଝାଡୁ କଡ଼େଇ ଜଳା କରି ପକାଇ ଦିଏ । ଗଦା ଗଦା ଅଇଁଠା ବାସନ ମାଜିବାକୁ ଦିଏ, ମା'ଙ୍କ ଆଗରେ ମିଛ ମିଛ କହି ତା ପ୍ରତି ମା'ଙ୍କ ମନରେ ଘୃଣା ଭାବ ବଢ଼ାଇ ଦିଏ । ସବୁ କାମ ସାରି କେତକୀ ଯେତେବେଳେ ଖାଇବାକୁ ଆସେ, ମା' ପୁଅ ଖିଆଁ ଅଇଁଠା ଭାତ ତରକାରୀ ବାଢ଼ି ଦିଅନ୍ତି । ପ୍ରଥମ ଦିନ କେତକୀ ଅଇଁଠା ଖାଇବନି ବୋଲି ମନା କରି ଦେଲା । ମନେ ମନେ କହିଲା—ବାବୁ ଘର କୁକୁର ବି ଅଇଁଠା ଖାଏ ନା, ତା ପାଇଁ ଅଲଗା ମାଂସ ରନ୍ଧାଯାଏ, ମୁଁ କ'ଣ କୁକୁରଠାରୁ ହୀନ ? ଆଖିରୁ ଝର ଝର ଲୁହ ଝରି ପଡ଼ିଲା । ଆଖି ଆଗରେ ନାଚି ଉଠିଲା ବଣର ଫଳ ମୂଳ । ମନେ ପଡ଼ିଲା, ଗଛଲତାଙ୍କର ସମବେଦନା । ପଶୁପକ୍ଷୀଙ୍କର ସ୍ନେହ କୋଳ ଟହୁଆ କଥା, ମା ଗର୍ଜି ଉଠିଲେ—ଦେଖ ମ ! ଏ ଟୋକୀର ବଡ଼ପଣ, ଜଙ୍ଗଲରେ ବୁଲୁଥିଲା । ଆଉ ଆଜି କହୁଛି ଅଇଁଠା ଖାଇବନି, ନ ଖା'ମ, କେତେ ଦିନ ଉପାସ ରହିବୁ ରହ, ପେଟ ପୋଡ଼ିଗଲେ ନର୍ଦ୍ଦମାର ପୋକ ଗୋଟେଇ ଖାଇବୁ । ଗ୍ରେଟ୍ ମୁହଁରେ ବଡ଼ କଥା, ତୋ ପାଇଁ କ'ଣ ଦହିଙ୍କ ପରି ଆଉ ବାଢ଼ି ଦେବ ? ଭୟରେ କେତକୀ ଅଇଁଠା ଖାଇବାକୁ ବାଧ୍ୟ ହୁଏ ।

ସତରେ ଜୀବନର ମୋହ ସଂସାରରେ ସବୁଠାରୁ ବଡ଼ ମୋହ । ତା ପାଇଁ ଆଜିକୁ ଆଉ କି ସୁଖ ଅଛି ? କିଛି ନ ବୁଝି ନ ଜାଣି ମଧ୍ୟ କେତକୀ ବଞ୍ଚି ରହିବାକୁ ଚାହେଁ, ତା ଜୀବନର ମୂଲ୍ୟ କ'ଣ ? ସୁଖ ତ ଛାଡ଼ି ଆସିଛି ବହୁତ ପଛରେ ।

ଜଙ୍ଗଲୀ ବାପର ମୁହଁରେ । ଆଜି ଆଉ କାହିଁକି ସ୍ନେହ ଆଦର ଖୋଜିବ, ପୁଣି ଖୋଜିବ, ଧନର ନିର୍ଘଣ୍ଟ ଖଞ୍ଜଣି ପରେ ଆଉ୍ରଣଥିବା ହୋଇ ଅଇଁଠା ଖାଇ ଖାଉ କେତକୀ ଆଖିର ଅମାନିଆ ଅଶ୍ରୁଧାରା ଲୁହଭୁଡ଼ା ଭାତ ଥାଳିରେ ଝରି ପଡ଼ୁଥାଏ, ଛୋଟ ପେଟରେ ଲୁହ ମିଶା ଅଇଁଠା ଭାତ ତାକୁ ଲାଗୁଥାଏ ଅମୃତ ପରି । କେତକୀକୁ କାନ୍ଦି କାନ୍ଦି ଖାଉ ଥିବାର ଦେଖି, ସାନବାବୁ କହୁଲେ, ମମି ! ତାଙ୍କୁ ଭଲ ଭାତ ଟିକା ଦେଲେ ଅସୁବିଧା କ'ଣ ? ପିଲାଟାକୁ ଅଇଁଠା ଖାଇବାକୁ ଏତେ ବାଧ୍ୟ କରୁଛ କାହିଁକି ? ମା ରାଗି କରି କହିଲେ—ତୋର ଏଥିରେ ମୁଣ୍ଡ ଖେଳେଇବା ଦରକାର ନାହିଁ । ତୁ ମତେ ଉପଦେଶ ଦଉ ? ସାନବାବୁଙ୍କ ପ୍ରଥମ ପ୍ରତିବାଦରେ କେତେକୀ ସତେ ଯେମିତି ଉଚ୍ଛୁଳା ନଦୀରେ କୁଟା ଖିଏର ଆଶ୍ରୟ ପାଇଲା, ମନ ତାର ଆନନ୍ଦରେ ଭରିଗଲା, ସେହି ମୁହୂର୍ତ୍ତରେ ସେ ଅନୁଭବ କଲା, ବଡ଼ବାବୁଙ୍କ ବଦଳରେ ଏ ଘରେ ତା ଆତ୍ମା ଚିହ୍ନିଲା ପରି ଆଉ ଜଣେ ବି ଅଛନ୍ତି ।

ଘରେ ଖିରି ପୁରି ଭାସି ଗଲେ ବି କେତକୀ ଭାଗରେ ସେହି ଚକଟା ଚକଟି ଅଇଁଠା, ଖିରି ପୁରିର ଅଲଗା ସ୍ୱାଦ ସେ ବାରି ପାରେ ନାହିଁ । ସାନବାବୁ ଏ ସବୁ ସହିପାରନ୍ତି ନି କି ମୁହଁ ଖୋଲି ପ୍ରତିବାଦ କରି ପାରନ୍ତି ନାହିଁ । କେବଳ ଖାଇଲା ବେଳେ ଭଲ ଭଲ ଜିନିଷ ମାଗି ନିଜ ଥାଳିରେ ଛାଡ଼ି ଯାଆନ୍ତି । ଇଚ୍ଛା, ଅଇଁଠା ହେଉ ପଛେ କେତକୀ ଭାଗରେ କିଛି ଭଲ ଜିନିଷ ପଡ଼ୁ, କିନ୍ତୁ ମା' ସେ ଥାଳିର ଭଲ ଭଲ ଜିନିଷ କାଢ଼ି ସେହି ଚକଟା ଅଇଁଠାକୁ କେତକୀକୁ ହିଁ ଦଅନ୍ତି । ସେ ବୁଝିପାରେ ନା, କୁନି ଦେଇର ମଧ୍ୟ ତା ଉପରେ ଏତେ ରାଗ କାହିଁକି ? ତାକୁ ଖୁସି କରିବାକୁ କେତକୀ ତାଙ୍କ ଫ୍ରକ୍ ଭଲ କରି ସଫା କରେ । ତାଙ୍କ ଶୋଇବା ଘର ପରିଷ୍କାର କରେ । କିନ୍ତୁ କେତକୀ ଦେଖେ—ବେଳେ ବେଳେ କୁନି ଦେଇ ତାକୁ ଦେଖି ପୁଣି ନିଜ ଦେହକୁ ଅନାନ୍ତି । ଧୁମ୍‌ଦାମ୍ ହୋଇ ଚାଲିଯାଆନ୍ତି । ସାନବାବୁ ଖାଲି ଯାହା ଅଲଗା ସେ ଏ ସବୁ ସହି ପାରନ୍ତି ନି, ଥରେ ସମସ୍ତ ଅଜାଣତରେ ମିଠେଇଟିଏ କେତକୀ ହାତରେ ଗୁଞ୍ଜି ଦେଲେ । କେତେକୀ ସେଇଟିକୁ ନେଇ ବାଉଁଆଡ଼େ ଖାଉ ଥିବା ଅବସ୍ଥାରେ ଟୁମନାନା ଦେଖି ଦେଲା, ରାଗ ଶୁଝାଇବା ମଉକା ମିଳିଗଲା । କେତକୀର ଚୁଟି ଧରି ଘୋସାଡ଼ି ଘୋସାଡ଼ି ମା'ଙ୍କ ଆଗରେ କହିଲା—ମା ମୁଁ ଦେଖିଛି, ଆପଣ ଆର ଘରକୁ ଚାଲିବୁ । ସେ ଆପଣଙ୍କ ରୁମ୍‌ରେ ପଶି ମିଠେଇ ହାତରେ ଧରି ବାଉଁଆଡ଼କୁ ଚାଲିଗଲା ଦେଖନ୍ତୁ ହାତରେ ମିଠେଇ ଧରିଛି, ମା' ହାତରେ ଝାଡ଼ୁ ଖଣ୍ଡେ ଧରି ମନଇଚ୍ଛା କହୁଥାନ୍ତି—ହଇଲୋ ଜଙ୍ଗଲୀ ! ଏଇଟା ଜଙ୍ଗଲ ନୁହେଁ ଘର, ତୁ ଏ ଘରେ କଲା କନା ଚାଲେଇବୁ ? ସାନବାବୁ ନିଶ୍ଚଳ ହୋଇ ଛିଡ଼ା ହୋଇଥାନ୍ତି, ଭାବୁଥାନ୍ତି, ଯୋଉଠି ମଣିଷ ମଣିଷର ହୃଦୟକୁ ବୁଝି ପାରେ ନା । ସେ କ'ଣ ଘର ? ଜଙ୍ଗଲରେ ପଶୁ ପକ୍ଷୀଙ୍କର ବରଂ ହୃଦୟ ଅଛି ।

କିନ୍ତୁ ଏ ମୁଖା ତଳେ ଅଛି କେବଳ ହିଂସ୍ରତା । ମାଡରେ କେତକୀର ଦେହରୁ ରକ୍ତ ଝରୁଥାଏ । ଅରେ ହେଲେ କହିଲାନି ସାନବାବୁଙ୍କ ନାଁ । କାରଣ କେତେଥର ମା କହିଲେଣି—ଏ ପୋଡ଼ାମୁହିଁ ରୂପ ଚହଟେଇ ମୋ ପୁଅର ମୁଣ୍ଡଟାକୁ ଖରାପ କରି ଦେଲଣି । ସେ ଯୋଉ ଗୃହିଣୀ……। କେତକୀ ଅବସ୍ଥା ଦେଖି ସାନବାବୁ ପ୍ରତିବାଦ କରିପାରିଲେନି କି ନିଜ ଦୋଷ ମାନିନେଇ ପାରିଲେନି । ନିରୁପାୟ ହୋଇ ଘରୁ ବାହାରି ଚାଲିଗଲେ । ସେଦିନ ରାତିରେ କେତକୀ କିଛି ଖାଇଲାନି । ଟାଆଁସିଆ ଝାଡୁର କାଠିଗୁଡ଼ା ଦେହରେ ପଶିଯାଇ ପୋଡାଜଳା କରୁଥାଏ । ଦୁଇଟିନି ହାତ ଯାଗାରେ କେତକୀ ଶୁଏ । ଆଗକୁ ଘୁଞ୍ଚିଲେ ବଡ ବଡ ଚାଉଳ ମୁଣ୍ଡରେ ବାଜେ । ଗୋଡଟିକେ ସିଧାକଲେ ଭଙ୍ଗା ଟ୍ରଙ୍କ୍ ଗୋଡ଼ରେ ବାଜେ । ଯନ୍ତ୍ରଣାକୁ ଭୁଲିବାକୁ ଶୋଇବାକୁ ଚେଷ୍ଟାକଲା । କିନ୍ତୁ ପାରିଲାନି । ଯତେ ଯେମିତି ଦେହ ତାର ଖଣ୍ଡ ଖଣ୍ଡ ହୋଇ ଛିଡ଼ିପଡ଼ୁଛି । ଛିଣ୍ଡା କନ୍ଥାଟି ମଧ୍ୟ ପକାଇବାକୁ ତାର ବଳ ନଥିଲା । ସେମିତି ଚଟାଣରେ ଶୋଇଗଲା ।

ଆର ଘରୁ ଶୁଭୁଛି । ମା କହୁଛନ୍ତି—କୁଆଡ଼େ ଯାଇ ବୁଲି ବୁଲି ରାତି ଅଧିକୁ ଫେରିଲୁ । ଖାଇବାକୁ ଡ଼ାକିବାରୁ କ'ଣ ନା ମତେ ଭୋକ ନାହିଁ । ତୋ ମୁହଁଟା କାହିଁକି ଶୁଖି ଯାଇଛି ଶୁଣେ ? ଏତ ସାନବାବୁଙ୍କ ସ୍ୱର—କହୁଛନ୍ତି, ମୋ ସାଙ୍ଗ ଘରେ ଖାଇଦେଇ ଆସିଛି । ମତେ ଭୋକ ନାହିଁ । ତାପରେ କବାଟ ବନ୍ଦ ହେବାର ଶୁଭିଲା । କେତକୀ ଅନ୍ଧାରରେ ଶୋଇ ସ୍ପଷ୍ଟ ଦେଖିପାରୁଥିଲା ସାନବାବୁଙ୍କ ମନଟାକୁ । ଏ ଖାଇବା ମିଛ । କେବଳ ତା'ରି ଦୁଃଖରେ ସାନବାବୁ ଆଜି ଉପାସ ରହି ନିଜକୁ ଶାସ୍ତି ଦେଉଛନ୍ତି । ତା ଆଖିରୁ ଗରମ ଲୁହ ଦିଟୋପା ଝରିପଡ଼ିଲା । ବାବୁ ଟୁର୍ ରେ ଯାଇଛନ୍ତି । ସେ ଘରେ ଥିଲେ ଏତେ ସବୁ ଘଟି ନଥାନ୍ତା । ଏମିତି ଭାବୁ ଭାବୁ ନିଦ ଲାଗିଯାଇଛି । କାହାର ଡ଼ାକରେ ନିଦ ଭାଙ୍ଗିଗଲା । ଦେଖେତ ସାନବାବୁ ଧୀରେ ଧୀରେ ଘର ଭିତରକୁ ପଶି ଆସି କବାଟଟିକୁ ଆଉଜାଇ ଦେଉଛନ୍ତି । ଭୟରେ କେତକୀ ପାଟିରୁ କଥା ବାହାରୁନି । ସାନବାବୁ ସାଙ୍ଗରେ ଆଣିଥିବା ମଲମବଟିଟିକୁ ଲଗାଇଲେ । କହିଲେ, ମତେ କ୍ଷମା କରିଦେ କେତକୀ ! ମୋ ପାଇଁ ଆଜି ତୋର ଏ ଅବସ୍ଥା । ତାଙ୍କ ଆଖିରୁ ଲୁହ ଦିଟୋପା କେତକୀ ହାତ ଉପରେ ପଡ଼ିଗଲା । କେତକୀ ଚମକିପଡ଼ି କହିଲା—ମୋ ପାଇଁ ତମ ଆଖିରେ ଲୁହ ? ମୁଁ କ'ଣ ମରିଯାଉଛି ? ଜଙ୍ଗଲରେ ସିନା ହିଂସ୍ରକା ବାଘଟା ମୋ ସପନାକୁ ଖାଇଦେଲା । ହେଲେ ମତେ କ'ଣ ଖାଇ ପାରିଲା ? ମୋ ଭଳି କେତେ କେତକୀ ନିତି ନିତି ମରୁଛନ୍ତି । ତାଙ୍କ ପାଇଁ କିଏ ଶୋକ କରୁଛି ? ଆଉ ଆଜି ତମେ ମୋ ପାଇଁ ଦୁଃଖ କରୁଛ ? ସାନବାବୁଙ୍କ ମୁହଁରେ କେତକୀ ଦେଖିପାରୁଥିଲା ସପନାର ଛବି । ସାଙ୍ଗରେ ଆଣିଥିବା ମଲମକୁ କାନ୍ଧ କ୍ଷତ ସ୍ଥାନରେ ଲଗାଇବାକୁ ବାହାରିଲାରୁ ସଙ୍କୋଚରେ

କେତକୀ ପିଠି ଦେଖେଇ ଦେଲା । ସତେ ଯେମିତ ତା ଦେହ ସହିତ ସେ ହାତ ଦିଟା ବନ୍ଧା ପଡ଼ିଚି । ଯାନବାବୁଙ୍କ ସ୍ପର୍ଶରେ କେତକୀ ଅନୁଭବ କରୁଛି—ଏ ଯେମିତ ତା ସପନାର ହାତ । କହି ପକାଇଲା, ମୁଁ ଥରେ ଗଛରୁ ପଡ଼ି ଯାଇଥିଲି । ମୋ ସପନା ଏମିତ ମୋ ପିଠିରେ ଜଡ଼ାତେଲ ଘଷି ଦେଉଥିଲା । କେତକୀ ଦେଖିପାରୁଥିଲା ଦୂରରେ ଛିଡ଼ାହୋଇ ତାକୁ ଡ଼ାକୁ ଛି । ଆଗରେ ଚଇତ ପରବ ଆସୁ ଛି । ଆମେ ପର୍ବ ଘର କରିବା । ତୋର ପର୍ବ ମାଳତୀଫୁଲରେ ଖାଇ ହଉଥା ଲୋ କେତକୀ ! ତୁ ଆ । ନହେଲେ ମାଳତୀଫୁଲ ମଉଳି ଯିବ । କେତକୀ କହି ପକାଇଲା—ହଁ ରେ ସପନା, ମୁଁ ଯିବି, ତୋ ପାଖକୁ ଯିବି । ଯାନବାବୁ ବୁଝିପାରିଲେ ତା ସରଳ ମନର ଅକୁହା ଭାଷା । କହିଲେ, ହଁ ଲୋ କେତକୀ ! ତୁ ଫେରିଯା ପୁଣି ତୋ ସପନା କୋଳକୁ । ସପନା ସିନା ଝୁଣ୍ଡା, ମୂର୍ଖ ଥିଲା, କିନ୍ତୁ ତା'ର ମନପରି ମନଟିଏ ଥିଲା । ଏ ସହରର ଚକମିକ ଭେକ ତଳେ ଅଛି କେବଳ ପଶୁତ୍ୱ । ଦୟା ନାହିଁ, ମାୟା ନାହିଁ, ହୃଦୟ ନାହିଁ । ତୋ ଭଳି ସରଳା, ନିରୀହା ଝିଅକୁ ସପନାର ପ୍ରେତାତ୍ମା ଆନନ୍ଦ ଦେଇ ପାରିବ କିନ୍ତୁ ଏ ସହରିଆମାନେ ତତେ ବଞ୍ଚିବାକୁ ଦେବେନି । ରହ୍ ଏ ଝିଙ୍କା, କାଲି ସକାଳୁ ଉଠି ଚାଲିଯିବୁ ତୋର ବଣ ରାଇଜକୁ । ତୁ ଚିହ୍ନି ପାରିବୁନି ଏ ସଭ୍ୟ ଶିକ୍ଷିତ ମଣିଷଙ୍କୁ । ତୁ ଚାଲିଯା । ଏତିକ କହି ଥର ଥର ପାଦରେ ଯାନବାବୁ ଚାଲିଗଲେ । କେତକୀ ଭାବୁଛି—କପୋତାଟା ନିଶ୍ଚୟ ଫେରି ଆସିଥିବ କପୋତ କୋଳକୁ । ହଁ ରେ ସପନା ମୁଁ ବି ଯିବି । ପୁଣି ସେହି ଜଙ୍ଗଲୀ ମୂଡ଼ା ଦାରିବ । ଆଉ ତୁ ମାଳତୀ ପେନ୍ଥାଟିଏ ଖୋସିଦବୁ ।

—*—



# ଗୋଟିଏ ରକ୍ତାକ୍ତ ମୟୂରୀର ବୟାନ...

**ବଂଶୀଧର ରାଉତ**

ଦର୍ପଣ ଆଗରେ ଛିଡ଼ା ହୋଇ ନିଜର ପ୍ରତିବିମ୍ବ ଦେଖି ଦିଗମ୍ବର ତାଜୁବ୍ ହୋଇଗଲା । ନିଜର ଛବିକୁ ସେ ଅନେକ ଦିନ ହେଲା ଭୁଲି ଯାଇଥିଲା । ହଠାତ୍ ଆଜି ନିଜକୁ ସାମ୍ନାରେ ଦେଖିଲା ପରେ ସେ ଅନୁଭବ କଲା, ସେ ମନେ ମନେ ଯାହା ଭାବୁଛି ପ୍ରକୃତରେ ତାହା ନୁହେଁ ।

ନିଜ ପ୍ରତି ଖୁବ୍ ଲୋଭ ହେଲା ଦିଗମ୍ବରର । ଏତେଟା ଉଦାସୀନ ହେବା ତା'ର ଉଚିତ ହୋଇନି । ଏ ସବୁ କେବଳ ଅବହେଳା । ଅବଜ୍ଞା । ମଣିଷ ଜନ୍ମ ହୋଇଛି କର୍ତ୍ତବ୍ୟ କରିବାକୁ, ଏହାର ମାନେ ନୁହେଁ ନିଜକୁ ବାଜିରଖି କର୍ତ୍ତବ୍ୟର ଖେଳ କରିବା ।

ନିଜେ ଠିକ୍ ରହିଲେ ଏ ଦୁନିଆଁ ଟାବି ଠିକ୍ ରହିବ । ନିଜ ପ୍ରତି ଉଦାସୀନ ହେଲେ ବେଳେବେଳେ ଏ ଛବିଲ ଦୁନିଆଁ ବି ଅସହାୟ ହୋଇ ଉଠିବ । ଏହି ଅସହାୟତା ରୋଗର ଜୀବାଣୁ ଗୁଡ଼ାକ ଏତେ ପ୍ରବଳ ଯେ, ସେମାନଙ୍କଠୁ ନିଷ୍କୃତି ପାଇବା ମୁସ୍କିଲ ।

ଦିଗମ୍ବର ପୁଣି ଥରେ ଦର୍ପଣରେ ଚିକ୍‌କଣ ମୁହଁରେ ନିଜ ଶରୀରର ଅବିକଳ ପ୍ରତିଛବି ଦେଖି ହସି ପକେଇଲା । ସତରେ ସାବିତ୍ରୀ ଠିକ୍ କୁହେ, ସେ ହସିଲେ ଖୁବ୍ ସୁନ୍ଦର ଦିଶେ । ନୁହେଁ ?

ସାବିତ୍ରୀ କଥାକୁ ଦିଗମ୍ବର ହାଲକା ଭାବୁଥିଲା ମାତ୍ର ଆଜି ଅନୁଭବ କରୁଛି ପ୍ରକୃତରେ ସାବିତ୍ରୀ ଯାହା କହୁଥିଲା, ସତ କହୁଥିଲା । ମାତ୍ର ସାବିତ୍ରୀ କଥାକୁ ସେ ହସରେ ଉଡ଼େଇ ଦିଏ ।

ଏତେ ଦିନ ପରେ ପୁଣି ସାବିତ୍ରୀ କଥା ଭୁହାଇ ଭୁହାଇ ମନେ ପଡ଼ୁଛି ।

ଦିଗମ୍ବର ଦର୍ପଣରେ ଅନେକ ଦୂରକୁ ଆସି ପୁଣି ଦର୍ପଣକୁ ବଲବଲ ଆଖିରେ ଚାହିଁଲା । ଅବଶ୍ୟ ତାର ପ୍ରତିବିମ୍ବ ଦେଖାଯାଉଛି ମାତ୍ର ସ୍ପଷ୍ଟ ହେଉନି । ଦୂରରେ ରହିଲେ ସବୁ ଅସ୍ପଷ୍ଟ । ଝାପ୍‌ସା ଝାପ୍‌ସା ।

ଏ ଦୁନିଆଁଟା ପୁରା ଅସ୍ପଷ୍ଟ । ପାଖରେ ପଣସ୍ତାର ଆଉ ଦୂରରେ ଗ୍ରଭଗ୍ରଭଥା । ନିଜକୁ ପରୀକ୍ଷା କରିବା । ଦର୍ପଣ ଆଗରେ ଛିଡାହୋଇ ନିଜର ପ୍ରତିବିମ୍ବକୁ ଦେଖିବା । ନିଜକୁ ଅନୁଭବ କରିବା ଭଳି ଏକାକୀ କାର୍ଯ୍ୟମାନ ସହଜ । ନିଜେ ସବୁ ଦେଖି ହୁଏ ମାତ୍ର ଅନ୍ୟକୁ କିଛି ଦେଖାଇ ହୁଏନା । ନିଜେ ଅନେ ଇଭେଭିବା କଥା ଅନ୍ୟକୁ ବିଶ୍ୱାସ ହୋଇ ନ ପାରେ । ଏମିତି ସୂକ୍ଷ୍ମ କଥା ଅଛି ଯାହା ଅନ୍ୟକୁ କହି ହୁଏନି କିମ୍ବା ଦେଖାଇବାର କୌଣସି ସୁବିଧା ନାହିଁ । ନିଜେ ଜଳାଗଲେ ବି ସେହି ଜ୍ୱଳନର ବନ୍ଧୁ ବସର୍ଗ ବି କେହି ଜାଣିପାରନ୍ତି ନାହିଁ ।

ଦିଗମ୍ବର ନିଜକୁ ଖୁବ ଅସହାୟ ବୋଧକଲା । ସାବନ୍ତୀ ମନ୍ତ୍ରେ ପଡିଲେ ନିଜକୁ ବି ଭୁଲିଯାଏ ସେ । ଏମିତି ଭୁଲି ଯାଇ ଉଦାସ ହୋଇଯିବାକୁ ପ୍ରକୃତରେ ବୋଧହୁଏ ତାକୁ ଖୁବ ଭଲ ଲାଗେ । ଏଥିରୁ ସେ କିଛି ପାଏନା ମାତ୍ର କ୍ଷଣିକ ଆନନ୍ଦରେ ସେ କୃତ୍ୟ କୃତ୍ୟ ହୋଇଯାଏ ।

ତା'ର ଆନନ୍ଦ ତା'ର ଜୀବନ । ଜୀବନଟାରେ କ'ଣ ଅଛି ? ସବୁ ମିଛ, ଅସ୍ପଷ୍ଟ, ପ୍ରବଞ୍ଚନା ଓ ଆବେଗିତ । ଆଜି ଭଲତ ଭଲ, କାଲିକୁ କିଏ ପଗୁରେ ! କ୍ଷଣିକ ଆନନ୍ଦ ହିଁ ଯଥେଷ୍ଟ ।

ପୁରୁଷ ମନ ଅତ୍ୟନ୍ତ ଦଗଦ୍ଗା । ସେ ଅତି ସହଜରେ ହଜିଯାଏ ଅପରିଚିତ ଗଳିରେ ସେ ଖୋଜେ କିହିବା ପାଇଁ ଏକ ନିଛୁକ ଓ ନିର୍ଭରଯୋଗ୍ୟ ଆଶ୍ରୟ । ଯେଉଁଠି ସେହି ନିରାପଦ ଆଶ୍ରୟ ମିଳେ ପୁରୁଷ ସେଇଠି ପଇତା ପକେଇ ବ୍ରାହ୍ମଣ ସାଜି ବ୍ରାହ୍ମଣ ଭୋଜନ ସାରିଦିଏ ।

ପେଟ ପୂରିଲେ ଯାଏ । କ୍ଷୁଧାର ଉପଶମ ପାଇଁ ମଣିଷ ବା କେତେ ପାପ ନ କରେ ? ସବୁ କର୍ମ ଖାଦ୍ୟ ପାଇଁ । ତାହା ପେଟର କ୍ଷୁଧା ହେଉ ବା ମନର କ୍ଷୁଧା ହେଉ । ପେଟର କ୍ଷୁଧା ଅପେକ୍ଷା ମନ କ୍ଷୁଧାର ଜ୍ୱାଳା ଅଧିକ । ଏହା ଅନନ୍ତ ।

ଦିଗମ୍ବର କମେ ଅଣନିଶ୍ୱାସୀ ହୋଇଗଲା । ସେ ତା ଛାତିରେ କଷ୍ଟ ଅନୁଭବ କଲା ଏବଂ ବଳଲରେ ମୁଣ୍ଡର କେଶଗୁଡ଼ାକ ଜବରଦସ୍ତ ଟାଣି ପକେଇଲା । ଚଟାଣରେ ବସିପଡ଼ି ସେ ଛାତିରେ ହାତ ଦେଲା । ହଁ, ଛାତି ଭିତରେ କ'ଣ ଗୋଟାଏ ଫକ୍ ଫକ୍ ହୋଇ କେଉଁଠି ନିତଳ କରେଇରେ ଜିଅନ୍ତା ମାଛଭଳି । ତା'ର ଇଚ୍ଛା-

ହେଲା ସେ ନିଜେ ତା ଶରୀରକୁ ଏକ ଗରମ ତେଲ କଡେଇରେ ପକେଇ ମୃତ୍ୟୁମନ୍ତ୍ରଣା ଉପଭୋଗ ଦେବାକୁ ।

ଯେପରି ଏକ ବିକଳାଙ୍ଗ ମଣିଷ ହୋଇଗଲେ କେଜାଣି ଅବା ଚୁପି ରହିଥିବା ମନଟା ପୁନା ପିଲାଟି ଭଳି ଶରୀର ମଧ୍ୟରେ କଥା ମାନ ରହିସିବ ଚୁପ ହୋଇ ।

ହଁ, ସୁନ୍ଦର ସ୍ୱାସ୍ଥ୍ୟବାନ ମଣିଷ ପକ୍ଷେ ଯଦି ବଞ୍ଚିବାକୁ ଏତେ ଯନ୍ତ୍ରଣା ସହିବାକୁ ହେବ ତେବେ ବିକଳାଙ୍ଗ ହୋଇଗଲେ କ୍ଷତି କ'ଣ ? ସ୍ପେସ୍ ଚଅର୍ ଅପ୍ । ଗୋ ଆହେଡ୍, ହରି ଅପ୍ ।

ଦିଗମ୍ବର ଗୁଡକୁ ବଦାଗ୍ଧ ପକେଇଲା ବାଧା ମାରି ମାରି । ତାର ହାତର ମୁଠା ଖୁବ୍ ଟାଣ । ପୁରୁଷ ହାତର ମୁଠା । ବଜ୍ରପରି ଟାଣ । ସେ ମାରିଲା ତା ଗୁଡକୁ । ହାଁ, ଆହୁରି ଜୋରରେ ସ୍ପେସ୍ । ଗୋ ଅନ୍ ।

ବେଦମ ହୋଇଗଲା ଦିଗମ୍ବର । ଘର୍ମାକ୍ତ ଶରୀରକୁ ସେ ଆୟତ୍ତ କରି ନପାରି ଗୁଡରେ ଯନ୍ତ୍ରଣା ଅନୁଭବ କରି ଚଟାଣ ଉପରେ ଗଡ଼ିଲା ।

ଦେହରୁ ବହୁଛି ଗମ୍ ଗମ୍ ଝାଳ ।

ନାକରେ ଅଣ୍ଟେଣ ପବନର ଗନ୍ଧ ।

ଗୁଡ ଉଠୁଛି ଓ ପଡ଼ୁଛି ।

ସେ ନସ୍ତେଜ ହୋଇ ଗଲା ସେଇଠି ।

ଦୁର୍ବଳ ଆଖିରେ ବଡ଼ କଷ୍ଟରେ ସେ ଦର୍ପଣକୁ ଚାହିଁ ଦେଲା, କିଏ ? ଏ ପ୍ରତି ବିମ୍ବିତ ତାର ମୁହଁରେ ନୁହେଁ । ଆଖି ମଳି ପୁଣି ଚାହିଁଲା ଦର୍ପଣକୁ । ହଁ, ସାବଳୀ ଦାସ ଚୁପଚୁପ ଛିଡ଼ା ହୋଇ ଚାହିଁଛି ତା' ଯନ୍ତ୍ରଣା କାତର ଶରୀରକୁ ।

ହଠାତ୍ ଦିଗମ୍ବର ଅନୁଭବ କଲା ଯେପରି ତା'ର ସମସ୍ତ ଯନ୍ତ୍ରଣା ଉପଶମ ହୋଇଗଲା । ସେ ଠିକ୍ ଅଛି । ସମ୍ପୂର୍ଣ୍ଣ ସୁସ୍ଥ । ମନେ ମନେ ଖୁସି ହେଲା ଦିଗମ୍ବର ।

ଚୁପଚୁପ ଶାନ୍ତ ପିଲାଟି ଭଳି ଚଟାଣ ଉପରେ ବସି ଦୁଇଆଣ୍ଠୁ ଉପରେ ମୁହଁ ରଖି ଦର୍ପଣକୁ ଚାହିଁଲା । ହଁ, ସାବଳୀ ଅଛି । ଆଜି ସେ ଠିକ୍ ମଉକା ପାଇଛି । ସି ଉଇଲ୍ ବି ମର୍ଡରଡ଼ ! ପାଦ ଚପି ଚପି ଦିଗମ୍ବର ଅନ୍ୟ କୋଠରୀକୁ ଯାଇ ବ୍ରିଫ୍ କେଶରୁ ଛୁରୀଟା କାଢି ଆଣିଲା ।

ପବନ ବେଗରେ ଦର୍ପଣ ଆଡ଼କୁ ଧାଇଁଲା ଦିଗମ୍ବର । ହସ୍ତରେ ଝୁଲୁଛି ତୀକ୍ଷଣ ଛୁରୀକା । ସେ ଚକ୍ରାର କଲା—ସାବିତ୍ରୀ, ମୁଁ ତମକୁ ଖୁନ୍ କରିବି । କିନ୍ତୁ ସାବିତ୍ରୀ କାହିଁ ?

ଚିତ୍କାର କଲା ଦିଗମ୍ବର—ସାବିତ୍ରୀ ! ସାବିତ୍ରୀ !!

ତାପରେ ନିଶ୍ଚଳ ହୋଇ ଦିଗମ୍ବର ଦର୍ପଣକୁ ଚାହିଁଲା । ଦର୍ପଣରେ ତା'ର ପ୍ରତିଛବି । ହାତରେ ତୀକ୍ଷ୍ଣ ଛୁରୀ । ତେବେ ସାବିତ୍ରୀ କାହିଁ ?

ନିଜ ପାପୁଲିକୁ ଛୁରୀ ଧାରରେ ଖୋଳୁ ଖୋଳୁ ବହି ଆସୁଥିବା ତାଜା ରକ୍ତ ଦେଖି ବହେ ହସିଲା ଦିଗମ୍ବର । ମଣିପର ରକ୍ତ ଲାଲ ଠିକ୍ ଏକ ପୁଷ୍ପବତୀ ତରୁଣୀର ଓଠପରି । ସେହି ରକ୍ତକୁ ଓଠ ଲଗେଇ ଚୁମ୍ବି ନେଲା ଦିଗମ୍ବର ।

ପରେ ଭଙ୍ଗିରେ ଅଟ୍ଟହାସ୍ୟକରି ପୁଣି ଦର୍ପଣକୁ ଚାହିଁଲା । ସାବିତ୍ରୀ ନାହିଁ । ଆସିବନି । ସାବିତ୍ରୀ ନାମରେ ଯେଉଁ ମାୟା ରହିଛି ତାହା ଅପସରି ଯାଉଛି ସାବିତ୍ରୀକୁ ଦେଖିଲେ କିମ୍ବା ତାର ପ୍ରତିବିମ୍ବ ଦେଖିଲେ ।

ଅତଏବ ସାବିତ୍ରୀ ନଆସିବା ଭଲ । ଦୀର୍ଘ ସମୟ ଦିଗମ୍ବର ଦର୍ପଣକୁ ଚାହିଁଲା ମାତ୍ର ସାବିତ୍ରୀ ନାହିଁ ।

ସାମାନ୍ୟ ସହଜ ହୋଇ ଦିଗମ୍ବର ପାଣିଭର୍ତ୍ତି ସୁରେଇଟାକୁ ଟେକି ଢକ ଢକ କରି ଅଧସୁରେଇଏ ପାଣି ପିଇଦେଲା । ମୁହଁରେ ପାଣି ମାରି ସେ ଚୁପଚାପ ତା' କୋଠରୀରେ ବସି ସିଗାରେଟ୍ ଟାଣିଲା । ଗୋଟାକ ପରେ ଗୋଟାଏ ।

ସାରା କୋଠରୀରେ ସିଗାରେଟ୍ ଧୂଆଁ । ଦିଗମ୍ବର ସେହି ଧୂଆଁର ସହରରେ ଦେଖିଲା ହଜିଲା ସ୍ମୃତିମାନଙ୍କର ଦୃଶ୍ୟ...

ସେ କହିଁ କହିଁ ହୋଇ କାନ୍ଦି ଉଠିଲା ଠିକ୍ ପିଲାଙ୍କ ପରି ।

ଆଖିରୁ ଲୁହ ବହିଗଲେ ମନଟା ହାଲ୍କା ହୋଇଯାଏ । ଦିଗମ୍ବର ଚୁପଚାପ ବସି ଝର୍କା ଦେଇ ଖୋଲା ଆକାଶକୁ ଚାହିଁଲା । ଏ ପୃଥିବୀ ସୁନ୍ଦର ଠିକ ସାବିତ୍ରୀର ସଲଜ ହସ ପରି । ଏ ରାତିଟା ସୁନ୍ଦର ସାବିତ୍ରୀର କେଶ ଅରଣ୍ୟ ପରି । ଏ ଦୁନିଆଁଟା ଭଲ ସାବିତ୍ରୀର କଳ କଣ୍ଠ ସଙ୍ଗୀତ ପରି ।

ଦିଗମ୍ବର ଏ ଦୁନିଆଁଟାକୁ ଚିହ୍ନିଥିଲା ସାବିତ୍ରୀ ପାଇଁ । ସାବିତ୍ରୀକୁ ସେ ବିଶ୍ୱାସ କରିଥିଲା ନିଜକୁ ଅବିଶ୍ୱାସ କରି । ନିଜକୁ ଉପେକ୍ଷା କରି ସେ କେବଳ ସାବିତ୍ରୀକୁ ଭଲ

ପାଉଥିଲା । ଦିଗମ୍ବର ଅନୁଭବ କରୁଥିଲା ତା' ପାଇଁ ଏ ଦୁନିଆଁ ଟା ଏତେ ସୁନ୍ଦର କେବଳ ସାବିତ୍ରୀ ପାଇଁ ।

ସେ ସେବର୍ଷ କଲେଜ ଆନ୍ଦୋଳନର ନେତୃତ୍ୱ ନେଇଥିଲା । ଦରଦାମ କମେଇବା, ବେକାରି ଭତ୍ତା ଦେବା ଏବଂ ଦାଦନ ଶ୍ରମିକମାନଙ୍କୁ ନିକ୍ଷେପିତ କରୁଥିବା କଣ୍ଟ୍ରାକ୍‌ଟରମାନଙ୍କୁ ଉଚିତ ଶାସ୍ତି ଦେବା ପାଇଁ ଆନ୍ଦୋଳନ କରାଯାଇଥିଲା । ଓଡ଼ିଶାର ହଜାର ହଜାର ଛାତ୍ର ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ । ସାବିତ୍ରୀର ଅନୁରୋଧ କ୍ରମେ ଦିଗମ୍ବର ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲା । ଆନ୍ଦୋଳନ କ୍ରମେ ବଢି ପାଣି ପରି ବଢିଲା । ସାବିତ୍ରୀ ଦିଗମ୍ବରକୁ ଉତ୍ସାହରେ ଥାଇ ଯଥେଷ୍ଟ ସାହାଯ୍ୟ ଓ ସହଯୋଗ କରୁଥିଲା । ସାବିତ୍ରୀର ଆନନ୍ଦ ପାଇଁ ହିଁ ଦିଗମ୍ବର ଏତେ ବଡ଼ ଗୁରୁ ଦାୟିତ୍ୱ ନେଇଥିଲା ସେ ମଧ୍ୟ ଜନ-ସାଧାରଣଙ୍କର ସହଯୋଗ ପାଇଥିଲା ।

ଆନ୍ଦୋଳନର ବେଗ ବଢିଲା ବେଳକୁ ଦିଗମ୍ବର ଦେଖିଲା ଛାତ୍ର ନେତା-ମାନଙ୍କର ଛତ୍ରଭଙ୍ଗ ହେଲା । କେତେକ ରାଜନୈତିକ ଦଳ, ବ୍ୟବସାୟୀ ଏବଂ କଣ୍ଟ୍ରାକ୍‌ଟର ମାନଙ୍କର ପୋଷା ମଣିଷମାନେ କୌଶଳକ୍ରମେ ଟଙ୍କା ଦେଇ ଛାତ୍ର ନେତାମାନଙ୍କ ମୁହଁ ବନ୍ଦ କରିଦେଲେ । ଦିଗମ୍ବର କ୍ରମେ ଏକା ପଡ଼ିଲା ମାତ୍ର ସାବିତ୍ରୀ ଛାଡ଼ିବାର ଝିଅ ନୁହେଁ । ସେ ଦିଗମ୍ବରକୁ ଉତ୍ତେଜି ଦେଲା । ଦିଗମ୍ବର ଶପଥ ନେଲା ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଆନ୍ଦୋଳନ ଚାଲୁ ରଖିବ ।

ପୁଣି ଦିଗମ୍ବର ଆନ୍ଦୋଳନକୁ ଆଗେଇ ନେଲା । ସାବିତ୍ରୀ କହୁଥିଲା-ଦିଗମ୍ବର, ସଂଘର୍ଷ ମଣିଷ ଜୀବନର ଉନ୍ନତିର ଅନ୍ୟ ଏକ ଦିଗ । ତମେ ପୁରୁଷ । ନିଜକୁ ତ୍ୟାଗକରି ଅନ୍ୟାୟ ବିରୁଦ୍ଧରେ ଲଢେଇ କର । ଏକା ପଡ଼ନା । ଫାଇଟ୍ ଫର୍ ରାଇଟ୍ ।

ଦିଗମ୍ବର ଆନ୍ଦୋଳନକୁ ସୁଚାରୁ ରୂପେ ଚଳେଇ ଓଡ଼ିଶା ବନ୍ଦରେ ଯେଉଁଦିନ କୃତ କାର୍ଯ୍ୟ ହେଲା ସେହି ଦିନ ସନ୍ଧ୍ୟାରେ ଆତତାୟୀମାନଙ୍କ ଦ୍ୱାରା ଶିକାର ହେଲା । ତା' କୋଠରୀରେ ଚାରିଜଣ ବ୍ୟକ୍ତି ପଶି ଆନ୍ଦୋଳନ ବନ୍ଦ କରିବାକୁ ହୁକୁମ ଦେଲେ । ଦିଗମ୍ବର ସ୍ପଷ୍ଟ ମନା କରି ଦେଲା । ଶେଷରେ ଆତତାୟୀମାନେ ତ ଦିଗମ୍ବରକୁ ଛୁରୀ ମାରି ଦେଲେ । ରକ୍ତ ଜୁଡ଼ୁବୁଡ଼ୁ ହୋଇ ସେ ସେଇଠି ଟଳି ପଡ଼ିଲା ।

ତାପରେ ହସପିଟାଲରେ ପଡ଼ି ରହିଲା ଦିଗମ୍ବର । ସାବିତ୍ରୀ ହତାଶ ହୋଇ ପଡ଼ିଲା । ଦିନରାତି ସେ ଦିଗମ୍ବରର ସେବା କରିବାକୁ ଲାଗିଲା ।

ଡ଼କ୍ଟର ବିପିନ୍ ମିଶ୍ରଙ୍କ ଅପରେସନ୍ ସକ୍‌ସେସ୍‌ଫୁଲ୍ ହେଲା । ତାପରେ ଆନ୍ଦୋଳନର ଗତି କ'ଣ ହେଲା ଦିଗମ୍ବରଙ୍କୁ ଜଣାନାହିଁ । ପୋଲିସ ଆସି ଅନେକ ପ୍ରଶ୍ନ କରିଥିଲେ ମାତ୍ର ଦିଗମ୍ବର କାହାକୁ କିଛି କହିନଥିଲା । ଆତତାୟୀମାନଙ୍କୁ ସେ ଜାଣେ ସମସ୍ତେ ତାଙ୍କର ବାବୁଙ୍କର ପୋଷା ମଣିଷ । ତାକୁ ଦୋଷ ଦେଇ ଲାଭ ନାହିଁ । ଏମାନେ ସେଇଥି ପାଇଁ ପୋଷା ହୋଇ ଅଛନ୍ତି । ଶଙ୍କରବାବୁଙ୍କୁ ବେଇଜତ୍ କରିବାକୁ ଦିଗମ୍ବର ଚାହୁଁ ନଥିଲା ବରଂ ସେ ନିଜେ ନିଃଶେଷ ହୋଇଯିବ ମାତ୍ର ଶଙ୍କରବାବୁଙ୍କର କ୍ଷତି କରିବନି । ବ୍ୟବସାୟରେ କ୍ଷତି ଘଟେଇବା ଏବଂ ପୋଲିସକୁ କାହା ବିରୁଦ୍ଧରେ ରିପୋର୍ଟ ଦେବା ଅଲଗା କଥା ।

ଶେଷରେ ଦିଗମ୍ବର କହିଥିଲା—ଆତାୟୀମାନଙ୍କୁ ସେ ଜାଣେନା । ଆନ୍ଦୋଳନର ଖବର ସେ ଆଉ ରଖିନି । ଅପରେସନ୍ ପରେ ଦିଗମ୍ବର ଅନୁଭବ କରିଛି ସାବିତ୍ରୀର ମୁହଁରେ ଉଦାସୀନତାର ରଙ୍ଗ ।

ପ୍ରଥମେ ଦିଗମ୍ବର ଭାବିଥିଲା ସାବିତ୍ରୀ ଉଦାସୀନତା ହେବା ସ୍ୱାଭାବିକ, କାରଣ ତା'ରି ଯୋଗୁଁ ଦିଗମ୍ବରର ଏପରି ଅବସ୍ଥା । ନଚେତ୍ ଆନ୍ଦୋଳନ କିଏ ଓ ଦିଗମ୍ବର କିଏ ?

ଦିଗମ୍ବର କ୍ରମେ ସୁସ୍ଥ ହୋଇ ଆସିଲା ଏବଂ ସାବିତ୍ରୀ କ୍ରମଶଃ ଦୂରେଇ ଗଲା । ଏଥିପାଇଁ ଗଭୀର ଦୁଃଖ ହେଲା ଦିଗମ୍ବରକୁ । ହସପିଟାଲ ଛାଡ଼ିଲା ପରେ ସାବିତ୍ରୀକୁ ଦେଖିବାକୁ ସେ ଆସିଥିଲା । କାରଣ ସେ ନିଜ ଅପେକ୍ଷା ସାବିତ୍ରୀକୁ ବେଶୀ ଭଲପାଏ ।

ମାତ୍ର ସାବିତ୍ରୀର ପ୍ରାସାଦ ପାଖରେ ପହଞ୍ଚିଲା ବେଳକୁ ତାଙ୍କର ଆଲସିସିଆନ କୁକୁରଟା ଭୁକି ଉଠିଲା । ତାକୁ ଯିବାକୁ ଅନୁମତି ଦିଆଗଲାନି । ଶଙ୍କରବାବୁ ପଳାସି ଆସି କହିଲେ— ଟମ୍ ଷ୍ଟପ୍ ବାର୍କିଙ୍ଗ । ଷ୍ଟପ୍ ଆଇ ସେ । ଦିଗମ୍ବର, ଟମ, ମାଇଁ ଡ଼ଗ ଇଜ୍ ମୋର ଫେଥ୍ ଫୁଲ୍ ଦାନ ୟୁ । ଯାଅ, ତମ ଭଳି ଜଣେ ଗରିବ ମଣିଷ ଆନ୍ଦୋଳନର ଗତିକୁ ବଞ୍ଚାଇ ରଖିବା ସମ୍ଭବ ନୁହେଁ । ସାବିତ୍ରୀ ସହିତ ଦେଖାହୋଇ ପାରିବନି । ଯଦି ଏହା କେବେ କରିବାକୁ ଚାହିଁ ତେବେ ଆଇ ଉଇଲ୍ ମର୍ଡ଼ର ୟୁ । ମୁଁ ଜଣେ କଂଣ୍ଟ୍ରାକ୍ଟର । ବାଦଲ ଶ୍ରମିକମାନଙ୍କର ପିଣ୍ଡ କେତେ ମୁଁ ଜାଣେ । ତମେ ମୋର ବ୍ୟବସାୟ ବନ୍ଦ କରି ପାରିବନି । ମନ୍ତ୍ରିମଣ୍ଡଳ ମୋ ହାତରେ । ଗୋ, ଆଇ ଡ୍ରୋଣ୍ଟ ଓ୍ୱାଣ୍ଟ ଟୁ ସି ୟୁଓର ଫେସ୍ । ଟମ୍, ଏ ମଣିଷଟା ଯଦି ନଯାଏ ତେବେ ହ୍ୱାଣ୍ଟ ହିମ୍... ।

ଶଙ୍କରବାବୁ ଫେରିଗଲେ । ଟମ୍ ଗର୍ଜିଉଠିଲା । ଦିଗମ୍ବର ଫେରି ଆସିଲା । ସାବିତ୍ରୀକୁ ଆଉ ଦେଖି ପାରିଲାନି । ପରେ ଶୁଣିଲା କାଶ୍ମୀରରେ ଏବେ ସାବିତ୍ରୀ ରହୁଛି ।

ଦିଗମ୍ବର ହତୋତ୍ସାହ ହୋଇ ଗାଁ କୁ ଫେରି ଆସିଲା । ସେ ସହରଟା ତାପାଇଁ ଅନୁକୂଳ ନଥିଲା । ମୃତ୍ୟୁର ଭୟ ବି ଥିଲା । ସମସ୍ତେ କୁହନ୍ତି ଶଙ୍କରବାବୁ ମୃତ୍ୟୁ ଠାରୁ ବି ଆହୁରି ଭୟଙ୍କର ।

ଘରେ କିଛି ଦିନ ରହି ଏମ୍. ଏ. ପରୀକ୍ଷା ଦେଲା ଏବଂ ପାସ୍ କରିଗଲା । ତାପରେ ପୁଣି ସହରକୁ ଯାଇ ସାବିତ୍ରୀକୁ ଖୋଜିଲା କାରଣ,ସାବିତ୍ରୀ ଯୋଗୁଁ ସେ ପାଠ-ପଢି ଆସୁଥିଲା । ସାବିତ୍ରୀ ଚାହୁଁ ଥିଲା ଦିଗମ୍ବର ଏମ୍. ଏ. ପାସ କରିବାକୁ । ତାପରେ ସେମାନେ ଏକତ୍ର ଏକସ୍ୱରରେ ଗୋଟିଏ ସଙ୍ଗୀତ ଗାଇବେ । ଠାକୁରଙ୍କୁ ସାକ୍ଷୀରଖି ସେମାନେ ସିଦ୍ଧାନ୍ତ ନେଇଥିଲେ ଦୁହିଁଙ୍କ ମିଶ୍ରଣ ସତ୍ୟ ।

ମାତ୍ର ଦିଗମ୍ବର ହତାଶ ହୋଇ ଫେରିଲା । ସାବିତ୍ରୀର ପତ୍ତା ପାଇଲା ନାହିଁ । ସାବିତ୍ରୀର ସ୍ମୃତିକୁ ମନେ ପକାଇ ସେ ଖୁବ ବ୍ୟସ୍ତ ହୋଇ ଉଠିଲା । ଘରେ ବସି ରହିବା ପରେ ଜୀବନଟା ଦୁର୍ବିସହ ହୋଇ ଉଠିଲା, କାରଣ ତା'ର ପାରିବାରିକ ଅବସ୍ଥା ଭଲ ନଥିଲା ।

ଏବେ ସେ ଏଠି ଜଣେ ଶିକ୍ଷକ । ସହର ତଳି ଏକ ପଡ଼ାରେ ଉଚ୍ଚ ଇଂରେଜୀ ବିଦ୍ୟାଳୟରେ ସେ ପ୍ରଧାନ ଶିକ୍ଷକ । ଏଠି ସେ ଏକା ନୁହେଁ । ଦିନ ସରେ ପିଲାମାନଙ୍କ ସହିତ, ମାତ୍ର ରାତି କଟେନା ।

ତିନିବର୍ଷ ପରେ ସାବିତ୍ରୀର ସ୍ମୃତି ଜମା ଲିଭୁନି । ସାବିତ୍ରୀ ନାମ ସ୍ମରଣ ମାତ୍ରେ ଦିଗମ୍ବର ଏବେ ବି ପୁଲକିତ ହୋଇଉଠେ । ମାତ୍ର ଦର୍ପଣରେ ସାବିତ୍ରୀର ରୂପକୁ ଦେଖି ଆଜି ସେ କ୍ରୋଧରେ ଅନ୍ଧହୋଇ ତାକୁ ଚୂରିମାରିବାକୁ ପ୍ରସ୍ତୁତ ହେଉଥିଲା କାହିଁକି ? ହଁ, ସାବିତ୍ରୀ ତା ସୁସ୍ଥ ଜୀବନର ସମସ୍ତ ମାଧୁର୍ଯ୍ୟ ଅପହରଣ କରି ନେଇଛି । ସେ ଅପହରି ଯାଇଛି ମାତ୍ର ଦିଗମ୍ବର ଯେତେ ଚାହୁଁଛି ତେଣେ ସାବିତ୍ରୀ ଦିଗମ୍ବର ପାଇଁ ଏଦୁନିଆଟା ସାବିତ୍ରୀ ମୟ । ଆଖିରେ ଲୁହ ଜମି ଆସିଲା ଦିଗମ୍ବରର । ସେ ଲୁହ ପୋଛି ବାହାରକୁ ଚାହିଁଲା । ବର୍ଷା ବର୍ଷି ଚାଲିଛି ରୁହାଇ ରୁହାଇ । ଦିଗମ୍ବରର ଇଚ୍ଛା ହେଲା ଏଇ ରାତିରେ ଦର୍ପଣରେ ସେ ଆଉଥରେ ନିଜକୁ ଦେଖିବ । ଆଲୋକ ଜଳୁଛି । ଅସୁବିଧା ନାହିଁ । ସାବିତ୍ରୀ କୁହେ, ଦିଗମ୍ବର ତମେ ଭାରି ସୁନ୍ଦର । ଏହା କ'ଣ ସତ୍ୟ ?

ଦିଗମ୍ବର ଅନ୍ୟ କୋଠରୀକୁ ଗଲା । ଦରଜା ଖୋଲି । ବର୍ଷାଭିଜା ମନ୍ଦ ପବନ ମାଡ଼ିଛି କୋଠରୀ ସାରା । ଆଲୋକ ଜଳୁଛି । ଦର୍ପଣକୁ ଚାହିଁଲା ଦିଗମ୍ବର । ସାବିତ୍ରୀର ପ୍ରତିବିମ୍ବ । ଆଶ୍ଚର୍ଯ୍ୟ ହେଲା ଦିଗମ୍ବର । ଆଖି ମଳି ପୁଣି ଚାହିଁଲା । ହଁ, ସାବିତ୍ରୀର ପ୍ରତିବିମ୍ବ ଦିଗମ୍ବର ଚିତ୍କାର କଲା—ସାବିତ୍ରୀ !

ପାର୍ବତୀ ଅନାଇଛି। କୃତ ସ୍ୱରରେ ଏକ ସଷ୍ଟି ବାଳିକା ହସ ହସି ତଳକୁ ମୁହଁ ପୋତିଲା। ତାପରେ କହି କହିଁ ହୋଇ କାନ୍ଦଉଠି କହିଲା—ଦିଗମ୍ବର, ଜୀବନର ଅନ୍ୟନାମ ସହନ ଶୀଳତା। ଭାଙ୍ଗି ନ ପଡ଼ିବାହିଁ ପୂରୁଷତ୍ୱ। ଆଜି ମୁଁ ଆସିଛି। ଆଉ ସହି ହେଲାନି। ଆଖିରେ ନଦେଖିଲେ ବି ତମର ଦୁଃଖକୁ ଅନୁଭବ କରି କରି ଆଉ ରହି ପାରିଲିନି। ବାପା ତମକୁ ଗାଳି ଦେବାଠୁ ଆରମ୍ଭ କରି ତମର ସାମାନ୍ୟତମ ଉଦାସୀନତା ପର୍ଯ୍ୟନ୍ତ ସବୁ ଖବର ମୁଁ ରଖିଛି। ମୁଁ କଥା ଦେଇଥିଲି ତମେ ଏମ. ଏ. ପାସ କଲାପରେ ମୁଁ ତମକୁ ବିବାହ କରିବି। ଦିଗମ୍ବର ଏବେବି ମୋ ଓଠରେ ତମର ସ୍ପର୍ଶ ମୁଁ ଅନୁଭବ କରୁଛି। ତମ ଗ୍ରୀବାରେ ଲଟକି ପାରି ଅଚ୍ଛ ଆଦରରେ ଚୁମା ଖାଇବାର ଅଭିଳାଷ ଜାଗି ଉଠେ। ଦିଗମ୍ବର ମତେ ତମେ କାହିଁକି ବିବାହ କରିବ ? ମୋ ପାଖରେ ସେହି ପୂର୍ଣ୍ଣ ନୋସ୍ୱା ଗଙ୍ଗାଜଳ ବିନ୍ଦୁଏ ବି ନାହିଁ ଯେଉଁଥି ପାଇଁ ମୁଁ ପୁଣ୍ୟବତୀ ହୋଇଥାନ୍ତି। ଦିଗମ୍ବର, ତମେ ଅସୁଧର। ଶୁଣି ହେଲି ତମେ ହସ୍ପିଟାଲରେ, ଅବସ୍ଥା ଖରାପ ହୋଇ ଉଠିଲା। ଡକ୍ଟର ମିଶ୍ର କହିଲେ ତକର ଗ୍ରୀବାର କ୍ଷତ ବିପଦ୍-ଜନକ। ଅପେରେସନ ଆବଶ୍ୟକ। ମୁଁ ଅପରେସନ୍ ପାଇଁ ସକଳ ବ୍ୟବସ୍ଥା କରିବା ସତ୍ତ୍ୱେ ବି ଡକ୍ଟର ମିଶ୍ର ଅପରେସନ ପାଇଁ ଅନିଚ୍ଛା ପ୍ରକାଶ କଲେ। କାରଣ ଏହା ଏହା ମେଜର ଅପରେସନ। ସେ ଏ ଅପରେସନ୍ କରିପାରିବେ ନାହିଁ। ଏ ଅପରେସନ୍ କେବଳ କରିପାରିବେ ଡକ୍ଟର ବିପିନ୍ ମିଶ୍ର। ମୁଁ ସେଦିନ ପୁରା ଭାଙ୍ଗି ପଡ଼ିଲି। ତମର ସେହି ଦୁଃର୍ଦ୍ଦଶା ପାଇଁ ମୁଁ ଦାୟୀ, କାରଣ ନେତୃତ୍ୱ ନେବାପାଇଁ ମୁଁ ତମକୁ ପ୍ରବର୍ତ୍ତାଇଥିଲି। ମତେ ଖୁସି କରାଇବା ପାଇଁ ମୋ ବାବାଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇ କରୁଥିଲ।

ଶେଷରେ ବାବା ମତେ ତମ ପାଖକୁ ଯିବା ପାଇଁ ବନ୍ଦକଲେ। ମୁଁ ଅବାଧ୍ୟ ହୋଇ ଯାଉଥାଏ। ଭାବିଥିଲି ବାବା ଯଦି କଠୋର ହେବେ, ତେବେ ତାଙ୍କୁ ସ୍ପଷ୍ଟ କହି ଦେଇଥାନ୍ତି ଯେ, ମୋର କୌଣସି ଐଶ୍ୱର୍ଯ୍ୟ ଆବଶ୍ୟକ ନାହିଁ, ଦିଗମ୍ବର ମୋ ପାଇଁ ସ୍ୱର୍ଗ'' ମାତ୍ର ବାବା ମୋର ମନୋଭାବ ବୁଝି ପାରି କାହିଁକି ନୀରବ ରହିଥିଲେ ଏହା ମୁଁ ବି ଜାଣିନି।

ଯାହା ହେଉ, ଡକ୍ଟର ବିପିନ୍ ମିଶ୍ର ତମକୁ ଅପରେସନ୍ କଲେ। ତମେ ସୁସ୍ଥ ହୋଇ ଉଠିଲ। ଏହାହିଁ ଥିଲା ମୋର କାମନା। ତମେ ଜାଣ ଦିଗମ୍ବର, ତମକୁ ବଞ୍ଚାଇବା ପାଇଁ ନିଜକୁ ବାଜି ଲଗେଇ ଥିଲି ? ଶେଷରେ ମତେ ଡକ୍ଟର ମିଶ୍ରଙ୍କ କାମନାର ଅଗ୍ନିକୁ ସମର୍ପିତ କରିବାକୁ ହେଲା। ମୁଁ ଜାଣିଥିଲି ଡକ୍ଟର ମିଶ୍ର ବାବାଙ୍କର ବିପକ୍ଷ। ସେ ମୌକା ଖୋଜୁଥିଲେ ଆଉ ମୁଁ ତାଙ୍କର ଦ୍ୱାରସ୍ଥ ହେଲି। ବାବାଙ୍କ

ବିପକ୍ଷତା ଏବଂ ତମକୁ ବଂଚେଇବା ପାଇଁ ମୋର ଆଗ୍ରହ ଦେଖି ସେ ତାଙ୍କ ମନର ଔଦାର୍ଯ୍ୟ ଦେଖାଇଲେ ।

ମୁଁ ଅନୁଭବ କଲି ତାଙ୍କ ଅପରେସନ୍ ଉପରେ ତମେ ଜୀବନ ନିର୍ଭର କରୁଛି ଏଣୁ ମୁଁ ବାଧ୍ୟ ହୋଇ ଆତ୍ମ ସମର୍ପଣ କଲି କାରଣ, ତମେ ବଞ୍ଚିବା ଥିଲା ମୋ ପକ୍ଷେ ଜରୁରୀ । ମୁଁ ମୋର ସକଳ ତପସ୍ୟାକୁ ଜଳାଞ୍ଜଳୀ ଦେଲି । ଏବେ ମୁଁ ଦେହ ମାଟି ହାଣ୍ଡି, ହୃଦୟରେ ଭାତ ରନ୍ଧା ସରିଛି । ତମେ ବଞ୍ଚିଗଲ ଏତିକି ହିଁ ମୋ ପାଇଁ ସାନ୍ତ୍ୱନା ।

ଦିଗମ୍ବର, କପ୍ ପେସେନ୍ସ୍, ତମେ ମତେ ଅନେକ ଖୋଜୁଛ ନା ! ମୋ ଦୁଃଖ କରୁ ନୁହଁ କି ?

ତମେ ବଞ୍ଚିଛ କେବଳ ମୋଇଁ ।

କୁହ ଦିଗମ୍ବର, ମୁଁ ତମ ସାମ୍ନାକୁ ଆସିଥାନ୍ତି କିପରି ?

ବାସି ଫୁଲର ସ୍ଥାନ ଦେଉଳ ବେଢ଼ାରେ ମାତ୍ର, ଦେଉଳ ଭିତରେ ଥିବା ଦିଅଙ୍କ ମଥାରେ ନୁହେଁ । ମୋ ପାଇଁ ତମେ ପାଗଳ । ନିଜ ପାପୁଲିକୁ କ୍ଷତାକ୍ତ କରିବ ତମେ କଷ୍ଟ ଅନୁଭବ କରନି । ନିଜ ରକ୍ତ ନିଜେ ଝୁରିଛ ।

ଦିଗମ୍ବର ମୁଁ ଆସୁଛି । ଦର୍ପଣରେ ମୃତ ଛବିକୁ ନେଇ ବଞ୍ଚି ହୁଏନା । ବଞ୍ଚିହୁଏ ଅସଲ ରୂପକୁ ନେଇ । ତମେ ସହଜ ହୁଅ ଦିଗମ୍ବର, ତମ ସାବର୍ଣ୍ଣୀ ବଞ୍ଚିଥିଲା ପର୍ଯ୍ୟନ୍ତ ତମକୁ ଛୁଇଁ ପାରିବନି ସିନା କିନ୍ତୁ ତମ ଗୁଇ ହୋଇ ରହିଥିବ । ସାବର୍ଣ୍ଣୀ ସିନା ସତୀ ହୋଇ ପାରିଲାନି କିନ୍ତୁ ଶପଥ ହାରିବ ନାହିଁ । ମୁଁ ଆସୁଛି ଦିଗମ୍ବର, ମତେ କ୍ଷମାକର । ଶୁଭରାସ୍ତୁ ......।

କମେ ଏକ କରୁଣ ପ୍ରତିବିମ୍ବ ଘୂରି ଯାଉଥିଲା ।

ଚିତ୍କାର କଲା ଦିଗମ୍ବର—ସାବର୍ଣ୍ଣୀ, ସାବର୍ଣ୍ଣୀ ତୁହ । ତୁହ ସାବର୍ଣ୍ଣୀ···ଦିଗମ୍ବରର ମଥାଟା ଘୂରି ଗଲା । ସେ ଚଟାଣରେ ନଥ୍‌କରି ବସିପଡ଼ିଲା ।

ଏତିକି ତାର ମନେ ଅଛି ଯେ, ବର୍ଷାର ନୃତ୍ୟ ଭିତରେ କି ଏକ ଯାନ୍ତ୍ରିକ-ଯାନର ଶବ୍ଦ ହେଲା । ମାତ୍ର ସେ ଉଠି ଯାଇ ପାରିଲାନି । ସତେ ଯେମିତି ସେ ପଥର ପାଲଟି ଯାଇଥିଲା । କିଛି ସମୟ ପରେ ସେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ଘୁରେଇରେ ଥିବା

ଅବଶିଷ୍ଟ ପାଣିତକ ପିଇଲା ଢକ ଢ଼କ କରି । ମଥାର କେଶ ଗୁଡ଼ାକୁ ଟାଣି ପକେଇଲା କଲ୍ ବଲ୍ ହୋଇ । ଫେରିଆସି ପୁଣି ଦର୍ପଣକୁ ଗ୍ଜହିଁଲା । ସାବିତ୍ରୀ ନାହିଁ । କେବଳ ଦିଗମ୍ବର ତାର ଅସହାୟ ପ୍ରତିବିମ୍ବ ଦେଖୁଛି ।

ଦିଗମ୍ବର ହଠାତ୍ ରାଗିଗଲା । ଛୁରୀରେ ପୁଣି ନିଜ ହାତ ପାପୁଲିର କ୍ଷତକୁ ଉଖାରିଲା । ଛୁରୀରେ ରକ୍ତ ନେଇ ନିଜ କପାଳରେ ଏକ ଟିପାମାରି ସେହି ଛୁରୀଟା ଯେଉଁଠାରେ ସାବିତ୍ରୀକୁ ଖୁନ୍ କରିବ ବୋଲି ଆଣିଥିଲା ସେହି ଛୁରୀଟା ଦର୍ପଣକୁ ଫିଙ୍ଗିଦେଲା ।

ଦର୍ପଣଟା ଖଣ ଖଣ ହୋଇ ଚୂନ୍ ଚୂନା ହୋଇଗଲା ଏବଂ ହଠାତ୍ର ଦିଗମ୍ବରର କ୍ରୋଧ ସମ୍ବରଣ ହୋଇଗଲା ।

ଜୀବନଟା ଏକ ଦର୍ପଣ । ଏହାର ପ୍ରତିବିମ୍ବ ଦେଖି ହୁଏ ଅନ୍ୟର ଜୀବନକୁ ଦର୍ପଣ ମନେକରି, ମାତ୍ର ନିଜକୁ ଦର୍ପଣ କରି ହୁଏନା ।

ତାପରେ ଦିଗମ୍ବର ଭେ ଭେ ହୋଇ କାନ୍ଦିଲା । ଚିତ୍କାର କଲା । ପାଗଳଙ୍କ ପରି ହସି ହସି କହିଲା—ନିଜର ରକ୍ତ ନିଜ ପାଇଁ ବି ଆମିଷ । ନିରାମିଷାଶୀ ହେବାକୁ ହେଲେ ମଣିଷ ଜନ୍ମ ନପାଇ ଅନ୍ୟ କୌଣସି ଜନ୍ମ ପାଇବା ଭଲ, ଯାହାର ରକ୍ତ ଆମିଷ ନ ହୋଇଥିବ ।"

—*—



# ଅନ୍ୟ ଏକ ନିର୍ବାଣ

## ଫଣୀନ୍ଦ୍ର କୁମାର ମହାପାତ୍ର

ବାହାରେ ଅନ୍ଧାର ଓ ଅନ୍ଧାର । ମନୋରମାର ମନେହେଲା ସତେ ଯେପରି ଅନ୍ଧକାରର ଏକ କ୍ରମବର୍ଦ୍ଧମାନ ଘେର ବଳୟ ତାକୁ ଘେରି ରହିଛି । ସେ ମୁକ୍ତି ପାଇଁ ଆପ୍ରାଣ ଉଦ୍ୟମ କରି ମଧ୍ୟ ପାରୁନାହିଁ । ସେ ସତେ ଯେପରି କ୍ରମଶଃ ଦୁର୍ବଳ ହୋଇପଡ଼ୁଛି । ଯେଉଁ ଲୁହକୁ ସେ ଲୁଚାଇବାକୁ ପଳାଇ ଆସିଥିଲା, ସେ ଲୁହ ବନ୍ଦ ହେବାକୁ ନାହିଁ । ନିଜ ଭିତରେ ନିଜେ ଉତ୍ତେଜିତ ହୋଇ ପଡ଼ୁଥିଲା ମନୋରମା । ନାରୀ ଜାତି ଉପରୁ ତାର ଆସ୍ଥା ତୁଟି ଯାଉଥିଲା । ମନୋରମା ନିକଟରେ ନାରୀ ଜୀବନ ଏକ ପେଣ୍ଡୁ ଭଳି ମନେହେଲା, ପରିସ୍ଥିତିର ଆଘାତରେ ଏଣେ, ତେଣେ ବିରାମହୀନ ଭାବରେ ଗଡ଼ି ଚାଲିଛି । ଆଉ କେତୁଦିନ ପରେ ମନୋରମାର ଜୀବନ ପେଣ୍ଡୁ ବାୟୁ ଶୂନ୍ୟ ହୋଇଗଲେ ହୁଏତ ହୁଏତ ଆଉ ଗଡ଼ି ନ ପାରିବନି । ଏକ ନିଷ୍ଫଳ ବେଦନା ବୋଧରେ ଜର୍ଜ୍ଜରିତ ହୋଇ ଉଠିବ ଜୀବନର ଉତ୍ତରାର୍ଦ୍ଧ ।

ଜନ୍ମ, ମୃତ୍ୟୁ, ପ୍ରେମ ଓ ତାରୁଣ୍ୟ—ଇଶ୍ୱର କି ଶାଣିତ ପରୀକ୍ଷା, ମଣିଷ ଜୀବନକୁ ନେଇ !!!

ମନୋରମାକୁ ପଚିଶ ପୂରି ଛବିଶ ବର୍ଷ ଚାଲିଲା ଏଥର । ଛବିଶ ବର୍ଷ ଧରି ପୃଥିବୀର ଗତି ଅପ୍ରତିହତ ରହିଛି । କେହି କାହାଲାଗି ଅପେକ୍ଷା କରୁନି । ଫେରି ଆସୁନି ବିଲୁପ୍ତ ମୁହୂର୍ତ୍ତ ମାନଙ୍କ । ମନୋରମା ବି ଚାଲିଛି । କାହିଁକି ଚାଲିଛି ସେ ଜାଣେନା । ସେ ଜଡ଼ ପାଷାଣୀ ହୋଇ ଯା'ନ୍ତା'କି ? ଶରତ, ହେମନ୍ତର ସ୍ମୃତି ଲଗ୍ନ ତାରମାନେ ତାକୁ ବିରକ୍ତ କରନ୍ତେ ନାହିଁ । ସେ ଚାଲିଛି କାହିଁକି ? କିଏ ତାକୁ ଧକ୍କା ମାରି ନେଇ ଯାଉଛି ଏ ଗ୍ରହରୁ ଅନ୍ୟ ଗ୍ରହକୁ ? ?

ଏତେ ଅନ୍ୟମନସ୍କତା ମଧ୍ୟରେ ବି ଠିକ୍ ନିଜ ଘରଟାକୁ ଖୋଜି ପାଇଥିଲା ମନୋରମା । ଆପଣା ଅଜାଣତରେ ଘରେ ପହଞ୍ଚି ସାରିଥିଲା । ଝୁଣି, କମ୍ପି ପରି ମନୋରମା ନିଜ ଦୁଆରେ ଛିଡ଼ା ହେଲା । ଦୁଆର ଖୋଲିଥିଲା । ନିରବରେ ଭିତରକୁ

କଲା । ଦେଖେଇ ଘରେ ବୋଉର ଗୃପା କାନ୍ଦଣା । ଲଘୁ ପଦକ୍ଷେପରେ ବୋଉର ଅତି ନିକଟରେ ଛିଡ଼ା ହେଲା ସେ । ବୋଉ କିନ୍ତୁ ମୁଣ୍ଡ ଉଠାଇଲା ନାହିଁ ।
ବୋଉ !! ମନୋରମା ଡ଼ାକିଲା ।
ଜବାବ ପାଇଲା ନାହିଁ ।

"ନୀଳିମା କାହିଁ ବୋଉ ? ଘର ଅନ୍ଧାର କାହିଁକି ? ଶ୍ୟାମଳା କଲିକତାରୁ ଫେରିଲାଣି ? କ'ଣ ହୋଇଛି ଆଜି ସମସ୍ତଙ୍କର ?" ମନୋରମା ଭଗ୍ନ କଣ୍ଠରେ ପଚାରିଲେ, ଏଥର ବୋଉ ମୁହଁ ଉଠାଇଲା ବୋଉ ।

"ସେ ମୁଆଡ଼େ ଯାଇଥିଲା...ନୀଳିମା ବି ସିଆଡ଼େ ଯାଇଛି ।"

"ମାନେ !!" ମନୋରମା ହତବାକ୍ ହୋଇ ପଚାରିଲା,

"କେଉଁ ଦେବେଣ୍‌ର ଜନ୍ମଦିନ ପାର୍ଟି'ରେ ଯୋଗ ଦେବାକୁ ସେ ଯାଇଛି ଯେ ଏପର୍ଯ୍ୟନ୍ତ ଫେରିନି । ଶ୍ୟାମଳା ବି କାଲିଠାରୁ ଫେରିନି ।" କିଛିକ୍ଷଣ ନୀରବ ରହି ବୋଉ ମନୋରମା ଉପରେ ସିଧା ସଳଖ ଦୃଷ୍ଟି ଫିଙ୍ଗିଥିଲେ— "ଏ ସବୁ ପାଳି ଆଉ କେତେଦିନ ଚଳିବ ମନୋରମା ? ନୀଳିମାର କଥା ଆଉ ଭଲ ଲାଗୁନି ମତେ । ଗଲାବେଳେ ବହୁତ ଆକଟ କଲି, ହେଲେ ସେ ମତେ କ'ଣ ଜବାବ ଦେଲା ଜାଣୁ—ବୋଉ ଅପା ଯଦି ଏ ବୟସରେ ପୁରୁଷ ବନ୍ଧୁ ଖୋଜି ବୁଲେ....ମୁଁ ଖାଲି କେଉଁ ବନ୍ଧୁର ଜନ୍ମ ଦିନରେ ଯୋଗ ଦେଲେ ଏତେ ଆପତ୍ତି କାହିଁକି ?" ଏତିକି କହି ବୋଉ କାନ୍ଦି ଉଠିଲା ।

ପୁଣି କହିଲା—"ସବୁ ତୁ ପାଶୋରୁ ମନୁ ସବୁ ତୁ ପାଶୋରୁ । ନୀଳିମାର ବଦନାମ ନହାନ୍ତା ଦଯୋଗ ।"

ବଦନାମ ? ନୀଳିମାର ? ମନୋରମା ଅସ୍ପଷ୍ଟ ଚିତ୍କାର କଲା । ବୋଉ କ'ଣ ପାଇ ମନୋନୀତ କରି ସାରିଛଣି ନୀଳିମା ପାଇଁ ?

ଆଚମ୍ବିତ ଚକିତ ସ୍ୱରରେ କହିଲା—"କହ ମୁଁ କେମିତି ପାରିବ ?" ବୋଉ କହିଲେ—"ସେଇ ଭିଜିଲାନ୍ସ ଅଫିସର ଅନୁରାଗ, ଭଲ ପିଲାଟିଏ । ନୀଳିମା ରାଜି ଅଛି ।"

"ବୋଉ" !!! ମନୋରମା କଣ୍ଠ ଫଟାଇ ଚିତ୍କାର କରି ଉଠିଲା, ବୋଉ ଆଗରେ ଦଣ୍ଡେ ଛିଡ଼ା ହେବାକୁ ଆଉ ଇଚ୍ଛା କଲାନାହିଁ । ଏକ ପ୍ରକାର ଦୌଡ଼ି

ଚ୍ଛଲ ଆସିଲା ସେ । ନିଜ ରୁମ୍‌କୁ ଆସି ଚଟାଣ ଉପରେ ବିପର୍ଯ୍ୟସ୍ତ ଭାବରେ ନିଜକୁ ଲେଟାଇ ଦେଲା, କାନ୍ଦ କାନ୍ଦ ମୁଣ୍ଡପିଟି ଆକୁଳିତ ହେଲା ମନୋରମା । ସମସ୍ତ ଶ୍ରମ, ସାଧନା, ବିନମ୍ରସ୍ୱରେ ଯେଉଁ ପରିବାର ତାର ପାଇଁ କାନ୍ଦୁଛି, ସେ ପରିବାର ତାର ଠାରୁ ସମସ୍ତ ଛଡାଇ ନେବାକୁ ଏତେ ବ୍ୟସ୍ତ କାହିଁକି ? ତାକୁ ଏତେ ନିସ୍ୱ ଓ ପଙ୍ଗୁ କରିଦେବାକୁ ସଭିଏଁ ବ୍ୟସ୍ତ, ବ୍ୟାକୁଳ ?? କି ଅପରାଧ କରିଛି ସିଏ ? ଏତେ ପ୍ରାୟଶ୍ଚିତ୍ତ କରିବ ତହିଁରୁ ନିସ୍ତାର ନାହିଁ ? ଯେଉଁ ଆଦର୍ଶ ପଛରେ ସେ ଏପର୍ଯ୍ୟନ୍ତ ଦୌଡ଼ିଥିଲା ସେ ଆଦର୍ଶ ତାହାହେଲେ ଅଳୀକ, ପ୍ରତାରଣା ? ମଣିଷର ସ୍ୱାର୍ଥପର ମନ ପାଖରେ ଆଦର୍ଶ, ସତ୍ୟ, ସବୁ କ'ଣ ମିଛ ? ଜେଲ କୋଠରୀ ଭିତରେ ମଧ୍ୟରେ ବାପାଙ୍କ ଜୀବିତ ଅବସ୍ଥାରେ ମଧ୍ୟ ଭୁହାକୁ ଭୁହା ବେଦନାର ଲହରୀ ତାଙ୍କ ମନର ବିପରୀତକୁ ଧୋଇ ଦେଇ ଯାଉଛି । ଲହରୀର ଅନ୍ତରାଳକୁ ଖୋଜିର ନକଣ କାହାର ମାନଙ୍କ ପାଇଁ ସେ ଜଳୁଛି । ଜଳ ଜଳ ଅପେକ୍ଷା କରୁଛି ନୀଳିମା ଓ ଶ୍ୟାମଳର ଭବିଷ୍ୟତ ପର୍ଯ୍ୟନ୍ତ । ଦାହନର ଗରଳକୁ ସେ ଉଦର ଭରି ପାନ କରୁଛି ନିର୍ବିକାରରେ । ଗରଳର ଜ୍ୱାଳାରେ ତାର କଣ୍ଠ ଯଦି ନୀଳ ହୁଏ, ଚକ୍ଷୁରୁ ଅଶ୍ରୁ ବହେ ତଥାପି ସେ ପାଇଁ ଦାୟୀ କିଏ ??
କାହାର ଦୁର୍ଗତି ପାଇଁ କେହି ଦାୟୀ ନୁହେଁ ।
ନିଜେ କେବଳ ନିଜ ପାଇଁ ଦାୟୀ ।

ମନୋରମା ଗଭୀର ଭାବରେ ଚିନ୍ତାକଲା । ପ୍ରକୃତରେ ସମସ୍ତେ ସ୍ୱାର୍ଥପର । ସର୍କସର କ୍ଲାଉନ୍ ଭଳି ନାଚି ନାଚି ଅନ୍ୟକୁ ହସାଇବାରେ କି ଦାୟିତ୍ୱ ? ଅନ୍ୟମାନଙ୍କ ସୁଖ ପାଇଁ ନିଜ ମୁହଁରେ ରଙ୍ଗ ମାଖିବା ସତରେ ବଡ଼ ଅସହାୟକର । ମନୋରମା ଭାବିଲା—ସତେ ଯେମିତି ତାର ବ୍ୟକ୍ତିତ୍ୱର ଅପମୃତ୍ୟୁ ଘଟିଛି । ସେ ଅନୁଭବ କଲା ତାର ଜୀବନରେ ଶାନ୍ତି ନାହିଁ । ସେ ଅବା ତ୍ରିଶଙ୍କୁ ଭଳି ଶୂନ୍ୟରେ ଝୁଲି ରହିଛି ।

ହଠାତ୍ ବାହାରେ ଗାଡ଼ି ରହିବାର ଶବ୍ଦରେ ମନୋରମାର ଚେତନା ଫେରି ଆସିଲା । ଝର୍କା ଅଳିନ୍ଦ ମେଲିକରି ଚାହିଁଲା । ଏକ ଚକୋଲେଟ୍ ରଙ୍ଗର ଆମ୍ବାସଡ଼ାର ଗାଡ଼ିରୁ ନୀଳିମା ଓହ୍ଲାଉଛି । ଏଇଟା ଦେବେଶର ଗାଡ଼ି । ଏତେ ବେଦନାରେ ବି ମନୋରମା ମ୍ଳାନ ହସିଲା । ଦେବେଶ୍ ଘରେ ବନ୍ଧୁ ସମସ୍ତ ଅଟକି ଗଲା ନୀଳିମା, ଅଥଚ ତା' ଅପା କେଉଁଠି ଅଟକି ଯାଇନି ଏତବେଳଯାଏ କେଉଁଠି ।

ସେମିତି ବାହାରକୁ ଚାହିଁଥାଏ ମନୋରମା । ପୁଣି ଚିନ୍ତାଧାରାରେ ବାଧା

ଆଖି ପତା ଆଗରେ ଦୃଶ୍ୟଟିଏ ଝଟକିଲା । ହଠାତ୍ ଶ୍ୟାମଳ ଓହ୍ଲାଇଲା । ଶ୍ୟାମଳ ବୋଧହୁଏ କଲିକତାଠାରୁ ଫେରିଲା ପରେ ଆକ୍ରମଣର ଚେହେରା ନେଇ । ମନୋରମେ ହଠାତ ଅସ୍ୱାଭାବିକ ଭାବେ ଚକିତ ହୋଇ ଶୁଣିଲା ଏକ ନାରୀ କଣ୍ଠ । ଶ୍ୟାମଳ କେଉଁ ଝିଅ ସହ କଥା ହେଉଛି ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ତାର । ଯେଉଁ ଶ୍ୟାମଳ ନୀଳିମା କବରୀର ଲାଲ୍ ଗୋଲାପ ଦେଖି ବିରକ୍ତ ବୋଧ କରୁଥିଲା, ଫୁଲ ଯାହା ଆଖିରେ ପ୍ରେମର ପ୍ରତିବନ୍ଧକ, ସେଇ ଶ୍ୟାମଳ— ମାଙ୍କ ବାଧ୍ୟ ଶିଶୁ କେଉଁଠୁ ଏକ ସୁକୋମଳ ଫୁଲ ତୋଳି ଆଣି ଛାତିରେ ଧରିଛି ? କେଉଁ ଫୁଲର ପରାଗରେ ଜନ୍ମାନ୍ଧ ଶ୍ୟାମଳଙ୍କ ପ୍ରାଣ ଆଚ୍ଛନ୍ନ ହୋଇ ଉଠିଛି । କିପରି ଏ ସମ୍ଭବ ?

ଏତେ ଦୁଃଖରେ ବି ଖୁସି ହେଲା ମନୋରମା । ଶ୍ୟାମଳ ଏଥର ବାଟକୁ ଆସିଗଲା ନିଶ୍ଚୟ । ପ୍ରତିବନ୍ଧକ ଆସିଲେ ମଣିଷ ମାପିଚୁପି ଚାଲେ । ସେଇ ବନ୍ଧନ ଭିତରୁ ଶ୍ୟାମଳ ଜୀବନରେ ଆସିଛି । ଶ୍ୟାମଳ ଏବେ ମଣିଷ ହେବ । ମନୋରମା ଏଥର ଆଲୋକ ଜାଳିଲା । ଘରସାରା ଆଲୋକର ପ୍ରବାହ ଖେଳିଗଲା । ମନୋରମା ଆଖିରେ ପଡ଼ିଲା ଅରବିନ୍ଦଙ୍କର ଏକ ଯୋଗ ମୁଦ୍ରାବଦ୍ଧ ଫଟୋ । ସେ ଫଟୋକୁ ଅତି ଭକ୍ତିରେ ପ୍ରଣାମ କଲା ସେ ।

ଏଥର ମନୋରମା ମୁକ୍ତ । କେବଳ କଥା ରହିଲା ନୀଳିମାର । ଏହି କଥା ଭାବିଲେ ତେବେ ହୃଦୟ ଭିତରେ କୋଉଠି ଗୁଡ଼ିକର ଲାଗିଲା । ନିଜକୁ ସେ କୌଣସି ପରିସ୍ଥିତି ପାଇଁ ସତର୍କ କରିଦେଲା । ଏବେ ନିଜପାଇଁ କିଛୁ ଠିକ୍ କରିବାକୁ ହେବ । ବର୍ତ୍ତମାନ ତାକୁ ଲାଗିଲା 'ନିଜର ଉତ୍ସର୍ଗୀତ'ଟା ସତେ ଅବା କଦମ୍ବ ଫୁଲଟାଏ । ହାତ ପାପୁଲିରେ ଥୋଇ ସେ ତା'ର ଓଜନ କଲାଭଳି କଲା ସେଇ କଦମ୍ବ ଫୁଲଟା । ବଡ଼ ଓଜନିଆ ଲାଗିଲା ତାକୁ । ଆଦର୍ଶ ପାଖରେ ଧାରିଲେ ଅନେକ ମୂଲ୍ୟ ଦେବାକୁ ହୁଏ । ବର୍ତ୍ତମାନ ଅନୁରାଗ କଥା ନିର୍ବିବାଦରେ ଚିନ୍ତା କରାଯାଇ ପାରେ । ଆଖିବୁଜି, ଛାତିର କୋହକୁ ଚାପିରଖି ମନେ ମନେ ଅନୁରାଗକୁ ନୀଳିମା ହାତରେ ସମର୍ପି ଦେଲା ମନୋରମା । ସବୁ ଦେଇ ପୁଣି ନିଜକୁ ନିସ୍ୱ କରିବାରେ ଯେଉଁ ଆନନ୍ଦ ରହିଛି— ତୃପ୍ତି ରହିଛି; ତାକୁ ପୁଣି ଥରେ ଅନୁଭବ କରି ନିଜକୁ ହାଲ୍‌କା ମନେକଲା । ତାର ସମସ୍ତ କାମନା ଓ ଯୌବନର ଅସହ୍ୟ ବିଳାପକୁ ପାଦରେ ପକାଇ ବରଂ ବିପୁଳ ମୁକ୍ତିର ମହାଉଦ୍ୟାନରେ ଅଶ୍ରୁ ଶିଶିରସିକ୍ତ ଗୋଲାପଟିଏ ପରି ସେ ସତେଜ ହୋଇଉଠିଲା ।

ଏଥର ତାର ଚିନ୍ତା ନାହିଁ । କେହି ନ ବୁଝିଲେ ବି ଜଣେ ଅନ୍ତତଃ ବୁଝିବ ତାକୁ । ଆଖି ଖୋଲି ମନୋରମା ଚାହିଁଲା ବୁଦ୍ଧ ଓ ଅରବିନ୍ଦଙ୍କ ପ୍ରତିକୃତିକୁ । ମନୋରମାର ମନେହେଲା ଅରବିନ୍ଦଙ୍କର କରକମଳରୁ ଆଲୋକର ଧାରା ଝରୁଛି । ବୁଦ୍ଧଦେବଙ୍କର ସ୍ନିଗ୍ଧ ସ୍ପନ୍ଦନ ବିଚ୍ଛୁରିତହୋଇ ପଡ଼ୁଛି । ସେ ଆଲୋକର ସମୁଦ୍ରରେ ସ୍ନାନ କରି ଯନ୍ତ୍ରଣାର ଉପଶମ ପାଇବା ପାଇଁ ମନୋରମା ବ୍ୟାକୁଳ ହୋଇଉଠିଲା । ଜୀବନର

ଅଜସ୍ର ଜ୍ୱଳନ ଅସଂଖ୍ୟ ଦହନ ଭିତରେ ସେଇ ଗୋଟିଏ ଧାର ସାନ୍ତ୍ୱନା । କାହାର ?' କ୍ରମେ ମନୋରମା ନିଜର ସକଳ ଯନ୍ତ୍ରଣା ଧାରଣାର ସନ୍ଧାନ ପାଉଛି ଏବଂ କେଉଁ ନୂତନ ଆଲୋକ ପାଇଁ ଅଗ୍ରସର ହେଉଛି । ଅତୀତ ମନୋରମାର ମୃତ୍ୟୁ ଘଣ୍ଟି । ମୃତ୍ୟୁ ଘଣ୍ଟି ସମସ୍ତ କାମନାର । ଅନୁରାଗ କମ୍ପା ତା' ନିଜର ପରିବାର ପାଇଁ ତାର ଦୁଃଖ ନାହିଁ, କାତର ଭାବ ନାହିଁ । ମନେପଡ଼ିଲା କେବେ କେଉଁଠି ପଢ଼ିଥିବା ଉପନିଷଦ ବାଣୀ— "ମନ୍ମନା ମଦ୍‌ଭକ୍ତୋ ମଦ୍ୟାଜୀ ମାଂ ନମସ୍କୁରୁ ।" ସେ ଏବେ ମୁକ୍ତ । ମୁକ୍ତ । ନିଜକୁ ମୁକ୍ତ କରିବା ପାଇଁ ସେ ବ୍ୟାକୁଳ ହୋଇଉଠିଲା । ଏ ଘରର ବାହାରେ ସତେ ଯେମିତି ମୁକ୍ତି ତାକୁ ଅପେକ୍ଷା କରି ରହିଛି । ମନୋରମା ଭାବିଥିଲା ପରିବାରର ବିଶ୍ୱାସକୁ ନେଇ ବଞ୍ଚିବ । ମାତ୍ର ଏ ବିଶ୍ୱାସହୀନ ପୃଥିବୀରେ ମଣିଷ ବିଶ୍ୱାସକୁ ବିଶ୍ୱାସ କରି ସେ ବଡ଼ ଠକିଗଲା । ହୁଏତ ଏ ମଣିଷ କେବଳ ଛଳନା ଓ ପ୍ରତାରଣାକୁ କେନ୍ଦ୍ର କରି ବଞ୍ଚେ ।

ମନୋରମା ଏକନିଶ୍ୱାସରେ ବାହାରକୁ ଚାଲିଆସିଲା । ପଛରେ ସମସ୍ତେ ସୁପ୍ତ । ସେଇ ଏକା ଜାଗ୍ରତ । ସେ ରାସ୍ତାରେ ଏକା ଏକା ଆସିଲା ଷ୍ଟେସନ ପର୍ଯ୍ୟନ୍ତ । ମାଡ୍ରାସ ଏକ୍‌ସପ୍ରେସ୍ ଆସିବାକୁ ଆହୁରି ଘଣ୍ଟାଏ ବାକି । ଓ୍ୱେଟିଂରୁମ୍‌ରେ ବସି ପ୍ରଥମେ ଅନୁରାଗ ପାଖକୁ ଚିଠି ଲେଖିଲା ।

ଅନୁରାଗ,

ଶୁଭେଚ୍ଛା । ତମ ପାଖକୁ ଏଇଟା ମୋର ପ୍ରଥମ ଓ ଶେଷ ଚିଠି । ଏଥିରେ ମୋର ଦୁର୍ବଳତା ନାହିଁ ବୋଲି ଅସ୍ୱୀକାର କରୁନି । ସେଇ ଦୁର୍ବଳତା ଯୋଗୁଁ ତମକୁ ମୁଁ ଭଲ ପାଇଥିଲି । ସେଇ ଭଲ ପାଇବାର ସୁଯୋଗରେ ଏ ମୋର ବିନମ୍ର ଅନୁରୋଧ । ସବୁ କିଛି ତ୍ୟାଗ କରି ଚାଲିଯାଉଥିବା ଏକ ଅସହାୟ ମିନତି ତମେ ରଖିବ ଅନୁରାଗ । ମୋ ରାଣ । ମୋ ରାଣ ।

ମୁଁ କୁଆଡ଼େ ଯାଉଛି ଜାଣେନା । ସିନେମା ଫେରନ୍ତା ରାସ୍ତାରେ ତମ ଦେହ ସ୍ପର୍ଶ ଟିକକ ପାଥେୟ କରି ମୁଁ ଯାଉଛି ଜାଣେନା । ଏଇ ମୁହୂର୍ତ୍ତରେ ତମକୁ ତମର ଏକାନ୍ତ ପ୍ରେମିକା ହିସାବରେ ମୋର ଅନୁରୋଧ ମୋ ବଦଳରେ ମଳୟାକୁ ଏକାନ୍ତ କରିନେବ । ତାକୁ ସମସ୍ତ ସ୍ନେହ, ସୌହାର୍ଦ୍ଦ୍ୟ ଦେବ—ଯାହା ମୋ ପାଇଁ ସାଇତି ରଖିଥିଲ । ବିଶ୍ୱାସ କରିବି—ତାକୁ ଭୁଲ୍ ବୁଝିବନି ।

ଶ୍ୟାମଳ କଥା ମୋର ଚିନ୍ତା ନାହିଁ । କଲିକତାରୁ ଫେରି ସେ ଯଥେଷ୍ଟ କୋମଳ ଓ ବିଚାରଶୀଳ ହୋଇ ଉଠିଛି । କେବଳ ତାର ଚୁକ୍ତି କଥା ବୁଝିବ । ଏ ପ୍ରତିଶ୍ରୁତି ତ ତମେ ଆଗରୁ ଦେଇଛ । ମୋର ସବୁ ଅନୁରୋଧ ରଖିଛ ।

ଏଇ ସାମାନ୍ୟ ଅନୁରୋଧ ରଖିବ। ମୁଁ ଯାଉଛି। ଭିଜିଲାନ୍ସ ଅଫିସର ସ୍ୱଭାବେ । ତମର ଖୋଜାଖୋଜି ବ୍ୟର୍ଥ ହେବ । ସେ ଚେଷ୍ଟା କରିବନି । ମୁଁ କୌଣସି ବିନାଶଶୀଳ ସମ୍ପର୍କରେ ବିଶ୍ୱାସୀ ନୁହଁ ଅନୁରାଗ । ଭକ୍ତିରେ ମୋର ବିଶ୍ୱାସ । ଅନୁରାଗ ତମକୁ ମୋର ସଭକ୍ତି ନମସ୍କାର । ।। ଇତି ।।

ତମର

ମନୋରମା

ଆଉ ଝଣ୍ଡିଏ ଚିଠି ଶ୍ୟାମଳ ପାଖକୁ ଲେଖିଲି ।

ଶ୍ୟାମଳ,

ଯେଉଁ ବିଶ୍ରାମ କଥା ତତେ କହୁଥିଲି, ସେଇ ବିଶ୍ରାମ ପାଇଁ ଗଲିଲି । ମନେରଖ, ବୋଉକୁ ଦୁଃଖ ଦେବୁନି । ତମମାନଙ୍କୁ ଯଥେଷ୍ଟ ଦୁଃଖ ଦେବାପରେ ମୁଁ ଏବେ କୁଆଡ଼େ ଯାଉଛି ଜାଣେ । ମୁଁ ମୋର ଆତ୍ମାର ପବିତ୍ର ଉଚ୍ଚାରଣ ଖୋଜି, ପାଇଛି ।

ସ୍ନେହ ନେବୁ । ନୀଳିମା ଦାୟିତ୍ୱ ମୁଁ ଅନୁରାଗକୁ ଦେଇଛି । ।। ଇତି ।।

ତୋର, ଅପା

ଦୁଇଟି ଚିଠିକୁ ଚିଠି ବାକ୍ସରେ ପକାଇ ଦୀର୍ଘଶ୍ୱାସ ନେଲି ମନୋରମା । ସେ ସ୍ୱପ୍ନ ଦେଖୁଛି । ନିର୍ବାଣ—ମହାମୁକ୍ତିର ସ୍ୱପ୍ନ । ଏବେ ସେ ମୁକ୍ତ । ଅନୁରାଗର ପ୍ରୀତି, ପରିବାରର ବନ୍ଧନ ତାକୁ ଆଉ ବାନ୍ଧି ପାରୁନି । ଅନ୍ୟ ଏକ ବୃହତ୍ତର ପ୍ରୀତିର ସନ୍ଧାନ ପାଇଛି । ଅନ୍ୟଏକ ପ୍ରାଣଶକ୍ତିର ପରିଚୟ ସେ ପାଇଛି । ଯୁବତୀ ମନୋରମାର ମୃତ୍ୟୁ ଘଟିଛି । ମହାପ୍ରସ୍ଥାନ ଘଟିଛି। ସେ ମୃତ୍ୟୁର ହୋମାନଳରୁ ନୂତନ ରୂପ ଧରି ଅନ୍ୟ ଏକ ରମଣୀ ଜନ୍ମ ନେଇଛି । ଏକ ବିଚିତ୍ର ଅନୁଭୂତିର ଅନ୍ତରାଳରେ ଆତ୍ମଗୋପନ କଲି ସ୍ୱାର୍ଥପର ଚିନ୍ତା, ସଙ୍କୀର୍ଣ୍ଣତା, କ୍ଷୁଦ୍ରତା, ସମସ୍ତ ଜଡ଼ କାମନା, ବାସ୍ନା ।

ମନୋରମା ସଜାଗ ହେଲି । ଗାଡ଼ି ଆସିଯିବ ଏଇକ୍ଷଣି । ବର୍ତ୍ତମାନଠାରୁ ତାର ଜୀବନ ଆରମ୍ଭ ହେବାକୁ ଯାଉଛି । ପବିତ୍ରତାର ଜୀବନ । ମନୋରମା ଭବିଷ୍ୟତକୁ ଭେଟିବାକୁ ଭଗବାନଙ୍କ ପାଖରେ ସାହସ, ଧୈର୍ଯ୍ୟ ଭିକ୍ଷା କଲି । କାତର ସ୍ୱରରେ ଡ଼ାକିଲି—

ତମସୋ ମାଂ ଜ୍ୟୋତିର୍ଗମୟ

**Lead me from darkness to light**

ସେତେବେଳକୁ ଟ୍ରେନ, ଷ୍ଟେସନରେ ଉପସ୍ଥିତ ସାବ୍ୟସ୍ତ କରୁଥିଲି ।

———



# କାହାଣୀ-
# ଏକ ପ୍ରଶ୍ନବାଚୀର


**ମାନଗୋବିନ୍ଦ ବାରିକ**


ତୋତେ ମୋ ଗଳ୍ପର ନାୟିକା କରି ମୁଁ ଯେତେ ଲେଖୁଛି, ସେ ସବୁ ଯେ କାହିଁକି ଗଳ୍ପ ନ ହୋଇ ଅନ୍ୟ କାହାଣୀ ହୋଇଯାଉଛି ତା' ମୁଁ ଜାଣିପାରୁନି । କଳ୍ପନାର ସାରହୀନ୍ୟ ରହୁନି, କଳ୍ପନା ବିଳାପ ଲୋପ ହୋଇ ଯାଉଛି ଆଉ ଗଳ୍ପ ତାର ମୂଲ୍ୟବୋଧ ହରାଇ ବସୁଛି । ସବୁଠାରୁ ବେଶୀ ଦୁଃଖର କଥା ଏଇ ଯେ, ତୁ ତ ମୋର ପ୍ରେମିକା ନୁହେଁ ଯେ ତୋତେ ନେଇ ମୁଁ ମୋ ପ୍ରେମର ତାଜମହଲଟିଏ ଗଢ଼ିଦେବି । ହୃଦୟର ସବୁ ପକାର ଆନ୍ତରିକତାକୁ ଗୋଟେଇ ଗୋଟିଏ କୋଣାର୍କ ଗଢ଼ିବାର ସ୍ୱପ୍ନ ଦେଖିଥିଲି । ବାରଶହ ବଢ଼େଇର ଶକ୍ତିକୁ ମୋ ଭିତରେ ପୁଞ୍ଜିଭୂତ କରି ଚୋହଳ ବର୍ଷ ଲାଗି ମନ୍ଦିରଟି ଗଢ଼ି ଦେଲି ସିନା, 'ମୁଁ' ତୋତେ ଧର୍ମପଦ କରି ପାରିଲିନି । ମନ୍ଦିରର ଚୂଳ ମାରିବା କାର୍ଯ୍ୟ ଶେଷ କଲି ପୂର୍ବରୁ ସେମାନେ ମୋତେ ହତ୍ୟା କଲେ । ମୋର ସ୍ୱପ୍ନ ଭାଙ୍ଗି ଗଲା ।

ମୁଁ ଦେଖିଲି ପୁଣି ତୋତେ ଏକ ଭିନ୍ନ ରୂପରେ । ସେଇଦିନୁ ଅନୁଭବ କଲି ମାଟିରେ ମଧୁର ବାସ୍ନା । ଜ୍ୟୋତ୍ସ୍ନାରେ ଶୀତଳ ଚନ୍ଦନ । ଫୁଲରେ ଅସୁମାରି ସୁରଭି । ଆକାଶରେ ଅନନ୍ତ ସୋହାଗ । ମଳୟରେ କଦମ୍ବ ପରଶ । ତାହାରେ ହୀରାର ଝଟକ । ନଦୀରେ ମତୁଆଲି ତରଙ୍ଗ ଆଉ ହ୍ରାଣୁରେ ଗୋଲାପି ଚଢ଼ି । ତାପରେ ମୋ ଆଖିରେ ନାଚିଲା ଏଡ଼ଗୃତୁ ଲଦା ପକ୍ଷୀବାଜ ବନନୀଳ ଉଲୁର ଅପୂର୍ବ ରଙ୍ଗ । ତୋ ରେଶୁ ରେଶୁ ସ୍ମିତରେ ଖୁଣୁ ଖୁଣୁ ଅଳିର ଗୁଞ୍ଜନ । ତୋ ଚନ୍ଦନ-ଅଧର-ପ୍ରସୂତ ମୁଠା ମୁଠା କଇଁଫୁଲ । ଉଦାସ ଆଖିଯୋଡ଼ିକରେ ଅସୁତ ମନର ବୁଭୁକ୍ଷା । ଦେହରେ ଯୌବନର ତାଟକ ଏବଂ ମନରେ ମାଦର ଉଦ୍ବେଗ । ମନକୁ ସଜାଡ଼ି ନେଇ ପୁଣି କଳ୍ପନା କଲି ଗୋଟିଏ ତାଜ । ତୁ ଯାହା ବୁଝୁଁ ଥିଲୁ, ମାତ୍ର ମୁଁ ଶାହାଜାହାନ ହୋଇ ପାରିଲିନି କି ମୋ ମମତାଜ ମହଲକୁ ମୋ ହୃଦୟ

କୋଟେ ପୋଛି ଦେଇ ପାରିଲିନି । ମୋ ମନର ଯମୁନା କୂଳ ସେଦିନ ଶୂନ୍ୟ ହୋଇଗଲା । ତା ଜଳରାଶି ମଧ୍ୟରେ ମୁଁ ନିରୀକ୍ଷଣ କଲି ମୋର ପ୍ରତିବିମ୍ବ । ଚହଲା ପାଣିରେ ସେ କେମିତି ଖଣ୍ଡ ଖଣ୍ଡ ହୋଇଯାଉଥିଲା ।

କେଉଁ ଏକ ସୁନା ଟହଟିଆ ଅଳସ ସନ୍ଧ୍ୟାରେ ଜଣେ ରାଜକୁମାରୀ ପକ୍ଷୀରାଜ ଘୋଡ଼ାରେ ବସି ସପନ ଦେଶର ରାଜକୁମାରଙ୍କ ଅଦ୍ଭୁତ ପ୍ରମୋଦ ବଗିଚାରେ ଯାଉଥିଲେ । ବାଟରେ ଅଜଣା ଅଗମ୍ୟ ବନାନ୍ତ । ତା ଭିତରେ ଗୋଟିଏ ଶତଦଳ ସୁଶୋଭିତ ପୁଷ୍କରିଣୀ । କାଚଧାର ପରି ସ୍ୱଚ୍ଛ ଜଳ, ରାଜକୁମାରୀଙ୍କ ଅନ୍ନ ଏକ ରକ୍ତ ପଦ୍ମ ନିମନ୍ତେ । ରାଜକୁମାର ପୁଷ୍କରିଣୀ ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ମାତ୍ର ଫୁଲଟିରେ ହାତଦେଲା ମାତ୍ରେ ବୁଡ଼ିଗଲା । ରାଜକୁମାର ତା'ର ଅନୁଧାବନ କଲେ । ସେ ଯେଉଁଠି ପହଞ୍ଚିଲେ ତାଙ୍କର ଦୃଷ୍ଟିପଥକୁ ଆସିଲା ଶଙ୍ଖ ମର୍ମର ପ୍ରସ୍ତରରେ ନିର୍ମିତ ଇନ୍ଦ୍ରପୁରୀ ପରି ଏକ ବିରାଟ ରାଜପ୍ରସାଦ । ଫୁଲଟି ସେ ରାଜ୍ୟର ରାଜକୁମାରୀ । ସୁନ୍ଦର ରୂପ, ବାରହାତ ବେଣୀ, ଯୋଗୀମନ ଜିଣା ମଞ୍ଜୁଳ ନୟନ ମୂରତି ।

ପାର୍କର ନିଅନ ଲାଇଟ ତଳେ ସିମେଣ୍ଟ ସୋଫାରେ ତୁ ବସିଥିଲୁ । ତାପରେ ଅନେକ ସନ୍ଧ୍ୟା ଏମିତି ଆସିଛି । ଅନେକ ଥର ତୋତେ ଦେଖିଛି ରେଷ୍ଟୋରାଣ୍ଟ, କ୍ଲବ୍, ବାର୍, ପାର୍ଟି ଓ ପ୍ରୋଗ୍ରାମରେ । ଓଠରେ ଲିପଷ୍ଟିକ୍, ବକ୍ଷୋପରେ ସ୍ଲିଭଲେସ୍ ବ୍ଲାଉଜ, ପାଦରେ ହାଇହିଲ ଜୋତାର ଆଭରଣରେ । ତୋତେ ନେଇ ସେ ଅଲଟ୍ରା ମଡ଼ର୍ଣ୍ଣ ଯୁବକ ଜଣକ ଲୈଲି-ମଜନୁ, ରୋମିଏ-ଜୁଲିଏଟ୍‌ର ସ୍ୱପ୍ନ ଦେଖିଥିଲେ । ହେଲେ କ'ଣ ହେଲା ? ପାର୍କ, ବାର କମ୍ବା ପାର୍ଟିରେ ସେ ମହାଶୟଙ୍କୁ ଆଉ ତୋ ସହିତ ଦେଖିବାକୁ ମିଳିଲାନି । ସେ କୁଆଡ଼େ ଆଜିକାଲି ସଚ୍ଚୋଟ ହୋଇ ଗଲେଣି ବୋଲି ସମାଜ କହୁଛି, ସଚ୍ଚୋଟ ପଣିଆ ଆଉ ନୈତିକତା କାହାକୁ କୁହାଯାଏ ସେ କଥା ସମାଜ ଜାଣେ । ସମାଜ ଯାହା କହୁଛି, ମୁଁ ତ ଆଉ ପ୍ରତିବାଦ କରିପାରିବନି କାରଣ ଏ ସମାଜର ପଞ୍ଜୁରୀରେ ମୁଁ ପୋଷାମନା ଶୁଆଟିଏ । କେବଳ ରାମନାମ ରଟିବା ପାଇଁ ମୋର ସୃଷ୍ଟି ।

ସୌଦାଗର ପୁଅକୁ ବୋଇତ ଭିତରୁ ଡାକିଲା ରାଜକୁମାରୀ । ସୁଠାମ ସୁନ୍ଦର ଯୁବକ । କଞ୍ଚାସୁନା ଭଳି ରଙ୍ଗ । କନ୍ଦର୍ପ ଜିଣା ମୂର୍ତ୍ତି । ପାହାଡ଼ର ଗୋଟିଏ ଗୁମ୍ଫା, ସେଇଠି ଯାଇ ପହଞ୍ଚିଲେ ସେମାନେ । ଶହଳିଆ ଗଛ ସନ୍ଧିରେ ଗୁମ୍ଫାଟି ଭୟଙ୍କର । ସୌଦାଗର ପୁଅ ଦେଖିଲା, ସେଠିକି ଅନେକ ରାଜକୁମାର ଧାଇଁ କରି ଆସନ୍ତି । ସେ ବି ସେମାନଙ୍କ ମଧ୍ୟରୁ ଜଣେ ହୋଇଗଲା । ବହୁତ ବାରଣ

କଲ, ହେଲେ ରାଜକୁମାରୀ ମାନିଲେନି । ସୌଦାଗର ପୁଅ ମନରେ ଅନ୍ଧକାର ଘୋଟିଗଲା । ସେ ଘୋଡ଼ାକୁ ଫେରେଇଲା । ଘରେ ପହଞ୍ଚି ଶୋଇଗଲା । ରାଜକୁମାରୀ ଶୋଇଥିବା ଅବସ୍ଥାରେ ସୌଦାଗର ପୁଅ ଚମକି ଦେଲା । ଏମିତି ମନ୍ତ୍ରୀ ପୁଅ ଠାରୁ କୋଟୁଆଳ ପୁଅ ଯାଏ କେତେ ଆସିଥିଲେ ଯାଇଥିଲେ । କିନ୍ତୁ ରାଜକୁମାରୀଙ୍କ ସେମାନଙ୍କୁ ଚାହୁଁନଥିଲେ କି ସେମାନେ ରାଜକୁମାରୀଙ୍କୁ ଆପଣାର କରି ପାରି ନାହାନ୍ତି ।

ଝାପସା ସ୍ମୃତିର ଆଡ଼ରେ ତୋତେ ଏକ ଭିନ୍ନ ରୂପରେ ଦେଖିଲି । ବଞ୍ଚିବାର ସାହସ ଖୋଜି ଜୀବନକୁ ଚଳି ଚଳି ଉପଭୋଗ କରି ଅସୁମାରୀ ସଖୀ ବିତାଇଲୁ ଲଳିତ-ଲବଙ୍ଗ-ଲତାର ଉଷ୍ମ କୋଳରେ । ଅନେକ ରାତି ଅତିବାହିତ କଲୁ ବଂଶୀଧ୍ୱନି-କଣ୍ଠସ୍ୱର ଉଚ୍ଛ୍ୱାସରେ । ସରଳତାର ସୁଯୋଗ ନେଇ ଓ ସମ୍ବେଦନଶୀଳତାର ଛଳନା କରି ସମସ୍ତେ ତୋ ତନୁ-ବୀଣାରେ ସପ୍ତମ ସ୍ୱର ତୋଳି ଦେଇଗଲେ । ହେଲେ ସେମାନେ ଆଜି କେଉଁଠି ? ହଁ, ତୁ କୁଆଡେ ଆଜିକାଲି ସୀତା ହୋଇ ଗଲୁଣି ! କିନ୍ତୁ ଏ ମାଟିରେ ରାବଣର ଅଭାବ ନାହିଁ । ଅଶୋକବନ ବତ ବଦଳୁଛି ଅଛି । ମାତ୍ର ଅଗ୍ନି ପରୀକ୍ଷା ଆଉ ହେଉନି, କେବଳ ସ୍ୱାଧୀନତାର ଦୋହାଇ ଦେଇ ଦେହ ମନରେ ବି ସ୍ୱାଧୀନ ହେବାର ଚେଷ୍ଟା ପୋଷଣ କରିବାରେ ଅସୁବିଧା କ'ଣ ? ଦେହରେ ଜୀର୍ଣ୍ଣତା, ମନରେ ଚିନ୍ତା, ଉପରେ ଉର୍ବଶୀ, ଅନ୍ଧକାରରେ ପିଙ୍ଗଳା ଓ ଅସ୍ପୃଷ୍ଟ ଦବାଳେକରେ ସାବନୀ କେ ଲଢ଼ିବାର ବା ଦ୍ୱିଧା କାହିଁକି ? ତୋ ସହିତ ପୁଣି ଦେଖାହେଲା । ଭାବିଲି, ସ୍ୱପ୍ନ ଦେଖିଲି । ସ୍ନେହ ସମର୍ପଣକୁ ବୁଣି ବୁଣି ଆତ୍ମୀୟତାକୁ ଖୋଜିଲି । ଦେହଲି ପାଇଲି କେଉଁଠି ? ମନକୁ ଚିନା ମନରେ ଛନ୍ଦି ପକେଇଲି, କିନ୍ତୁ ହୃଦୟ ସହିତ ହୃଦୟ ମିଶାଇ ପାରିଲିନି । ଆଶକ୍ତି ଆଉ ମମତାର ପାର୍ଥକ୍ୟ ବୁଝିଇ ପାରିଲିନି, ପ୍ରେମ ଆଉ ପ୍ରତାରଣାର ସାମ୍ୟତା ଆଣି ପାରିଲିନି । ତୋ ପାଇଁ 'ମୁଁ' ମୋତେ ମୋ ଭିତରେ ଯେତେଥର ଖୋଜିଲି ଆହୁରି କିଛି ହଜେଇଲି ସିନା, କିନ୍ତୁ ନୂଆ କିଛି ପାଇଲିନି ।

ମୋ ହୃଦୟର ଆଇନାରେ ତୋ ଫଟୋ ଚକ୍ ଚକ୍ କଲାପରି ତୁ ପୁଣି ମୋ ଆଖିକୁ ଆସିଲୁ । ମନଗହନରେ ସ୍ନେହ ମମତାକୁ ଠୁଳକରି ଅନେକ ବୁଝାଇଲି । ମୁଁ ଭାବିଥିଲି ଆମେ ସେଇଠିକି ଚାଲି ଯାଆନ୍ତେ ଯେଉଁଠି ନୀଳ ଆକାଶର ନେଳିଆ ନୀଳ ସବୁଜ ଘାସ ମଥାନରେ ବାଜୁଥାଆନ୍ତା, ଯୋଜନ ଯୋଜନ ବ୍ୟାପି ଧାନଗଛ ସନ୍ଧରେ ବାଇଚଢେଇର କୁଞ୍ଜୁ କୁଞ୍ଜୁ ଟାଟି ହୃଦୟରେ ଶିହରଣ ସୃଷ୍ଟି କରୁଥାଆନ୍ତା, ଝିରି ଝିରି ପବନରେ ସୋରିଷ ଫୁଲର ଆମୋଦ ବାସ୍ନା ତାନରେ କୁଆଁର ଉଠାଉଥାଆନ୍ତା, ସେଇଠି ଆମେ ରହିଥାଆନ୍ତେ ଆମ ଭଲ ପାଇବାର କୋଣାର୍କଟିଏ । ମୁଁ ବାରଣ୍ଡ ବନେଇଥି ଶକ୍ତ ଠୁଳକରି ମନ୍ଦିର ଚେଷ୍ଟାଥାନ୍ତି ଅଉ ତୁ ଧର୍ମପଦ ସାଜି-ଥାଆନ୍ତୁ । କିନ୍ତୁ ଏତେ ବୁଝାଇଲା ପରେ ବି ତୁ ମୋଠାରୁ ଦୂରେଇ ଗଲୁ । କ'ଣ ପାଇଁ ? ଜରଭାର କ୍ଳାନ୍ତିରେ ନା କୁନ୍ତିର ଆହତ କୁମାରୀତ୍ୱରେ ?? ଜନକାର ଆକ୍ଷେପରେ ସତରେ ତୁ କ'ଣ ମୋ ଦେହ ମନର ଲଙ୍କା ଛାଡ଼ି ବନବାସିନୀ ହୋଇ ଚାଲି ଯାଇଛୁ ଅନନ୍ତକାଳ ପାଇଁ ??

—※—



# – ଭିନ୍ନ ବଳୟ –

ପୂର୍ଣ୍ଣେନ୍ଦୁ ମିଶ୍ର

ତିନିଜଣ ଯାକ ଏକାଠି ହୋଇଛନ୍ତି । ଅନେକ ବର୍ଷ ପରେ କେଉଁ ଏକ ପରିତ୍ୟକ୍ତ ଡାକ ବଙ୍ଗଳାଟିରେ, ସହର ଓ ସଭ୍ୟତାକୁ ପଛରେ ପକାଇ, ଘଞ୍ଚ ଜଙ୍ଗଲ ମଧ୍ୟରେ ଥିବା ଡାକ ବଙ୍ଗଳାଟି ବିଶେଷ ବ୍ୟବହାରରେ ଲାଗେନାହିଁ । ଚୌକିଦାର ସନ୍ଧ୍ୟା ହେବା ଆଗରୁ ପାଖ ଗାଁକୁ ପଳାଇ ଯାଏ । ଡାକବଙ୍ଗଳାଟି ଆରଣ୍ୟକ ପରିବେଶ ଭିତରେ ରାତିଚରଙ୍କ ଚିତ୍କାର ହିଁ କେବଳ ଶୁଣୁଥାଏ । କିନ୍ତୁ ଆଜି ଡାକବଙ୍ଗଳାଟି ଜୀବନ ପାଇଛି । ଏଇଠି ତିନୋଟି ବନ୍ଧୁ ଏକାଠି ହୋଇଛନ୍ତି, ରାଜ୍ୟ ପ୍ରଶାସନ ବିଭାଗର ଶାସନ ସଚିବ ସୁବ୍ରତ ମହାନ୍ତି, ବରିଷ୍ଠ ଶିଳ୍ପପତି ଜୀବନ ମିଶ୍ର ଏବଂ ପ୍ରତିଷ୍ଠିତ ଚିତ୍ରକର ଦୀପକ ଦାସ ।

ତିନିହେଁ ନିଜ ନିଜ ଗୁଣରେ ଭାସ୍ୱର । ଏମାନେ ଦିନେ ବନ୍ଧୁ ଥିଲେ । ଆଜି ଅନେକ ବର୍ଷ ପରେ ନିଜ ନିଜର ସୁଖୀ ପରିବାର ଏବଂ ପ୍ରତିଷ୍ଠା ଛାଡ଼ି ଏଠାକୁ ଆସିଛନ୍ତି । ପରସ୍ପରକୁ ଦେଖି ପ୍ରଥମେ ଅବିଶ୍ୱାସ ଓ ପରେ ସନ୍ଦେହ କରିଥିଲେ । କିନ୍ତୁ ସମସ୍ତେ ନିଜ ନିଜର ସନ୍ଦେହକୁ ଚାପିରଖି ନିଜ ନିଜ ଭିତରେ ଆଳାପ ଆଲୋଚନା ଆରମ୍ଭ କରିଥିଲେ । ଏହାଭିତରେ ତିନିହେଁ ଜାଣି ସାରିଥିଲେ ଯେ ସମସ୍ତେ ଗୋଟିଏ ନିମନ୍ତ୍ରଣକୁ ଏଡ଼ାଇ ନପାରି ଏଠାରେ ମିଳିତ ହୋଇଛନ୍ତି ।

ଶ୍ୱେତାଲିନା ଗୋଟିଏ ଜୀବନ୍ତ ଶିଳାଲିପି । କେବଳ ତା'ରିପାଇଁ ତିନିଜଣ ଯାକ ବି ଦିନେ ପରସ୍ପରକୁ ଈର୍ଷା କରୁଥିଲେ । ତିନିହେଁ ଥିଲେ ଶ୍ୱେତାଲିନାର ପ୍ରେମିକ । ତାକୁ ପାଇବାପାଇଁ ଥିଲା ତୀବ୍ର ପ୍ରତିଯୋଗିତା । କିନ୍ତୁ ପାଇବ ପାଇ ପାରି ନଥିଲେ । ସେ ଥିଲା କେଉଁ ଅଜଣା ତିଥିର ଜହ୍ନ-ଜ୍ୟୋତ୍ସ୍ନା । ଯାହାକୁ ଅନୁଭବ କରିହୁଏ । ଉପଭୋଗ କରି ହୁଏ, କିନ୍ତୁ ଧରିରଖି ହୁଏନା । ବିଭିନ୍ନ ତିଥିରେ ତିନୋଟି ହୃଦୟ ଆକାଶରେ ଏଇ ଜହ୍ନ ଉଇଁଥିଲା । କିନ୍ତୁ କେଉଁ ପାହାନ୍ତ ତାରାର ଉହାଡ଼ରେ ଲୁଚିଗଲା ।

ସେତେବେଳେ ସହରର ଯୁବ ମାନସର ଏକମାତ୍ର ଆଲୋଚ୍ୟ କିଶୋରୀ ଥିଲା ଶ୍ୱେତାଲିନା । ଅତିମାତ୍ରାରେ ସୁନ୍ଦରୀ ଓ ସ୍ମାର୍ଟ । ଚାନ୍‌ସେଲର କପ୍ ବକ୍ତୃତା ପ୍ରତିଯୋଗିତାରେ ସେ ଶ୍ରେଷ୍ଠ ବିବେଚିତ ସୁବ୍ରତ, ସନ୍ତୋଷ ଟ୍ରଫି ଫାଇନାଲ ମ୍ୟାଚ୍‌ରେ ଚମତ୍କାର ଖେଳ ଖେଳି ଉଇନିଂସ୍କୋର ଲାଭ କରିଥିବା ସ୍ମାର୍ଟ କ୍ରୀଡ଼ାବିତ ଜୀବନ ଓ ରବୀନ୍ଦ୍ର ମଣ୍ଡପରେ ହେଉଥିବା ଏକକ ଚିତ୍ର ପ୍ରଦର୍ଶନୀରେ ବହୁ କଳାକାର ଦୀପକ ତାର ବନ୍ଧୁ ଥିଲେ ।

ସୁବ୍ରତ ଲୀନାକୁ ଭଲ ପାଉଥିଲା । ତାକୁ ନେଇ କବିତା ଲେଖୁଥିଲା । ହଷ୍ଟେଲ ବାଥ୍‌ରୁମ ଭିତରୁ ବନ୍ଦକରି ତାକଥା ଚିନ୍ତା କରୁଥିଲା । ତା ପାଇଁ ନିଜହାତରେ ସ୍ୱେଟର ବୁଣି ଉପହାର ଦେଇଥିଲା । ସୁବ୍ରତର ପ୍ରେମ କବିତା ଶୁଣି ଲୀନା କହୁଥିଲା ସୁବ୍ରତ ! ସତରେ ତମେ ଜିନିୟସ ଫଟାଫଟି କର ! ସିଭିଲ ସର୍ଭିସରେ ଜଏନ୍ କର ତାପରେ ଲୀନାର କଥାରେ ସୁବ୍ରତର ମନତଳି ଝରଣାରେ ହଂସ ମିଥୁନ ଘୁରି ବୁଲୁଥିଲେ ।

ସୁବ୍ରତ ମହାନ୍ତି ସିଭିଲ୍ ସର୍ଭିସ ପାଇଲା । ଓଡ଼ିଶାର ବିଭିନ୍ନ ସ୍ଥାନରେ ନାଁ କମେଇଲା । କିନ୍ତୁ ଶ୍ୱେତାଲୀନାର ବଳୟକୁ ଡ଼ିଇଁପାରିନଥିଲା । ସୁବ୍ରତ ତାକୁ ଭୁଲିବାକୁ ଚେଷ୍ଟା କରିଥିଲା । କିନ୍ତୁ ମଣିଷ ତା ପ୍ରଥମ ପ୍ରେମକୁ କେବେ ଭୁଲି ପାରେନି ଆଉ ସେ ବା କେମିତି ପାରନ୍ତା । ସୁବ୍ରତ ବାହା ହେଲା । ଘର କଲା, କିନ୍ତୁ ଏ ଯାଏ ବେଳେବେଳେ ନିଜ ସ୍ତ୍ରୀର ଗାଢ଼ ଆଲିଙ୍ଗନରେ ଥାଇବି ଶ୍ୱେତାଲୀନାକୁ ସ୍ୱପ୍ନ ଦେଖେ । କିନ୍ତୁ ସ୍ୱପ୍ନ କେବେ ବି ବାସ୍ତବ ହୁଏନା । ଆଜି ସେଇ ଶ୍ୱେତାଲୀନାର ନିମନ୍ତ୍ରଣ ହଠାତ୍ ପାଇ ସବୁ କିଛି ପଛରେ ପକାଇ ଏଠାକୁ ଧାଇଁ ଆସିଛି ସେ । କିନ୍ତୁ ଶ୍ୱେତାଲୀନା କାହିଁ ? ଆଉ ଜୀବନ ଓ ଦୀପକ ସେମାନେ ବି ନିମନ୍ତ୍ରିତ । ସୁବ୍ରତ ମୁହଁରୁ ସ୍ୱେଦବିନ୍ଦୁ ପୋଛୁଥିଲା । ଜୀବନ ଥିଲା ସ୍ପୋର୍ଟସମ୍ୟାନ । ତା ମାଂସପେଶୀ ଲୁହାପରି ଟାଣ ଏବଂ ମନତଳି ଫୁଟବଲର ଭିତର ପରି ଫମ୍ପାଥିଲା । ଶ୍ୱେତାଲୀନା ସହ ବନ୍ଧୁତା ହେବାପରେ ଜୀବନ ବଦଳିଗଲା । ତା ଜୀବନରେ ଗୋଟାଏ ନିର୍ଘଣ୍ଟ ପ୍ରସ୍ତୁତ ହୋଇଗଲା । ଜୀବନ ଖେଳୁଥିବା ପ୍ରତିଟି ମ୍ୟାଚରେ ଲୀନା ଦର୍ଶକ ଗ୍ୟାଲେରୀରେ ବସି ଜୀବନର ରକ୍ତରେ ବିଜୟ ନିଶାର ନିଶାଣ ଉଡ଼ାଇବାକୁ ଚେଷ୍ଟା କରୁଥିଲା ।

ଜିତିବାର ଆନନ୍ଦ ଓ ପରାଜୟର ଗ୍ଲାନି ତା' ସହ ବାଣ୍ଟି ହୋଇ ଯାଇଥିଲା । ଖେଳୁ ଖେଳୁ ଅକସ୍ମାତ କେବେ ଆହତ ହେଲେ ଲୀନା ଦୌଡ଼ିଆସି ହୋଇ ତା' ଗୋଡ଼ରେ ଆଇସ୍‌ପ୍ୟାକ୍ ଲଗାଉଥିଲା । ଜୀବନପାଇଁ ଲୀନା ଥିଲା ସ୍ୱପ୍ନରାଜ୍ୟର ସାମ୍ରାଜ୍ଞୀ । ଲୀନା ଜାଣିଥିଲା କେଉଁ କ୍ଷେତ୍ରରେ ପ୍ରତିଯୋଗିତାର ନିଶା ବୋହୁଛି । ସେ କାହାରି ଅଧୀନରେ ଚାକିରି କରି ପାରିବେ ନାହିଁ । ତେଣୁ ତାକୁ ନିଜର ବିଜିନେସ୍ ଆରମ୍ଭ କରିବାକୁ ଅନୁପ୍ରାଣିତ କରିଥିଲା । ଗୋଟିଏ ପୁରୁଣା ଖେଳାଳୀ ଆଗରେ । ବଲଟିଏ ଗଡ଼ାଇ ଦେଲେ ସେ ଆଗକୁ ମାଡ଼ିଯାଏ । ବିପକ୍ଷ ଦଳର ବାଧା ବନ୍ଧନକୁ ଚାରୁ କୁଶଳତାରେ ଅତିକ୍ରମ କରିଚାଲିଥାଏ । ତା' ଲକ୍ଷ୍ୟ ବିପକ୍ଷ ଦଳର ଗୋଲପୋଷ୍ଟ । ଜୀବନ ଆଗେଇ ଚାଲିଥିଲା । କିନ୍ତୁ, ଲୀନାକୁ ଧରିରଖି ପାରିଲାନାହିଁ । ଲୀନା ଏକ ନାମହୀନ ବିହଙ୍ଗୀ, ଯାହାକୁ ଧରି ରଖିବାକୁ ଅଠାକାଠି ଜୀବନ ଏଯାଏ ପାଇନାହିଁ ।

ଲୀନା ଜୀବନକୁ ଏମିତି ଗୋଟିଏ ଘୂର୍ଣ୍ଣିକରେ ଛାଡ଼ି ଯାଇଥିଲା, ଯେଉଁଠୁ ଫେରିବା ଅସମ୍ଭବ । ଯାହା ମନରେ ଥରେ ବଡ଼ ହେବାର ନିଶା ଲାଗିଥାଏ ସେ କେବେ ବି ପଛକୁ ଫେରେନାହିଁ । ଜୀବନ ବଡ଼ ହେଲା । କିନ୍ତୁ ଲୀନାର ସ୍ମୃତି ତା ନିକଟରେ ଏକ ଆଗ୍ନେୟଗିରି । ଯେବେ ବି ବିସ୍ଫୋରଣ ... ଜୀବନ ... ପଳାଏ

ପାଦ ନାହିଁକ; ଅନେକ ପାଦ ଆଗେଇ ଆସିଛ । ଗୋଟି ଗୋଟି କରି ପ୍ରତି ପାଦ ଚିହ୍ନରେ ତାର ଫୁଟି ଉଠିଛ ଶତ ସହସ୍ର ସମ୍ଭାବନାର କରୁଣ ମୂର୍ଚ୍ଛନା ! ହେଲେ କେହି ଜଣେ ହେଲେ ସୁଦ୍ଧା ସେଇ ଶତାଧିକ ଉପାନ୍ତର ଶୋଷ ବଳୟକୁ ସ୍ପର୍ଶ କରି ପାରି ନାହାନ୍ତି । ଅପରିସର ଶୂନ୍ୟତା ବୋଧ ଲେ ଅଲକାଙ୍କ ପଞ୍ଚନାୟକର ମାନସ ସରୋବରରେ ରକ୍ତକମଳ ହୋଇ ଫୁଟେ । ଶ୍ୱେତପଦ୍ମ ହୋଇ ତୁଷାର ଧବଳ ପର୍ବତ ଫର ଫର ଉଡ଼େଇଯାଏ ପବନରେ । ଆକାଶରେ ଜହ୍ନ ଉଠେ ସୂର୍ଯ୍ୟ ଉଠେ ଅଥଚ କେହି ଏଇ ପ୍ରତୀକ୍ଷାମାଣା ଫୁଲମନଟିକୁ ବୁଝିନାହାନ୍ତି କି ଅବା ବୁଝିବା ପାଇଁ ଚେଷ୍ଟା ସୁଦ୍ଧା କରେ ନାହିଁ । ସବୁ ମନେହୁଏ, ସତେ ଯେମିତି ଆବାହମାନର ଗତାନୁଗତିକ ପରମ୍ପରା ! ଏକାନ୍ତ ଚୁଟିକ ବନ୍ଧା !

ଖୁବ୍ ପାଖରେ ଥାଇ ସୁଦ୍ଧା ଜଣେ ଅନ୍ୟଜଣକୁ ଚହ୍ନିପାରେ ନାହିଁ ! ବଡ଼ ବିଚିତ୍ର ଏ ମଣିଷ ମନ !!

ଆଜିକାଲି ଅଲକା ବୁଝୁଛି ଯେ, ବିଚିତ୍ରର ରଙ୍ଗ ଭରି ଅସ୍ଥାୟୀ । ସେଠି କୌଣସି ସର୍ତ୍ତ ନାହିଁ କେତେବେଳେ ଯେ କି ରଙ୍ଗ ଧରିବ, ତାର ବି କିଛି ଠିକଣା ନାହିଁ । ସୁରେଶ ପଞ୍ଚନାୟକ । ଉଦୀୟମାନ ତରୁଣ ଶିଳ୍ପୀ । ସଦା ଆନନ୍ଦର ବାହକଟିଏ !! ସୁଖ ତାକୁ ଉନ୍ମାଦ କରି ପାରୁ ନଥିଲା କି ଦୁଃଖ ନିଜ ପଞ୍ଜରେ ବାନ୍ଧି ଧରି ପାରେ ନାହିଁ । ସଦାନନ୍ଦର ଅଞ୍ଚଳ ପ୍ରତିମୂର୍ତ୍ତି ସୁରେଶ ପଞ୍ଚନାୟକ ।

ଏବେଦା ଅଲକାର ଆଗ୍ରହ ଥିଲା, ଏଭଳି ପୌରୁଷର ସ୍ୱାଦ ଅନୁଭବ କରିବା ସୌଭାଗ୍ୟରେ । ସୁରେଶ ଭଳି ଅମୃତମୟ ସ୍ୱାମୀଙ୍କର ପତ୍ନୀ ହିସାବରେ ନିଜର ପରିଚୟ ଦେବାକୁ ଦେବାକୁ ଯାଉଁ ଯାଉଁ ଅକସ୍ମାତ୍ ବେଣ୍ ଅସଂସ୍ଥିତ ସତ୍ତ୍ୱରେ ଅନ୍ତର୍ଭୂତ ହୋଇପଡ଼େ ଅଲକା ।

ଏ ଶତାବ୍ଦୀ ଗୋପବନ୍ଧୁ ଭଳି ସୁରେଶର ହୃଦୟ ପ୍ରଶସ୍ତ । ସେଇଠି ପ୍ରତିଧ୍ୱନି ଶୁଭେ ଆହତ ହୃଦୟର, ନିକ୍ଷେପିତ ଜୀବନର, ବୋଧହୁଏ ଷ୍ଟେଶନ ଜନତାର ପଞ୍ଚୁଆର ଭିତରେ ସୁରେଶ ଅସଂଖ୍ୟ ପରଶମଣି ଦେଖିପାରେ । ଯେଉଁଥିପାଇଁ ସିଏ ଗୁଡ଼ିଏ ପିଟି ହୁଏ, ଦ୍ୱାରସ୍ଥ ହୁଏ ଦ୍ୱାରରୁ ଅନେକ ଦ୍ୱାର । ମୁଣି ମୁଣି ଚାଉଳ ଗଣ୍ଠିଲି ଗଣ୍ଠିଲି ଲୁଗା ଚଦର, ଗୁଡ଼, ଔଷଧ ଏମିତି କେତେ ଯେ ଜିନିଷ ସବୁ ସଂଗ୍ରହ କରି ସୁରେଶ ଚାଲିଯାଏ ଯେଉଁଠି ଶୁଭେ ବୁଭୁକ୍ଷୁ ଜନତାର ଆର୍ତ୍ତନାଦ ।

ସୁରେଶର ସମ୍ବନ୍ଧୀ ଗୁଡ଼ିକ୍ ଭିତରେ ଅଲିଭା ବେଶ୍ ସହଜରେ ନିଜକୁ ସାମିଲ କରି ନେଇଥିଲେବେଳେ ସାଙ୍ଗସାଥୀ ପରିହାସ କରନ୍ତି । ତୀବ୍ର ମନ୍ତବ୍ୟ ଦିଅନ୍ତି । ଏ ଯୁଗରେ ଗୋପବନ୍ଧୁ ଭଳି ଉଦାର ହେବାରେ କିଛି ମାନେ ନାହିଁ ହରିଶ୍ଚନ୍ଦ୍ର ଭଳି ଦାନୀ ହେବାରେ କୌଣସି ମୂଲ୍ୟ ନାହିଁ । ସବୁ ନିଷ୍ଫଳ ନିରର୍ଥକ ବିଗତ ଉପାଖ୍ୟାନ । ଏବେ ବଞ୍ଚିବାକୁ ହେଲେ ସ୍ୱାର୍ଥକୁ ସମ୍ମୁଖରେ ନରଖି ପଣ କରି ଦଉଡୁଥିବା ସୈନିକ ଅଶ୍ୱାଲମ୍ବେ ପରାଜିତ ହୁଏ ଅତି ଶୋଚନୀୟ ଭାବେ !! ସମୂହ ସ୍ୱାର୍ଥକୁ ଦୃଷ୍ଟି ପଥାରୂଢ଼ କରେଇ ଅତି ସାବଧାନ ସହିତ ବ୍ୟକ୍ତିଗତ ସ୍ୱାର୍ଥକୁ ହାସଲ କରି ପାରୁଥିବା ମଣିଷର ହେମତ୍‌କୁ ମଣିଷ ପଣିଆ କୁହନ୍ତି ।

ଏଭଳି ମଣିଷ ପଣିଆକୁ ଅସ୍ୱୀକାର କରିଥିଲା ଅଲିଭା ପଟ୍ଟନାୟକ । ଏଇ ମାଟିରେ ଜନ୍ମ ନେଇଥିବା ଲକ୍ଷ୍ମୀବାଈ, ଝାନ୍ସୀ ରାଣୀ ଭଳି ସିଏ ବି ଦୃଢ଼ତାର ଅଶ୍ୱାରୋହଣ କରି ଭେଜାଲ ଅସ୍ଥିକଙ୍କାଳସାର ମଣିଷମାନଙ୍କର ରଣଭୂମିକୁ ବାହାରି ପଡ଼ିଥିଲା ।

ଯୁଦ୍ଧଭୂଇଁରେ ଅତି ନିର୍ମମ ଭାବେ ପରାସ୍ତ ହେଲା ସୁରେଶ । ଥରେ ଉଚ୍ଛୁଳା ନଈ ସୋତ ଡେଇଁ ଆରପାରିର ଲୋକଙ୍କୁ ଉଦ୍ଧାର କରିବା ମୁହୂର୍ତ୍ତରେ ହଠାତ୍ ନଦୀସ୍ରୋତରେ ଭାସିଗଲା ।

ନିଜକୁ ସାନ୍ତ୍ୱନା ଦେବାପାଇଁ ଅଲିଭା ପାଖେ କେହି ନଥିଲେ । ନିଜକୁ ଢଳଢଳ ଜଳେଇବା ସତ୍ତ୍ୱେ ସୁରେଶ ପଟ୍ଟନାୟକ ଶହୀଦ ହୋଇ ପାରିଲା ନାହିଁ । ତା ମୂର୍ତ୍ତିଟିଏ ଗଢ଼େଇ ଫୁଲମାଳ ଅର୍ପଣ କରାଗଲା ନାହିଁ । ରେଡ଼ିଓ, ସମ୍ବାଦ-ପତ୍ରରେ ତା ମୃତ୍ୟୁ ସମ୍ବାଦ ପରିବେଷଣ କରାଗଲା ନାହିଁ ।

ତଥାପି ସିଏ ଶହୀଦ୍ ଅଲିଭା ପାଖେ । ସେଇ ସାନକୁଆଁଶୀ ମଣିଷ ଜାତି ପାଖେ ।

ଯେଉଁଦିନ ମଣିଷ ସମାଜରେ ସୁରେଶ ପଟ୍ଟନାୟକ ଭଳି ଶତସହସ୍ର ସୁରେଶ ଜନ୍ମହେବେ ସେଇଦିନଟି ହୁଏତ ଏଇ ସୃଷ୍ଟିର ପ୍ରତିଶ୍ରୁତି ଭଳି ଏକ ସଫଳ ଏବଂ ପରିପୂର୍ଣ୍ଣ ଜୀବନର ସୂର୍ଯ୍ୟୋଦୟ ପୃଥ୍ୱୀ ଦେଖିବ ଏବଂ ଦେଖିବ ନିଃସ୍ୱ, ଅସହାୟ ମଣିଷ ଜାତି ।

ଅଲିଭା ପଟ୍ଟନାୟକ ଡାଏରୀଟିକୁ ବନ୍ଦ କରିଦେଲା ।

# ଶାପ ମୋଚନ

ଭାରତୀ ମହାପାତ୍ର



ଶିବୁ ଓ ଅରୁ ଦୁଇଜଣଯାକ ବାଡ଼ି ଗଡ଼ିଆକୁ ବାହାରିଥିଲେ । ହଠାତ୍ ଅରୁ ଶିବୁର ହାତ ଧରିନେଇ ନିଜ ଆଡ଼କୁ ଟାଣିନେଇ ତା' କାନରେ ଫିସ୍ ଫିସ୍ କରି କ'ଣ କହିଦେଲା । ଦୁହେଁ ବାଡ଼ପାଖକୁ ଲାଗି ପଡ଼ିଶା ଘରର ଗୁହାଳ ଘରକୁ ଜାଲି କବାଟି ବାଟେ ଚାହିଁ ଦେଖିଲେ ଅରକ୍ଷିତଆ ହସୁଛି । ଅରୁ କହିଲା, 'କିରେ ଅରକ୍ଷିତଆ, କାହାକୁ ଡାକିଲୁ ? କିଛି ନୂଆ ଖବର ଅଛି କି ?'

ଅରକ୍ଷିତଆ ହସିଲା—ଗୋଟେ ଜାଗାରେ ବଢ଼ିଆ ବେତକୋଳି ହୋଇଛି ଆଣିଦେବି ଖାଇବ ?

ଅରୁଣ କହିଲା—କେତେବେଳେ ଆଣିବୁ ?

—ହଁ ଅରୁ ଯାଆନ୍ତେ ଆଜି ନିଶ୍ଚୟ ଆଣିଦେବି ।

ଶିବୁ କହିଲା 'ଆମେ ସ୍କୁଲରୁ ଫେରିଲା ବେଳକୁ ଆଣିଥିବୁ ତ ।'

ହଁ ଖରାବେଳେ ଆଣି ରଖିଥିବି । ତୁମେ ସ୍କୁଲରୁ ଫେରିଲେ ଦେବି । ହଁ ଲୁଣ ପାଣିରେ ଭେଜେଇ ଦେଇ ତାପରେ ଖାଇବ । ଦେଖିବ କେତେ ସୁଆଦ ଲାଗିବ ।'

ଶିବୁ ଓ ଅରୁ—ଦୁଇଜଣଯାକ ସମ୍ପର୍କରେ କକେଇ ପୁତୁରା । ଶିବୁ କକେଇ ଓ ଅରୁ ପୁତୁରା । ତଥାପି ଶିବୁକୁ ବୟସ ନଅ ଅରୁକୁ ଦଶ । ଅରକ୍ଷିତଆ ଏମାନଙ୍କଠାରୁ ଅଳ୍ପ କିଛି ବୟସରେ ବଡ଼ । ଦେଖିବାକୁ କଳା ନଦାପିଟା କେହେବ । ଦାନ୍ତ ଅଳ୍ପ ଆଗକୁ ବାହାରି ଆସିଛି । ହସିଲେ ବକୁଡ ଦିଶେନ । କୌଣ୍ଡିକର ବହୁ ଇନ୍ଦ୍ରଧନୁର ଢେଉ ଯେଥିରେ ଯେପରି ଝେଲାବୁଲୁଥାଏ । ଫିଲ-ଢନ୍ତୁ ମାତୃ ପିତୃହୀନ ଅରକ୍ଷିତଆ ଜକାଖୁଡ଼ୀଙ୍କର ତାଡ଼ନାରେ ଯେପରି ନଦାପିଟା

କଷ୍ଟ ସହ୍ୟକୁ ହୋଇଯାଇଛି । ତାଙ୍କୁ ଜଣେ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣକର ବା ଛୁଟିଯିଲା ଭାବରେ ରଖାଇ ଦେଇ ମାଆଙ୍କୁ ମାସ ତାଙ୍କ ଶ୍ରମ ବନ୍ଧନମଧ୍ୟରେ ମିଳୁଥିବା ଦରମା ଗଣ୍ଡାକ-ଅସୁଲ କରି ଅଭିଭାବକତ୍ୱ ବଜାୟ ରଖିଛନ୍ତି । କାମରେ ତୃପ୍ତି ପାଇଁ ମାତ୍ର ଗଣ୍ଡାଏ ଅରକ୍ଷିତଆର ନିତିଦିନିଆ କଥା । ସବୁ ଦିନ ସନ୍ଧ୍ୟା ସେ ଛେଟର ନଦୀବନ୍ଧକୁ ପାଳିଛି ଯାଇଛି । ମାଁଙ୍କ ଡାଳ ଭିତରେ ଲୁଚି ରହିଥିବା ତା'ର ପିଲାଳିଆ ଆମୋଦପ୍ରିୟ ମନ ନିର୍ଦ୍ଦୋଷ ଆନନ୍ଦର ନିତ୍ୟ ନୂତନ ସରଣୀ ସବୁଦିନ ଖୋଜିବୁଲେ । ବଣୀ ଚଢ଼େଇର ବସା, ନେଉଳର ଆସ୍ଥାନ, କଙ୍କାପୁଆଙ୍କ ଆଡ୍ଡାର ଅବସ୍ଥିତି ସବୁକିଛି ତାଙ୍କୁ ହିଁ ମାଲୁମ୍ । ତେଣୁ ଗାଁ ପିଲାଙ୍କ ପାଇଁ ଏହି ନବାଗତ ଅରକ୍ଷିତଆ ଏକ ବଣମୂଦ ଅନୁଷ୍ଠାନ । ତା'ର ଅଭିଜ୍ଞ ସେହି ଦୃଷ୍ଟିରୁ ଅନନ୍ୟ ସାଧାରଣ । କୁତ୍ସାଟମଲ୍ଲୀ ଖେଳ, ଡୁଡୁ ବା ବୋହୁଚୋରି ଖେଳରେ ତାଙ୍କର ଅଭିଜ୍ଞତା ଅକାଟ୍ୟ ।

ହରଶଙ୍କର ମିତ୍ର ଓ ଶମ୍ଭୁନାଥ ପଟ୍ଟଯୋଶୀଙ୍କ ଘର ଲାଗାଲାଗି । ସାର ନରସିଂହପୁର ଗାଁ ଟିରେ ସବୁ ଘରଗୁଡ଼ିକ ପୂର୍ବ ପଶ୍ଚିମ ହୋଇ ଦୁଇମହଲା ଘର । ଘରଗୁଡ଼ିକ ପଛଆଡ଼କୁ ଲମ୍ବ ଭାବରେ ତିଆରି । ହରଶଙ୍କର ଡେପୁଟି ଥିଲେ । ଏବେ ଅବସର ନେଇ ଘରେ ରହୁଛନ୍ତି । ବେଶ୍ ବଡ଼ ଦୋତାଲା କୋଠା । ପୁଅମାନେ ଅଫିସର ହୋଇ ସହରରେ ରହୁଛନ୍ତି । ଗାଁରେ କେବଳ ବୁଢ଼ାବୁଢ଼ୀ ଆଉ ମିଳନର ନୈଷ୍ଠିକ ସ୍ୱରୂପ ସବା ସାନ ପୁଅ ଶିବୁ । ଝିଅମାନେ ବାହାହୁ କରି ସାରିଛନ୍ତି । ବଡ ପୁଅର ପୁଅ ଅରୁଣଟିକୁ ପାଖରେ ରଖିଛନ୍ତି ଶ୍ରଦ୍ଧାରେ । ଅରୁଣ ବଡ଼ ଚଗଲା । ଯେମିତି ରୂପ ସେମିତି ଖରଧାର ବୁଦ୍ଧି । ଲମ୍ବା, ପତଳା, ଗୋରା, କାଉଁରିଆ କାଠି ପରି ହାତ ଗୋଡ଼ ଦିଖଣ୍ଡ । ହେଲେ ମୁହୂର୍ତ୍ତେ ଅଳସ ହୋଇ ବସିବାର କେହି ଦେଖିନି । ଛୁଟିଦିନ ମାନଙ୍କରେ ଗାଁ ପିଲାଙ୍କର ନୌକାଖେଳ, ମାଛଧରା, ଆମ୍ବ କଇଁଥ ପରିରେ ଦିନ କାଟେ । କୋଳି ଝଙ୍କାରେ ସମସ୍ତ ବଟେ । ଶିବୁ ତା'ର କକେଇ ହେଲେ କ'ଣ ହେବ ଅଭିନ୍ନ ହୃଦୟ ସଖା, ଅନୁଗତ ସବୁ ।

ହରଶଙ୍କରଙ୍କର ପଡ଼ୋଶୀ ଶମ୍ଭୁନାଥ ବୃଦ୍ଧ । ତାଙ୍କର ପୁଅ ନିତ୍ୟାନନ୍ଦ ସହରରେ କ'ଣ କିରାଣୀଗିରି କରନ୍ତି । ପତ୍ନୀଙ୍କୁ କାମରେ ସାହାଯ୍ୟ ପାଇଁ ପିଲାଟିଏ ଆଣିଛନ୍ତି । ସେହି ପିଲାଟି ଅରକ୍ଷିତଆ । ହେଲେ ଅରକ୍ଷିତଆ ଜାତିରେ ତେଲି । ବ୍ରାହ୍ମଣ ଶାସନ—ଶାସନୀ ବ୍ରାହ୍ମଣେ ତେଲୀର ମୁହଁ ସକାଳୁ ଦେଖିବେ କିପରି ? ଥରେ ଅଧେ କଏ ଶୁଭ କାମକୁ ବାହାରି ଥିବା ବେଳେ ଅରକ୍ଷିତଆ ଦାଣ୍ଡ ଓଳାଉ ଥିବାର ଦେଖନ୍ତି । ସେମାନଙ୍କ କାମ ଫଳ ହେବନି ବୋଲି ପ୍ରମାଦ ଗଣନ୍ତି । ସବୁ ବ୍ରାହ୍ମଣମାନେ ମଣ୍ଡପରେ ବସି ନିଷ୍ପତ୍ତି ଦେଲେ ଶମ୍ଭୁନାଥଙ୍କ ଘରେ ଅରକ୍ଷିତଆ ରହୁଛି ମନା ନାହିଁ । ମାତ୍ର ଦିନ ପହରକଯାଏ ସେ ଗୁହାଳରେ ଲୁଚି ରହିବ । ଦାଣ୍ଡ ପିଣ୍ଡାକୁ ବାହାରିବ ନାହିଁ । ଘରେ ମଧ୍ୟ କାମ କରି ପାରିବ ନାହିଁ । ଅଜକାଲି

ଭଳି ସମସ୍ତଙ୍କ ପାଖରେ ଘଣ୍ଟା ରହୁ ନଥିଲା । ଖରାର ଗତି ଓ ଛାଇକୁ ଦେଖି ସମୟ ବୁଝିବାକୁ ପଡୁଥିଲା । ତେଣୁ କଥା ହେଲା ପାସେଞ୍ଜର ଗାଡ଼ି ବେଳ ପହରକୁ ଆସେ । ସେତିକି ବେଳ ପର୍ଯ୍ୟନ୍ତ ଅରକ୍ଷିତଆ ଗୁହାଳରେ ରହିବ । ଯାହା କାମ କରିବା କଥା ସେଇଠି କରିବ ।

ହେଲେ ଅରକ୍ଷିତଆ ଶ୍ରେଷ୍ଠ ପିଲଟେ । ସକାଳୁ ଦାନ୍ତରେ ପାଣି ନଦେଇ ଗୁହାଳ ଗୋବର ସାରି ସେଇଠି ବସି ବସି ବିରକ୍ତ ହୁଏ । କଙ୍କଡ଼ା ଖୋଳ ଭିତରୁ ଅପୂର୍ବ ସୁନ୍ଦରୀ କନ୍ୟା ବାହାରି ଘରର ବାସି ପାଇଟି ସାରିଦେଇ ସମସ୍ତେ ଉଠିଲା ବେଳକୁ ଖୋଳ ଭିତରେ ପଶିଗଲା ଭଳି ସେ ତରତର କରି ଅଗଣା ଓଳାଇ ଦେଇ ଗୋବର ପାଣି ପକାଇ ଦେଇ ଗୁହାଳ ଭିତରେ ପଶିଯାଏ । ଗାଈଙ୍କୁ ଫିଟାଏ । ଗୁହାଳ ପୋଛେ । ନଳା ଧୁଏ । କୁଣ୍ଡରେ ପାଣି ଢାଳେ । ସବୁକାମ ସାରି ଶେଷରେ ଅସ୍ତ ବ୍ୟସ୍ତ ହୋଇ ରେଳଗାଡ଼ିର ହୁଇସିଲ୍‌କୁ ଚାତକ ପରି ଅନାଇ ରହେ ।

ସେତିକିବେଳେ ଶିବୁ ଓ ଅରୁ ପଢ଼ା ସାରି କାହିଁ କେବେ କେବେ ବାଡ଼ିଆଡ଼େ କୌଣସି କାମ ପଡ଼ିଲେ ବାଡ଼ି ଆଡ଼କୁ ଆସନ୍ତି । ଅରକ୍ଷିତଆ ପିଆସି ମହିଷ ଭଳି ବ୍ୟାକୁଳରେ ଏମାନଙ୍କ ପାଦ ଶବ୍ଦକୁ କାନେଇ ରହିଥାଏ । ଜଳା କବାଟିରେ ଦେଖିଦେଇ ଡାକ ଦିଏ ଶିବୁ ସାଆନ୍ତେ କୁ...ଉ, ଅରୁ ସାଆନ୍ତେ କୁ...ଉ... । କାରଣ ଏହିପରି ଡାକ ସେ ଏମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ଏମାନେ ପାଖକୁ ଗଲେ କେଉଁଦିନ କେଉଁ କଥା କୁହେ, କେଉଁଦିନ କେଉଁ ଗଛର କଅଁଳ ପୁଅଳ ଆମ୍ବ ଦେଖିଛି ତାର ସମ୍ବାଦ ଦିଏ । ନେଉଳ ଛୁଆ ଧରି ଆଣିଦେବ ବୋଲି ପ୍ରତିଶ୍ରୁତି ଦିଏ । ତା'ର ଏହି ନିର୍ଦ୍ଦିଷ୍ଟ ସମୟର ନିର୍ଜନ ଦ୍ୱୀପରେ ନିର୍ବାସନ ପରି ନିଃସଙ୍ଗତାରୁ ଏକମାତ୍ର ଶିବୁ ଓ ଅରୁ ତାକୁ ରକ୍ଷା କରନ୍ତି । ସରଳ ଶିଶୁ ପ୍ରାଣ ବଡ଼ ଲୋକ ଗରିବ ଲୋକର ଭେଦ ବୁଝେନି । ଅରକ୍ଷିତଆ ଗୃହକର ହେଲେ ବି ହରିଶଙ୍କରଙ୍କ ପରିବାରରେ ତା'ର ଭାରି ଆଦର ।

କୌଣସି କାମ ପଡ଼ିଲେ ହରିଶଙ୍କରଙ୍କ ସ୍ତ୍ରୀ ତାକୁ ଡାକନ୍ତି, ଆରେ ବାପ ଅରକ୍ଷି, ଟିକେ ଆସିବୁ ହାଟରୁ ଅଜା ସଉଦା ଆଣିଦେବୁ । ଆ ବାପ, ଏ ମଣ୍ଡା ଦିଟା ଖାଇଦେ, କାଲି ପୁଷପୂର୍ଣ୍ଣିମୀ ଥିଲା ତ ନେ ଆଗ ଖାଇଦେ, ତାପରେ ଯିବୁ ।' ଏମିତି ଅନେକ ଶ୍ରେଷ୍ଠ ବଡ଼ କାମ ତା ହାତରେ କରାନ୍ତି ଭାଗ୍ୟମଣି ଦେବୀ । ଏମିତି ତା'ର ଅବାଧ ଗତି ହରିଶଙ୍କରଙ୍କ ଘରକୁ । ସନ୍ଧ୍ୟାବେଳେ ଖରାଦିନେ ଦାଣ୍ଡ ପିଣ୍ଡାରେ ମସିଣା ପକାଇ ଶିବୁ ଓ ଅରୁ ପଢ଼ନ୍ତି ।

ଅରୁଣ ଜାଣି ଜାଣି ଅରକ୍ଷିତଆକୁ ଶୁଣାଇ ଶୁଣାଇ ବଡ଼ ପାଟିରେ ପଢ଼େ, 'ଯୋ ତେଲ ପେଡ଼ତା ହୈ ୱହ ତେଲୀ ହୈ ଅରକ୍ଷିତଆ ଏକ ତେଲୀ ହୈ

ଦେବ ଘଣ୍ଟା ଟେକି ହେଲେ । ଅରକ୍ଷିତଆ ଦୌଡ଼ି ଆସେ । ଆଖିରେ ତା'ର ଅମୃତ ଯୁଗର ଆନନ୍ଦ ଓ ବିସ୍ମୟ । ସ୍ଥାଇ ଆଲୁଅ ଭଳି ଅଧା ବିଶ୍ୱାସ ଅଧା ଅବିଶ୍ୱାସର ପୁଣି ତା ପଦ୍ମତ କୌତୂହଳ, ଆନ୍ତର୍ମୀ ଭାବ ତା ଆଖିକୁ ଆଚ୍ଛନ୍ନ କରେ । ଖୁସିରେ ତା'ର ମନ ଘର ଧରୁନ ଯେପରି । ପଗ୍ଚାରି ଦିଏ, 'ମୋ' ନା ପତ୍ରରେ କହିରେ ଲେଖା ହୋଇଛି ଅରୁ ସାଆନ୍ତେ ?'

ହଁ ତୋ ନାଁ ଲେଖା ହୋଇଛି । ତୁ ଆସୁନୁ ଦେଖିବୁ । ଚଢ ଦେଖା । ତୋର ଚଢ । ତୁ ପିନା ପଢ଼ି ପାରୁନୁ । ଚର୍ଚ୍ଚାତ ଦେଖି ପାରିବୁ ? ଅରୁଣ ଗମ୍ଭୀର ହୋଇ କହେ—ଚଢ ଦେଖାଇ ଦିଏ । ଅରକ୍ଷିତଆ ବାରବର୍ଷର ଏକ ପିଲାର ଚଢ ଦେଖେ । ତା'ର କେବେ କେମିତ ଏ ଚଢ ହେଲା ବୁଝିପାରେନା । ହେଲେ ଖୁସି ହୁଏ ।

ଆଉଦିନେ ··· ଶିବୁ ସାଆନ୍ତେ କୁ ···ଉ···ଅରୁ ସାଆନ୍ତେ କୁ ···ଉ··· ଶୁଭିଲା । ଅରୁଣ କହିଲା, 'କରେ ଆଜି କ ଖବର ଦେଲୁ ? ଯୋଡ଼ିଏ ଟିକି ବଣୀ ଚଢ଼େଇ ଛୁଆ ଦେଖିଛି । ଚଢ଼େଇଟା ବସା କରିଛି ଗୋଟାଏ ବଡ଼ ତେନ୍ତୁଳି ଗଛରେ । ଆଜି ଯିବା ଧରିବା ।

ଶିବୁ ଓ ଅରୁ ଏକାବେଳେକେ ଆନନ୍ଦରେ ଆତ୍ମହରା ହୋଇ ପଚାରିଲେ – 'କରେ କେତେବେଳେ ଯିବା' – 'କାହିଁକି ଖରାବେଳେ ଯିବା, ଆଜି ଆମ ମା ଦଅଁ ଦର୍ଶନକୁ ସହରକୁ ଯାଉଛନ୍ତି । ଫଳକୁ ଫେରିବେ ।' ଶିବୁ ଓ ଅରୁଣର ମୁହଁ ଶୁଖିଗଲା । ସେମାନେ କହିଲେ, 'ଆରେ ଆମର ଆଜି ସ୍କୁଲ ଅଛି । ଆଜି ହବନ ।' ଅରକ୍ଷିତଆର ମୁହଁ ଶୁଖିଗଲା । ମନଟା ମଉଳି ଗଲା । ଅଃ···ସବୁବେଳେ ଖାଲି ଇସ୍କୁଲ୍··· ସେ କହିଲା । ହଉ ମୁଁ ଏକୁଟିଆ ଯିବ । —ନାହିଁରେ ଆଜିତ ବୁଧବାର । ମଝିରେ ଦିଟା ଦିନ । ତାପରେ ଶନିବାର । ହାଫ୍ଛୁଟି । ସେହିଦିନ ଧରିବା ।

—ଥିଲେ ପିନା । ଉଡ଼ା ଶିଖିଲେ ଛୁଆ ଗୁଡ଼ା କ'ଣ ରହିବେ । ଏବେ ପିନା ଖଣ୍ଡି ଉଡ଼ା ଦେଉଛନ୍ତି ଯେ ମୁଁ କହୁଛି ଧରି ଆଣିବା ।

\+ \+ \+

କେତୋଟି ବର୍ଷ ପରେ···ଗ୍ରୀଷ୍ମଛୁଟିରେ କଲେଜରୁ ଫେରିଛନ୍ତି ଶିବୁ ଓ ଅରୁ । ପ୍ରଥମେ ଖୋଜିଛନ୍ତି ଅରକ୍ଷିତଆକୁ ।

କେନ୍ତୁ…ଅରକ୍ଷିତଆ ଆଉ ନାହିଁ । ତା'ର ଆତ୍ମା ବିସ୍ତୀର୍ଣ୍ଣ ଆକାଶର ଅନନ୍ତ ନୀଳିମା ଭିତରେ ମିଶି ଯାଇଛି । ତାର ଶାପ ମୋଚନ ହୋଇଛି । ତେଣୁ ବୋଲି ଘୁଷ୍ଟି'ଲ ଘର ଭିତରେ ସେ ଆଉ ଲୁଚି ରହିବନି ।

ବୈଷ୍ଣବ ସନ୍ୟାସୀର ଗୀତ 'ଉଡ଼ିଗଲେ ଯାକ'ର ପକ୍ଷୀ, ଅଚ୍ ଚେଳେନା'ର ସ୍ୱର ଅରୁ ଓ ଶିବୁଙ୍କର କର୍ଣ୍ଣ କୁହରରେ ପ୍ରତିଧ୍ୱନିତ ହେଉଥିଲା । ତାଙ୍କର ମନେ ହେଉଥିଲା ଯେମିତି ବଣ ପାହାଡ଼ ସବୁଆଡ଼େ ଅରକ୍ଷିତଆ ଠିଆ ହୋଇ ହସୁଛି, ମେଣ୍ଢେଙ୍ଗା କୋଳି ବଣ ଭିତରେ ପଶି କୋଳି ତୋଳୁଛି । ନେଉଳ ପଛରେ ଗୋଡ଼ାଉଛି 'ଧର ଧର ଅରୁ ଯାଆନ୍ତେ ଧର' ବୋଲି ପାଟି କରୁଛି । ସବୁଠି ତା'ରି ମୁହଁ ତାରି କଥା । ସେହି ହୁଳି ଉଙ୍ଗା ଅଛି । ଗଣେଶ ପୂଜା ଯାଏଁ ବେକା ବେକା ପଦ୍ମଫୁଲ ତୋଳି ଅରକ୍ଷିତଆ ପାଣିଭିତରେ ପହଁରି ଆସୁଥିବା ଭଳି ଦିଶୁଛି । ସବୁଆଡ଼େ ଅରକ୍ଷିତଆର ରୂପ । ସେ ମେଣ୍ଢେଙ୍ଗା କୋଳି ବୁଦା, କେତକୀ, ବଣି ଚଢ଼େଇ ବସା, ସବୁ ଅଛି—ନାହିଁ କେବଳ ତେଲି ପିଲ ଅରକ୍ଷିତଆ । ପଞ୍ଜୁରୀ ଶୂନ୍ୟ—ପକ୍ଷୀ ଉଡ଼ି ଯାଇଛି । ଉଡ଼ି ଯାଉଛି ସତେ କେଉଁ ଅନନ୍ତ ଆକାଶର ଅଙ୍ଗନକୁ ।



# ହଜିଯାଇଥିବା ମଣିଷ

ଶୀତାଂଶୁ ରଂଜନ ସେନାପତି

ସୁରେନ୍ଦ୍ର ବାବୁ କହନ୍ତି, ସ୍ୱାଧୀନତାର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଜୀବନର ମୂଲ୍ୟବୋଧ କମି ଆସୁଛି । ଖୁଣଅଡ଼େ ଦଙ୍ଗାହଙ୍ଗାମ, ଲୁଟତରାଜ, ନାରୀ ଧର୍ଷଣ, ଏସବୁ ଏବେ ନିତିଦିନିଆ କଥା ହୋଇଗଲଣି । ଶାସନର ତଳ ସ୍ତରରୁ ଉପର ସ୍ତର ପର୍ଯ୍ୟନ୍ତ ଦୁର୍ନୀତିର ଗନ୍ତାଘରରେ ପରିଣତ ହୋଇଛି । ଆଉ ଏହା ବିରୁଦ୍ଧରେ କହିଲେ ଦେଶଦ୍ରୋହୀର ଆଖ୍ୟା ମିଳୁଛି । ଶ୍ରମିକମାନେ ତାଙ୍କ ଚାକିରିର ନିରାପତ୍ତା ପାଇଁ ଆନ୍ଦୋଳନ କଲେ, ଆନ୍ଦୋଳନକୁ ବେଆଇନ କରି କାରଖାନା ଲକ ଆଉଟ କରି ଦିଆଯାଉଛି... ।

ବାସ୍ତବିକ ସୁରେନ୍ଦ୍ର ବାବୁଙ୍କ ଆଜିର ବକ୍ତୃତା ବେଶ ତେଜସ୍ୱିନୀ ଏବଂ ଅଦ୍ଭୁତ ପୂର୍ଣ୍ଣ । ଶ୍ରମିକମାନଙ୍କୁ ଉତ୍ତେଜିତ କରାଇଛି । ତାଙ୍କର ବକ୍ତୃତା ଶୁଣି ସେମାନେ ଅନେକ ଉତ୍ସାହିତ ହୋଇଛନ୍ତି । କୋଣାର୍କ ଷ୍ଟୋନ କଲର ଆନ୍ଦୋଳନ ଆଜି ୫୩ ଦିନରେ ପହଞ୍ଚିଲାଣି, ତଥାପି ସେମାନେ ଆଦୌ ଭାଙ୍ଗି ପଡ଼ି ନାହାନ୍ତି ବରଂ ସେମାନଙ୍କ ମନୋବଳକୁ ଦ୍ୱିଗୁଣିତ କରିଛନ୍ତି । ଆଜି ଯେମିତି ସେମାନେ ମହଣ ମହଣ ଅନ୍ଧାର ଭିତରେ ଆଲୋକର ଏକ ସୂକ୍ଷ୍ମ ରେଖାର ସନ୍ଧାନ ପାଇଛନ୍ତି ।

ସୁରେନ୍ଦ୍ର ବାବୁ କହିଲେ ବୁଝାଏ ଜଣେ ସାଧା-ସିଧା ମଣିଷଙ୍କୁ ଯିଏକି ଜୀବନସାରା ଅନେକ ଘାତ ପ୍ରତିଘାତ ସହି ମଣିଷ ଭଳି ବଞ୍ଚି ରହିବାକୁ ଚେଷ୍ଟା କରିଛନ୍ତି । ତା ଛଡ଼ା ସେ ଜଣେ ପ୍ରତିଷ୍ଠିତ ଶ୍ରମିକ ନେତା ଏବଂ ଜଣେ ପ୍ରଗତିଶୀଳ କବି । ଦୁର୍ବୋଧତାଠୁ ଦୂରରେ ରହି ସାଧାରଣ ଲୋକ ପାଖରେ ତାଙ୍କର କବିତାର ଭାଷାଗୁଡ଼ିକ ପହଞ୍ଚାଇବା ପାଇଁ ସେ ସଚେଷ୍ଟିତ । ତାଙ୍କ ମତରେ ସଠିକ ସାହିତ୍ୟ ହିଁ ଜନ ଚେତନାକୁ ଜାଗ୍ରତ କରାଏ । ସାହିତ୍ୟରେ ସେହି ସମୟର ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତିଫଳିତ ହେବା ଆବଶ୍ୟକ । ଆଉ ଖାଲି ଦୁଃଖ ବର୍ଣ୍ଣନା କଲେ ତ ଦୁଃଖ ଦୂର ହେବନି, ସେଥିପାଇଁ ଲୋକଙ୍କୁ ସଠିକ୍ ଦିଗଦର୍ଶନ ଦେବା ଆବଶ୍ୟକ । ତାଙ୍କର ବହୁ କବିତା ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାମାନଙ୍କରେ ବାହାରିଛି । ଗୋଟିଏ ଗୋଟିଏ କବିତା ପାଇଁ ସେ ତାଙ୍କର ଅନେକ ପାଠକମାନଙ୍କଠାରୁ ଶୁଭେଚ୍ଛା ବାର୍ତ୍ତାମାନ ପାଇଛନ୍ତି । ଅବଶ୍ୟ କେତେକଙ୍କ ଶ୍ୟେନ ଦୃଷ୍ଟିରୁ ସେ ବାଦ୍ ପଡ଼ି ନାହାନ୍ତି । ଓଡ଼ିଆ ସାହିତ୍ୟରେ ଏଇଟା ଅବଶ୍ୟ ଦେଖିବାକୁ ମିଳେ । ଜଣେ ଅଧେ କେହି ଉଠିଗଲେ ତାକୁ ଗୋଟିଏ ସୁସଙ୍ଗଠିତ ଗୋଷ୍ଠୀ ଦବାଇବାକୁ ଲାଗିପଡ଼ନ୍ତି ।

ସେ ଆଜି ଭାରି ବ୍ୟସ୍ତ ହୋଇ ଉଠିଛନ୍ତି । ତାଙ୍କ ପାଦଗୁଡ଼ିକ ଚଂଚଳ ହୋଇ ଉଠୁଥିଲା । ତାଙ୍କୁ ବର୍ତ୍ତମାନ କୁଇମାଇଲ ରାସ୍ତା ଚାଲି ଚାଲି ଯିବାକୁ ପଡ଼ିବ । ଘରେ କେଇଦିନ ହେବ ସାନ ପୁଅଟାର ଦେହ ମୋଟେ ଭଲ ନାହିଁ ।

ଭଲ ଡ଼ାକ୍ତରଟେ ଦେଖାଇବା ଯଦିଓ ତାଙ୍କର ଶକ୍ତିର ବାହାରେ ତଥାପି ସେ ଅବହେଳା କରି ନାହାନ୍ତି । ପିଲାଟା ବୀଣାଙ୍କୁ ହଇରାଣ କରୁଥିବ, ଆଉ ବୀଣା ବ୍ୟସ୍ତ ହୋଇ ତାଙ୍କ ଫେରିବା ବାଟକୁ ଚାହିଁ ଲୁହ ଗଡ଼ାଉଥିବ । ବୀଣା ଆଖିରେ ଲୁହ ଦେଖିଲେ ସୁରେନ୍ଦ୍ର ବାବୁଙ୍କୁ ଘାରି ବାଧେ । ଏତେବେଳେ ତାଙ୍କର ମନେ ପଡ଼େ ବିବାହ ପରଦିନ ଯେଉଁଦିନ ବୀଣାଙ୍କୁ ନେଇ ସେ ଗାଁକୁ ଆସିବେ ସେଇଦିନ ବୀଣାର ବାପା ତାଙ୍କୁ କହୁଥିଲେ, 'ସେ ମୋର ଗୋଟିଏ ବୋଲି ଝିଅ ତା ମନରେ କେବେ ଦୁଃଖ ଦେବନି' । କିନ୍ତୁ ସେକଥା ସେ କଣ ପାଳନ କରି ପାରିଛନ୍ତି ? ବିବାହର ଦୁଇଟା ବର୍ଷ ଭିତରେ ତାଙ୍କୁ ଚାକିରି ହରାଇବାକୁ ପଡ଼ିଲା । ତାପରେ ଦୁଇଟା ଅନ୍ନ ସଂସ୍ଥାନ ପାଇଁ ଅନେକ ଲୋକ ଠାରେ ହାତ ପାତିବାକୁ ହୋଇଛି । ଆଉ ବୀଣା ଉପାସିଆ ହୋଇ ତାଙ୍କର ଫେରିବା ବାଟକୁ ଚାହିଁ ରହିଛି । ଏପରି ଶାସକ ଦଳର ଗୁଣ୍ଡା ଦ୍ୱାରା ବୀଣା ବାରମ୍ବାର ଅତ୍ୟାଚାରିତ ହୋଇଛି । ତଥାପି ଭାଙ୍ଗି ପଡ଼ିବାର ସେ କେବେ ଦେଖି ନାହାନ୍ତି । ବୀଣା ତ ଖାଲି ତାଙ୍କର ସହଧର୍ମିଣୀ ନୁହେ । ତାଙ୍କ କାବ୍ୟ କବିତା ଓ ବୈପ୍ଳବିକ ଚେତନାର ଜାଗ୍ରତ ପ୍ରହରୀ ।

ରାସ୍ତାକଡ଼ର ଏକ ଘଟଣା ଉପରେ ତାଙ୍କର ଦୃଷ୍ଟି ନିବଦ୍ଧ ହୋଇଗଲା । ଦେଖିଲେ କଙ୍କାଳ ସାର ଲଙ୍ଗଳା ପିଲାଟେ ହୋଟେଲ ପାଖ ନର୍ଦ୍ଦମାରୁ ଭାତ ସାଉଣ୍ଟି ଖାଉଛି । ସେ ଆଡ଼କୁ ସେ ଚାହିଁ ପାରୁ ନଥିଲେ । ଆଖିରେ ତାଙ୍କର ଲୁହ ଜକେଇ ଆସିଲା । ସେ ଯୋଉଁ ସମାଜରେ ରହୁଛନ୍ତି ସେଇ ସମାଜରେ ମଣିଷ ପୁଣି··· । ଛଳ ଛଳ ହୋଇ ସେ ପିଲାକୁ ପଚାରିଲେ ତୋ ଘର କୋଉଠି ? ଘର ଆମର ନାହିଁ ବାବୁ ! ଷ୍ଟେସନର ମୁସାଫେରଖାନା ଘରେ ରହୁଥିଲୁ । ମା'କୁ ବେମାରି ହୋଇଥିଲା ଚାରିଦିନ ତଳେ ସେଇଠି ମରିଗଲା । ସେଇଦିନୁ କିଛି ଖାଇନି ବାବୁ ! ସୁରେନ୍ଦ୍ର ବାବୁ ଆଉ ସମ୍ଭାଳି ପାରିଲେନି ପିଲାଟିକୁ କୋଳେଇ ନେଇ ତା ଆଖିର ଲୁହ ପୋଛି ଦେଲେ । ତାଙ୍କୁ ଯେମିତି' ଜଣା ପଡ଼ୁଥିଲା ତାଙ୍କ ବଡ଼ ପୁଅ ଯାହାର ପେଣ୍ଟ ଜାମା ନାହିଁ ବୋଲି ୧୫ଦିନ ହେବ ସ୍କୁଲକୁ ଯାଇନି ସେ ଯେମିତି ତାଙ୍କଠାରେ ଅଳି କରୁଛି ।

—ତୋ ମାକୁ କଣ ହୋଇଥିଲାରେ··· ।

—ମୁଁ କହି ପାରିବିନି ବାବୁ ! କେତେଦିନ ହେବ କିଛି ଖାଇ ନଥିଲା । ଆଉ ସବୁବେଳେ ଖାଲି ପେଟ ପେଟ ବୋଲି ପାଟି କରୁଥିଲା । ଆଉ ଯେଉଁଦିନ ମରିବ ସେ ଦିନ ମୋତେ ଧରି ବହୁତ କାନ୍ଦୁଥିଲା । ମୁଁ ତାକୁ ପଚାରିଲି ତୁ କାନ୍ଦୁଛୁ କାହିଁକି ? ସେ କିନ୍ତୁ କିଛି ନ କହି ଖାଲି କାନ୍ଦୁଥିଲା ।

ସୁରେନ୍ଦ୍ର ବାବୁ ପକେଟରେ ହାତ ପୂରାଇଲେ । ଧାର ଆଣିଥିବା ସେଇ ତିନିଟଙ୍କା, ଏକକାଳେ ଅଟାର ଦାମ୍ । ପିଲାଗୁଡ଼ିକ ଘରେ ଭୀଷଣ ଭୋକେଇବେଣି ।

ତାଙ୍କ ମଧ୍ୟ ଭୀଷଣ ଖେଦ । ଶେଷରେ ସିଦ୍ଧାନ୍ତ କରିନେଲେ ଅଧକିଲେ ଅଟାରେ ଆଜି ଚଳେଇ ନେବେ । ପାଖ ଦୋକାନରୁ କିଛି ମୁଢ଼ି କିଣି ଆଣି ସେ ପିଲାଟିର ହାତରେ ଧରେଇ ଦେଇ କହିଲେ—ଏଇ ରାସ୍ତା ରେ ଗଲେ ସେଇ ମୋଡ଼ ପାଖରେ ତମ ଘର କାଲି ସକାଳେ ଯାଇ ଦେଖାକରିବୁ । ବହୁ କଷ୍ଟରେ ପିଲାଟାକୁ ବିଦାୟ ଦେଇ କିଛି ରାସ୍ତା ଗଲାପରେ ବିଭିନ୍ନ ରଙ୍ଗର ଆଲୁଅ ସାଜସଜ୍ଜା ଆଉ ତୋରଣ ଦେଖି ସେଠାକାର ଜଣେ ଉଦ୍ୟୋକ୍ତାଙ୍କୁ ଡାକି ସେ ପଚାରି ବୁଝିଲେ ଯେ ଆଉ ଅଳ୍ପ ସମୟ ପରେ ମୁଖ୍ୟ ମନ୍ତ୍ରୀ ଆସିବେ । ସରକାରଙ୍କ ତରଫରୁ ଏକ ପଞ୍ଚତାରକା ହୋଟେଲର ଶିଳାନ୍ୟାସ ପାଇଁ । ସୁରେନ୍ଦ୍ର ବାବୁ ଭାବିପାରୁ ନଥିଲେ ମଣିଷ ଯୋଉଠି ଖାଇବାକୁ ନ ପାଇ ପୋକ ମାଛି ପରି ମରୁଛି ସେଇଠି ପୁଣି ପଞ୍ଚତାରକା ହୋଟେଲର ଶିଳାନ୍ୟାସ ଚାଲିଛି… ।

ରଥ ଆସ୍ତେ ଆସ୍ତେ ବଢ଼ି ଚାଲିଛି । ସୁରେନ୍ଦ୍ର ବାବୁ ବ୍ୟସ୍ତ ହୋଇ ଆଗେଇ ଚାଲିଛନ୍ତି । ତାଙ୍କ ଆଖି ଆଗରେ ମାରୁଆଡ଼ି ଦୋକାନ । ସେ ଦୋକାନକୁ ଅଧ-କିଲେ ଅଟା ବଦଳ କରି ପଇସା ବଢ଼ାଇ ଦେଲେ । ଠୁଙ୍ଗାଟି ହାତରେ ଧରି ତରତର ହୋଇ ଦୋକାନରୁ ବାହାରି ଆସିଲେ । ଠୁଙ୍ଗାଟିର କେତୋଟି ଅକ୍ଷର ତାଙ୍କୁ ଝାପ୍ସା ଦେଖାଗଲା । ସେପାଖ ଲାଇଟ ପୋଷ୍ଟ ପାଖକୁ ଯାଇ ଦେଖିଲେ ସେଗୁଡ଼ିକ ତାଙ୍କର ଅକ୍ଷର । ସେ ଆଶ୍ଚର୍ଯ୍ୟ ହୋଇଗଲେ ଏଗୁଡ଼ିକ ମାରୁଆଡ଼ି ଦୋକାନକୁ ଆସିଲା କିପରି । ଭଲକରି ଟିକିଏ ପଢ଼ିନେଲେ । ଏ ଯେ ତାଙ୍କର ଅପ୍ରକାଶିତ ପାଣ୍ଡୁଲିପି, ଆଉ ତାଙ୍କ ଜୀବନର ଶ୍ରେଷ୍ଠ କବିତା 'ମଣିଷ'ରେ ସେଇ ଠୁଙ୍ଗାଟି ତିଆରି ହୋଇଛି । ଯୋଉଁ କବିତା ପାଇଁ ସେ ଅନେକ ପ୍ରଶଂସା ପାଇଛନ୍ତି ସେଇଥିରେ ପୁଣି… । ଆଖି ଆଗରେ ନାଚି ଯାଉଥିଲା କବିତାର ଗୋଟିଏ ପଂକ୍ତି । ସେ ଆଉ ପାରିଲେନି ହାତରୁ ଖସିପଡ଼ିଲା ଠୁଙ୍ଗାଟି ଆଉ ସଡ଼କ ସାରା ବିଛେଇ ହୋଇଗଲା ଅଟାଗୁଡ଼ାକ । ଗୋଟାଇ ଆଣିବାକୁ ଚେଷ୍ଟା କଲେ ମାତ୍ର ପାରିଲେନି । ଟୁକୁରା କାଗଜଗୁଡ଼ିକ ଗୋଟାଇ ଆଣି ଛାତିରେ ଜାକିଧରି ପିଲାଙ୍କ ପରି କାନ୍ଦି ଉଠିଲେ । ତାଙ୍କ ଆଖି ଆଗରେ ବୀଣାର ମୁହଁ ନାଚି ଉଠୁଥିଲା । ସେ କହୁଥିଲେ ବୀଣା ! ତୁମେ ଏ କଣ କଲ ମୋର ସର୍ବଶେଷ ସମ୍ବଳକୁ ତୁମେ ମାରୁଅଡ଼ି ଦୋକାନରେ… । ହଁ ତୁମେ ଠିକ୍ କରିଛ ମୁଁ ତୁମମାନଙ୍କୁ ଅନେକ ଅନାହାର ଅର୍ଦ୍ଧାହାରରେ ଜଳବଲ କରି ମାରୁଛି ।

ଘରେ ପାଦ ଦେଉଁ ଦେଉଁ ବୀଣା ଆଉ ପିଲାମାନଂକର କାନ୍ଦିବା ଶୁଣି ସେ ନିଶ୍ଚିତ ହୋଇଗଲେ ଯେ ସାନ ପିଲାଟା… । ନିଜକୁ ଆଉ ସମ୍ଭାଳି ନପାରି ବାରଣ୍ଡାରେ ବସି ପଡ଼ିଲେ… ।



# ଛ'ହାତି ଶାଢ଼ୀ

**ରମେଶ ବିଶ୍ୱାଳ**

ମହାଜନେ ହସିଥିଲେ ଓ ଉଚ୍ଚରି ଥିଲେ, ହେ-ହେ ମଲିକେ ବୁଝିଲ ନା' ତମ ଟଙ୍କା ୬କୁ ମୋ ଶାଢ଼ୀ। ଚୂନା ନେଇ ପିଠା ୬ ହାତ ଶାଢ଼ୀ, ଖାଣ୍ଟି ଛ' ହାତ। ତମ ରୂପା ଦେହକୁ ମାନିବ ପରା, ତମେ ଭାବୁଥିବ ମଲିକେ ! ଏ ମହାଜନ ତମକୁ ଠକି ଦେଉଛୁ, ହେ-ହେ ଦଶହାତ ଶାଢ଼ୀ ପିନ୍ଧ ଗୁଡ଼େଇ ହେଇ ତମ ଝିଅ ତ ଆଉ ମରହଟି ମାଇପି ସାଜିବନି। କଲେଜ ପଢୁଆ ଝିଅକୁ ଦେଖିଛ ? ତାଙ୍କ ପିନ୍ଧା ଜମା ଆଣ୍ଠୁ ଡେଇଁନି, ହେ-ହେ ତମ ଝିଅ ଛ'ହାତ ଶାଢ଼ୀ ପିନ୍ଧିଲେ ଭଲ ମାନିବ ? ଖାଣ୍ଟି ସୂନା ଖଣ୍ଡେତ। ଫୁଗୁଲା ଦେହ ତା'ର ଚହଟି ଉଠିବ। ତମେ ଅବା ରୂପାକୁ ସାଙ୍ଗରେ ଆଣିଥାନ୍ତ। ମୁଁ ନିଜ ହାତରେ ତାକୁ ଶାଢ଼ୀ ପିନ୍ଧେଇ ଦେଇଥାନ୍ତି। ଗାଁ ଥେଟରର ବଣିଆ ଧଳ ଠାରୁ ସୁନ୍ଦର କରି, ହେ-ହେ

କ୍ଷମା କରିବେ ସୁଧୀ ପାଠକେ ମୁଁ ମହାଜନଙ୍କ କଥା ଆପଣମାନଙ୍କୁ ଶୁଣାଉନି। ରାମଚନ୍ଦ୍ର ମଙ୍ଗରାଜ ବା ରାମ ବିଶୋଇଙ୍କୁ ବଳିଯିବା ମହାଜନ ଅବା ମିଳିବେ କାହୁଁ। ମୁଁ କହୁଛି ସୁରଜିତ ଦାସର କଥା। ଆତ୍ମଗର୍ବୀ ସେଇ ଲୋକଟାର କଥା।

## କଥା ଏକ—

ବାତ୍ୟା କେଉଁଠି ଥିଲା। କେମିତି ଅଣଚିହ୍ନା ପବନକୁ ସାଥି କରି ଖଣ୍ଡ ପ୍ରଳୟ ଘଟାଇଲା। ସ୍ୱଳ ଘରରୁ ଛପର ଉଡ଼ିଗଲା। ରୁଷିଆ ଆମେରିକାର ରକେଟ୍ ସହ ପ୍ରତି ଦ୍ୱନ୍ଦ୍ୱତା କରିବା ପାଇଁ। କାଛୁ ଘର ଭୁଷୁଡ଼ି ପଡ଼ିଲା। ଗୃହ ନିର୍ମାଣ ଯୋଜନାକୁ ସମ୍ମାନ ଦେଇ। କେତେ ଯେ ମଲେ, ତାର ହିସାବ ନାହିଁ। ସଂଖ୍ୟା କମିଲ କହୁଛି। ସୁରଜିତ ସେଉଁଦିନ ଟିଭିରୁ ଜାଣିଲା ଯେ, ଗାଁ ବାତ୍ୟାର କରାଳ ଗ୍ରାସରେ କବଳିତ, ତା ନିଜ ଘରବି। ସେ ଟିକେ ହସିଲା। ଦୁଃଖ କଲା ମଧ୍ୟ। ଅନ୍ୟମାନଙ୍କୁ କହିଲା, ଦଇବ ଦଉଡ଼ି ମଣିଷ ଗାଈ

## କଥା ଦୁଇ—

ବନ୍ୟା ଆସିଲା, ତାର ପ୍ରଳୟଙ୍କରୀ ଜଳରେ ଲୁଚି ଦେଇ ସବୁ କିଛି ଧୋଇ ନେଇ ଏକାକାର କରିଦେଲା। ଶ୍ୟାମଳୀ ରଙ୍ଗସବୁ ଏଥର ଧୋଇହୋଇ ଗଲା ବର୍ଷ ବର୍ଷ ପାଇଁ। ତାର ମନେହେଲା, ଭଲ ହୁଟାଏ ତା ଦାଢ଼ୁଆ କଣ୍ଟାଳିଆ ଜୀବନରେ ଲୁଚି ଦେଲା ସବୁଜ କ୍ଷେତ। ବାପା ତାର ପେଜୁଆ ଆଖିରେ କୁହୁଡି

ଘୋର ଅବସ୍ଥା ମଧ୍ୟରେ ଥାଇ କହୁଥିଲେ—ସବୁ ସମସ୍ୟାରେ ବାପ, ସବୁ ସମାଗମ !

ହସିଲା ସୁରଜିତ । ହିସାବ କଲା ତା ଦରମାର ହାର ଇନକ୍ରିମେଣ୍ଟ କଟିବା ଉପରେ ।

ସୁତରାଂ ବାପାଙ୍କୁ ସାହସ ଦେଇ ଏଇ ମାସ ଦଶମାରେ ସେ ସ୍କୁଟର କିଣି ଦେବ । ଏରିୟର ପଇସାରେ ଘର ଛପର କରିବ । ଓଭର ଟାଇମ୍ ପଇସାରେ ସ୍ତ୍ରୀକୁ ଶାଢ଼ୀ କିଣିଦେବ । କଡ଼୍ କଡ଼୍ ଟଙ୍କା ଗଣିବାରେ ଆନନ୍ଦ ଅଛି । ଆନନ୍ଦ ଅଛି ମାସ ଶେଷରେ ରୋଜଗାର ଟଙ୍କାକୁ ଦରମା ଆକାରରେ ଗଣି ନେବାରେ ତୃପ୍ତିଟାଏ ବି ମିଳେ। ସେ ସମୟରେ ସୁରଜିତ ମାସ ଶେଷ ଦରମାତକ ଗଣିଲା ଏକ ଦୁଇ କରି ଆତ୍ମ ତୃପ୍ତିର ହସଟାଏ ବି ହସିଲା ସେ ।

## ଗଳ୍ପତିନି—

ଟଙ୍କାତକ ପକେଟରେ ଭରି ସେ ବାହାରି ଆସିଲା । ପ୍ରଥମେ ପ୍ରତିଶ୍ରୁତି ପାଳିବାକୁ ଦୁଇବନ୍ଧା ଗୃହିଣୀ ମୁହଁଲାଇଲେ । କେଜିକୁ ୫ ଟ.୨୫ ହିସାବରେ କିଛି ଟଙ୍କା ତା ପକେଟରୁ ପାଞ୍ଚ ଭଳି ଉଡ଼ିଗଲେ । ସେ ଘର ଛପର ବାବଦ ଛଣ ପଛା ୩୫ ଟଙ୍କା କରି ୩୦ ପଣ ଛଣ କ୍ରୟ କଲା । ଛଣ ବାଲାକୁ ୩୫୦ ଟଙ୍କା ଦେଇ ସାରି ଦେଖିଲା ହଜାରେ ଟଙ୍କା ଖର୍ଚ୍ଚ ସରିଛି । ନିଜର ହୋଟେଲ୍ ବାକି ଓ ଅନ୍ୟାନ୍ୟ ଖର୍ଚ୍ଚର ହିସାବ କରି ସେ ହତାଶ ହେଲା ଓ ହତାଶ ପଞ୍ଚାଇଲା ଟଙ୍କା ଗଣ୍ଠିରେ ଟଙ୍କା ଫାଙ୍କୁ – ଏ ଜୀବନ ଦେଖା ଆଉ ନିଜକୁ ।

## ଶେଷଗପ —

ସୁରଚିତା ! ଚିଠି ଲେଖିଥିଲା କଟକରେ ଏଥର ବମ୍ବେବାଲାମାନଙ୍କର ଶାଢ଼ୀର ଫେୟାର··· । ପାରିବ ଭଲ ଦେଖି ଶାଢ଼ୀଟିଏ···ଅସମାପ୍ତ ଥିଲା ସୁରଚିତାର ବାକ୍ୟ । ଅସମର୍ଥ ଥିଲା ସୁରଜିତର ପର୍ସ । ସୁତରାଂ ତାର ମନେ ପଡ଼ିଲା ସେଇ ମହାଜନ ଓ ବ୍ରହ୍ମାଣ୍ଡ ଶାଢ଼ୀର ଗଳ୍ପ । ସେ କ୍ରମଶଃ ଅସହାୟ ହୋଇ ପଡ଼ିଲା ଓ ଅସହାୟତାର ଭବ ଦୀର୍ଘଶ୍ୱାସ ଭିତରେ ମାପି ବସିଥିଲା ଅବା !



# ରଙ୍ଗାୟିତ ଉଲ୍କାର ଉକ୍ତିକଥା

### ଡ଼ାଃ ଉପେନ୍ଦ୍ର ପ୍ରସାଦ ନାୟକ



– ଶୁଭେନ୍ଦୁ ଅଖିରେ ନିଦ ନାହିଁ । ଝିଙ୍କାରୀରୁ ଅକାଶ ପାତାଳ । ସମସ୍ତ ବନ୍ଦ ଶୁଣୁଛି । ଘଡ଼ି ଏଗାରଟାରୁ ହେଲା ଏବେ ଚାରିଟା । ନେପାଳୀ ବାହାଦୁରର ହୁଇସିଲ୍ ଶବ୍ଦ । ସମସ୍ତର ପ୍ରକୃତ ବସ୍ତୁତର ସୂଚନା ଦେଉଥିଲେ ହେଁ ତାହା ଶୁଭେନ୍ଦୁ ମନରେ ସେପରି କିଛି ଭାବାନ୍ତର ସୃଷ୍ଟି କରି ପାରି-ନଥିଲା । ଅତୀତ ଆଉ ବର୍ତ୍ତମାନର ଅନେକ ଘଟଣା ଓ ଦୁର୍ଘଟଣାର ଜୀବନ ସ୍ରୋତ ଶୁଭେନ୍ଦୁ ମନରେ ଭୁଡ଼ି ଆଣି ଜାଲ ସୃଷ୍ଟି କରି ତାକୁ କେମିତି ଏକ ମାୟାର ବଳୟ ଭିତରେ ସତେ ଯେମିତି ଧୁଂଧ ପକାଉ ଥିଲା । ଖୁବ୍ ଅସ୍ୱସ୍ତି ଅନୁଭବ କରୁଥିଲା ଶୁଭେନ୍ଦୁ । କିନ୍ତୁ ସେଥିରୁ ନିସ୍ତାର କାହିଁ ? ବରଂ ଦୁଃଖ ଆଉ ଆନନ୍ଦର ଘନଘଟା କ୍ରମଶଃ କୁହୁଳି କୁହୁଳି ତା ମନ କେନ୍ଦ୍ରରେ ଖୁବ୍ ବେଶୀ କୋହଳ ସୃଷ୍ଟି କରି ଯାଉଥିଲା ।

ତା ସାମ୍ନାରେ କେତୋଟି ସ୍ୱପନାଦର ପାହାଚ । ଦୁଃଖ ଓ ଅନୁଶୋଚନାର ଧୂମାୟିତ ପ୍ରାଚୀର । ଜୀବନ ଯାପନର ଦୁଇଟି ଭିନ୍ନ ରୂପର ଉର୍ଦ୍ଧାୟିତ ଅଗ୍ନିଶିଖା । କେତେବେଳେ ରଂଗନାଦରେ, ବର୍ଣ୍ଣ ବୈଚିତ୍ର୍ୟରେ ଶତରଂଜିତ ତ ଧୂଳି ପରିବେଶରେ କାଳିମାର ଘନଆସ୍ତରଣରେ ରଂଗ ଛଡ଼ା । ଧୂସର ବର୍ଣ୍ଣା ।

ଏ କ'ଣ ପ୍ରତ୍ୟେକ ଜୀବନର ଏକ ନାଟକ ବିଷଖେଳ ? ନା ନା ଏହା ବୋଧହୁଏ କେବଳ ତା ଜୀବନ ନାଟକର କରୁଣତମ ଦୃଶ୍ୟ । ଛନ୍ଦାୟିତ ଜୀବନାର ସୂକ୍ଷ୍ମ ଗଣ୍ଠି ମଧ୍ୟରେ ଅଶାନ୍ତଶାୟୀ ହୋଇପଡ଼ୁଥିଲା ଶୁଭେନ୍ଦୁ ।

– ଜାଲ ଭଳି ଅନ୍ତଃତର ପ୍ରତ୍ୟେକ ଦୃଶ୍ୟ ତା ଆଖି ସାମ୍ନାରେ ଭାସି ଯାଉଥିଲା ।

ତା ପରେ ବର୍ତ୍ତମାନ । ଅତୀତରେ ଗୌରବମୟ ମୁହୂର୍ତ୍ତର ଆନନ୍ଦ ଏବଂ ପୁଣି ତାକୁ ହରେଇବାର ଦୁଃଖ ସହିତ ବର୍ତ୍ତମାନର ମ୍ଳାନ ଧରୁ ମିଶି ଏକାକାର

ହୋଇଯାଉଛି ସତେ ! ଓଡ଼ିଶାର ଋଦ୍ଧ ସଂପନ୍ନ ବାବୁର ଯଦୁ ଚୌଧୁରୀ ପରିମଳ ରାୟଙ୍କର ଏକମାତ୍ର ସନ୍ତାନ ଶୁଭେନ୍ଦୁ । ବାଲ୍ୟରୁ କୈଶୋର, କୈଶୋରରୁ ଯୌବନ ଜୀବନର ଦୁଇଟି ସ୍ତର ଅତି ଅଳ୍ପଅଳରେ ଐଶ୍ୱର୍ଯ୍ୟ ଓ ପ୍ରାଚୁର୍ଯ୍ୟ ଭିତରେ ଅତିବାହିତ ହୋଇଗଲା ଶୁଭେନ୍ଦୁର ।

କୃତିତ୍ୱର ସହ ଏମ୍. କମ୍. ପାସ କରିବା ପରେ 'ଲ' ପଢ଼ିଲା ଶୁଭେନ୍ଦୁ । ଏକମାତ୍ର ସନ୍ତାନ ଭାବରେ ସରକାରୀ ଚାକିରୀ ନ କରିବାକୁ ଚୌଧୁରୀ ଶ୍ରୀଯୁକ୍ତ ରାୟଙ୍କର ବ୍ୟକ୍ତିଗତ ଇଚ୍ଛା । ଏଥିରେ ମଧ୍ୟ ଅନିଚ୍ଛା ନଥିଲା ଶୁଭେନ୍ଦୁର । କିନ୍ତୁ 'ଲ' ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାରିବା ପରେ ଆଇନ ବ୍ୟବସାୟ ନ କରି ଇଣ୍ଡଷ୍ଟ୍ରି କରିବାର ଯୋଜନା କରିଥିଲା ଶୁଭେନ୍ଦୁ । ପୁଅର ବ୍ୟକ୍ତିଗତ ଇଚ୍ଛା ତଥା ତାର ଆଶା ଆକାଂକ୍ଷାକୁ ବିରୋଧ କରିବାକୁ ଉଚିତ୍ ମନେକଲେନି ଶ୍ରୀଯୁକ୍ତ ରାୟ । ବରଂ ଯେପରି ସାହାଯ୍ୟ ସହଯୋଗ କରିବା କଥା କେଉଁଥିରେ ଖିଲାପ କରି ନଥିଲେ, ତା ପାଇଁ । ଯଥା ସମ୍ଭବ ଓଡ଼ିଶା ସରକାରଙ୍କ ଅର୍ଥ ନିଗମରୁ ଋଣର ବ୍ୟବସ୍ଥା ହୋଇଗଲା । ଆରମ୍ଭ ହେଲା ଶୁଭେନ୍ଦୁ ରାୟଙ୍କର ନୂତନ ଶିଳ୍ପ ସମ୍ଭାର ।

'ରାୟ ଏଣ୍ଡ ପାଇକର୍ସ ହ୍ୟୁମ୍ ପାଇପ୍ ଇଣ୍ଡଷ୍ଟ୍ରି' । ବେଶ୍ ନିଷ୍ଠାର ସହ କାର୍ଯ୍ୟ କଲା ଶୁଭେନ୍ଦୁ । କାରଖାନା ପ୍ରତିଷ୍ଠିତ ହେଲା ଇଣ୍ଡଷ୍ଟ୍ରିଆଲ-ଇଷ୍ଟେଟ- ଭୁବନେଶ୍ୱରରେ ।

ଚୌଧୁରୀ ବାବୁଙ୍କ ବାସଭବନ କଟକ ନିମଚଉଡ଼ି ଛକରେ । ପ୍ରତିଦିନ ଶୁଭେନ୍ଦୁ ନିଜ ଗାଡ଼ିରେ ଯିବା ଆସିବା କରେ କଟକରୁ ଭୁବନେଶ୍ୱର । ଭୁବନେଶ୍ୱରରେ ଘରଟାଏ ଭଡ଼ାନେଇ ରହିଯିବାକୁ ଇଚ୍ଛାଥିଲେ ବି ବାପା ମାଆଙ୍କର ଏକଇ ଦୁଲଣା । ସେ ସବୁଦିନେ ଏମିତି ବାହାରେ ରହିଲେ ମା ଶୋଭାମୟୀଙ୍କ ପ୍ରାଣ ଚିତ୍କାର କରି ଉଠିବ ଯେ ?

ସେଦିନ ସଚିବାଳୟରୁ କାର୍ଯ୍ୟସାରି ଭୁବନେଶ୍ୱରରୁ କଟକ ଫେରିବା ବାଟରେ ରମାଦେବୀ ମହିଳା କଲେଜ ସାମ୍ନାରେ ଭୀଷଣ ଲୋକ ଗହଳି ହୋଇ-ଥିବାର ଦୂରରୁ ଲକ୍ଷ୍ୟ କଲା ଶୁଭେନ୍ଦୁ । କୌତୁହଳ ହୋଇ ଗାଡ଼ି ଷ୍ଟାଣ୍ଡ କଲା ସେ । ଘଟଣା ସ୍ଥଳରେ ଦେଖେତ ଗୋଟିଏ ଛାତ୍ର ସଂଗ୍ରାମ । ବ୍ୟାପକ ଛାତ୍ର ଗଣଗୋଳରେ ପୋଲିସର ଲାଠି ମାଡ଼ରେ ଛିଅଛିର ଅବସ୍ଥା ଶୋଚନୀୟ । ସେ ଲୁଆଡ଼େ ନିଜେ ରମାଦେବୀ ମହାବିଦ୍ୟାଳୟର ସାଧାରଣ ସମ୍ପାଦିକା । ଅନ୍ୟ ପାଖରେ ପୋଲିସ କେତେଟା ଟହଲ ମାରୁଛନ୍ତି । ଉତ୍ତେଜନା କିମେଇ ଆସିଥିଲେ ବି ସଂଗ୍ରାମୀ ଛିଅଟିକୁ ଘେରି ବହୁ ଛାତ୍ରୀ ଅଧ୍ୟାପିକା ସମେତ ସ୍ଥାନୀୟ ସାଧାରଣ

ଲୋକ ବ ଚହଲ ସୃଷ୍ଟି କରନ୍ତି । କିଛି ସମୟ ପରେ ଏ.ଂବୁଲାନସ୍ ଆସିଲା । କେତୋଟି ପିଲାଙ୍କ ତତ୍ତ୍ୱାବଧାନରେ ସେ ଝିଅଟିକୁ ହସ୍‌ପିଟାଲ୍ ନିଆଗଲା ।

ଆରେ, ଏ କ'ଣ ? ଆଶ୍ଚର୍ଯ୍ୟ ହେଲା ଶୁଭେନ୍ଦୁ । ଖୁବ୍ ସୁନ୍ଦର ଝିଅଟା ଏ ଟିକିଏ ଦୂରରେ ତା' ଆଡ଼କୁ ଚ୍ହିଁ ଏମିତ ହସୁଛି । ଆଉ ଟିକିଏ ପାଖ ହୋଇଯିବା ପରେ ନମସ୍କାର କଲା ଝିଅଟି — ଶୁଭେନ୍ଦୁ ଭାଇ ନମସ୍କାର ! କିନ୍ତୁ ଶୁଭେନ୍ଦୁ ଚିହ୍ନି ପାରୁନ । ଖୁବ୍ ସୁନ୍ଦର, ଗୌରବର୍ଣ୍ଣା, ଉନ୍ନତ ମୁଖଶ୍ରୀ, କମନୀୟ ଅଙ୍ଗରାଗ । ମାଙ୍କ ତ ପୋଷାକ ପରିପାଟୀ, ସବୁ ଲୁକାଇ, ଅପୂର୍ବ ଲାବଣ୍ୟ ତାଙ୍କୁ ଘେରିଥିବା ଓଠରେ ଲାଗିରହିଛି ସବୁ ହସଧାରେ ।

ଶୁଭେନ୍ଦୁର ବିସ୍ମୟକୁ ବ୍ୟବଚ୍ଛେଦ କରି ଫିକ୍ କିନା ହସିଦେଲା ଝିଅଟି । ନମ୍ର କଣ୍ଠରେ ପଚାରି ଦେଲା—କ'ଣ ଚିହ୍ନି ପାରୁ ନାହାନ୍ତି-ନା ?

ଅପ୍ରସ୍ତୁତ ହୋଇ ପଡ଼ିଲା ଶୁଭେନ୍ଦୁ ।

ଦେଖିଲେ ଦେଖିଲା ଭଳି ମନେ ପଡ଼ୁଛି, ଅଥଚ ଠିକ୍ ଜାଣି ହେଉନି । —ହଁ ନା, ଠିକ୍ ଜାଣିପାରୁନ । ଅଙ୍ଗ ଅଙ୍ଗ ହୋଇ କହିଲା ଶୁଭେନ୍ଦୁ । —ଆପଣ ଦୁଇବର୍ଷ ଆଗରୁ ହେଉନ ଆମ ଘରକୁ ପଢ଼ସା ଓ ଶୋଭା ଅପାଙ୍କ ସଙ୍ଗେ ଯାଇ ନଥିଲେ କି ? ମୁଁ ସେତେବେଳେ ଆଇ.ଏସ୍.ସି ପଢୁଥିଲି ।
ମନେ ପକେଇ ଦେଲାଭଳି କହିଲା ଝିଅଟି । —ମୁଁ ···ଦୁଇବର୍ଷ ଆଗେ··· ଅଥଚ···

ତଥାପି ଶୁଭେନ୍ଦୁ ଠିକ୍ ଜାଣିପାରୁ ନଥିଲା ।

—ଓଃ ହୋଃ···ଆପଣ ତଥାପି ଜାଣିପାରୁ ନାହାନ୍ତି । ବଡ଼ଲୋକମାନେ ବୋଧହୁଏ ଏମିତି ଭୁଲି ଯାଆନ୍ତି । ଆଚ୍ଛା ଠିକ୍ ଅଛି, ଆପଣ ତେବେ ଯାଆନ୍ତୁ । ମୁଁ ଆପଣଙ୍କର ଅନେକ ସମୟ ନଷ୍ଟ କରି ଦେଲିନା ? ···ଆରେ···ନାହିଁ··· ନାହିଁ ···ସମୟ ନଷ୍ଟ କାହିଁକି ହେବ, ବଡଲୋକ କାହାକୁ କହୁଛ ? ଏ ପୃଥିବୀରେ କିଏ ବଡ଼ କିଏ ସାନ ମୁଁ ଏଯାଏ ବି ତେବେ କଳ୍ପନା କରିନ । ଆଚ୍ଛା ତୁମ ନା କ'ଣ କୁହତ ।

—ମୋ ନା ବି ମନେ ନାହିଁ ? ଆପଣଙ୍କ ପକ୍ଷେ ମନେ ନରହିବା ଅତି ସ୍ୱାଭାବିକ । ବୋଇଟିଏ ପରି ଛିଡାହୋଇ ରହିଲା ଶୁଭେନ୍ଦୁ ।

ମନେ କାହିଁକି ରହିଲେ ? ଯାଆନ୍ତୁ; ଘରେ ଶୋଭା ଅପାଙ୍କୁ କହିବେ ତୁମ ଝିଅଟା ସେମିତାକୁ ଦେଖିଥିଲି ।

—ସେମିତା ? ଓଃ ବିଧୁ ମାମୁଙ୍କ ଝିଅ ବୋଧହୁଏ ସେମିତା ନା ? ଏଥର ମନେ ପଡ଼ିଲା ଶୁଭେନ୍ଦୁର ।

ସତରେ ତ ଦୁଇବର୍ଷ ପୂର୍ବେ ଥରେ ତାଙ୍କ ଘରୁ ମା ବାପାଙ୍କ ପାଖରେ ସେ ଯାଇଥିଲ, ପୂର୍ବ‌ପୁଣ ଭୁଲିଯାଇଛୁ ।

ସଧୁ ମାମୁଁ ହେଉଛନ୍ତି ଶୁଭେନ୍ଦୁର କେଉଁ ଦୂର ସମ୍ପର୍କୀୟ ମାମୁଁ ସମ୍ପର୍କରେ ସେତେ ଘନିଷ୍ଠତା ନାହିଁ । ବି.ଜେ.ବି କଲେଜର ଇଂରାଜୀ ଅଧ୍ୟାପକ । ପାର୍ବଦିନ ହେଲା ଏଇଠି ଅଛନ୍ତି । ସ୍ମେମିତା ତାଙ୍କ ମଝିଆଁ ଝିଅ ।

ମୁରୁକି ମୁରୁକି ହସୁଥିଲା ସ୍ମେମିତା ।

—ଭୁଲ ବୁଝିବନି ସ୍ମେମିତା ! ମୁଁ ହଠାତ୍ ଜାଣି ପାରିଲି ନାହିଁ । ଏବେ ମାମୁଁ ମାଇଁ କେମିତି ଅଛନ୍ତି ? କଥା ବଦଳାଇ ପଚାରିଲା ଶୁଭେନ୍ଦୁ ।

—ଆପଣ କ'ଣ ଆମ ଭଲ ମନ୍ଦ ଜାଣିବାକୁ ଚାହାଁନ୍ତି ।

—ମାନେ ?

—କେବେତ ଥରେ ଯାଆନ୍ତି ନାହିଁ । ସେଦିନ ବୋଉ କହୁଥିଲା, ଆପଣ କୁଆଡେ ଭୁବନେଶ୍ୱରରେ କେଉଁଠି ଇଣ୍ଡଷ୍ଟ୍ରି କରିଛନ୍ତି ।

—ହଁ ଠିକ୍ ଜାଣିଛନ୍ତି । ମୁଁ ସମ୍ପ୍ରତି ଏଇଠି ଗୋଟାଏ ହ୍ୟୁମ୍ ପାଇପ୍ କାରଖାନା ଆରମ୍ଭ କରିଛି ।

—କେମିତି ଚାଲିଛି ।

—ବେଶ୍ ଭଲ ।

—ଦେଖିବେ ଚିହ୍ନି ପାରୁ ନାହାନ୍ତି—ଆଉ ପୁଣି ଭଲ ମନ୍ଦ ବୁଝିବେ ବା କେମିତି ? ହସି ହସି ଅଭିଯୋଗ କରି ପକାଇଲା ସ୍ମେମିତା । ସ୍ମେମିତା କଥାକୁ ପ୍ରତିରୋଧ କରି ଆରମ୍ଭ କଲା ଶୁଭେନ୍ଦୁ । ଅଚ୍ଛା ହେଉ, ମୁଁ ତ ଏଠି ରହିଲି, ଏଥର ଦେଖିବୁ ମୁଁ ବହୁଦିନେ ତୁମ ଘରକୁ ଯିବି ।

ସେଦିନ ଫେରି ଯାଇଥିଲା ଶୁଭେନ୍ଦୁ କଟକ । ସ୍ମେମିତାର ଦେଇ ଅଭିମାନଭରା କଥା କେଇପଦରେ କିଣିହୋଇଗଲା ଶୁଭେନ୍ଦୁ । ସ୍ମେମିତାର ମନ-ଭୁଲା ରୂପ ରଙ୍ଗ ଏବଂ ତା'ର ସାମାଜିକତା, ଯୁବତୀ ସୁଲଭ ଚପଳତା, ସହଜ ସ୍ନେହପୂର୍ଣ୍ଣ ମିଳାମିଶା ଶୁଭେନ୍ଦୁର ସରଳ ଯୁବ ପ୍ରାଣକୁ ବିଚଳିତ କରି ପକାଇଲା ।

ତା ପରଦିନ ଠାରୁ ପ୍ରାୟ ଅଧିକାଂଶ ଦିନ ଶୁଭେନ୍ଦୁ ସ୍ମେମିତା ଘରକୁ ଯିବା ଆରମ୍ଭ କରିଦେଇ ଥିଲା । ସ୍ମେମିତା ସହ ଅବାଧ ମିଳାମିଶା । ସ୍ମେମିତାକୁ କଲେଜରୁ ନେଇ ଘରେ ଛାଡ଼ିବା, ହସଖୁସି । ବୁଲା ବୁଲି । ସିନେମା ପାର୍କ ଯିବା ଭିତରେ ଦୁହିଁଙ୍କ ମଧ୍ୟରେ କ୍ରମଶଃ ଭଲ ପାଇବାର ଘନିଷ୍ଠତା ବଳବତ୍ତର ହୋଇ ଉଠିଲା ।

ସ୍ନେହ···ଭଲ ପାଇବା···ପ୍ରେମ···ପ୍ରୀତ···ପ୍ରୀତରୁ···ପ୍ରଣୟ ।

ସ୍ମେମିତାକୁ ବିବାହ କରି ଜୀବନରେ ସୁଖୀହୋଇ ପାରିବ ବୋଲି ସିଦ୍ଧାନ୍ତ କରିନେଲା ଶୁଭେଂଦୁ । ଏ ପ୍ରସ୍ତାବରେ ଯଦିଓ ସ୍ମେମିତାର ବାପ ମା'ଙ୍କର କୌଣସି ଅନିଚ୍ଛା ନଥିଲା—କିନ୍ତୁ ଚୌଧୁରୀ ଶ୍ରୀଯୁକ୍ତ ରାୟ ଓ ଶୋଭାମୟୀ ଦେବୀଙ୍କର ପ୍ରବଳ ଅନିଚ୍ଛା । ତାଙ୍କର ଗୋଟିଏ ପୁଅ । ବହୁ ବଡ଼ ବଡ଼ ଲୋକଙ୍କ ଘରେ ପରିଚୟ ଅଛି । ଭଲ ଘର, ଭଲ ଝିଅଦେଖି ବାହାହା କରିବାର ଅଭିଳାଷ । କିନ୍ତୁ, ଶୁଭେଂଦୁର ଏକାଜିଦ୍ । ପୁଅର ଏତାଦୃଶ ସିଦ୍ଧାନ୍ତରେ ବାଧ୍ୟ ହୋଇ ରାଜିହେବାକୁ ପଡ଼ିଲା ।

ବାହାଘର ସରିଗଲା । ଆଦ୍ୟ ଯୌବନର ପ୍ରଥମ ପର୍ଯ୍ୟାୟରେ ଦୁଇଟି ଜୀବନର ନବଦିଗନ୍ତ ପ୍ରେମର ଦିଗ୍‌ବଳୟ ସ୍ପର୍ଶ କରିବାକୁ ପାଦ ବଢ଼ାଉଥିଲା ।

ସ୍ମେମିତାର ପରୀକ୍ଷା ଫଳ ବାହାରିଲା । ଫାଷ୍ଟ କ୍ଲାସ ଫିଜିକିସ୍ ଅନର୍ସ ପାଇଲା ସେ । ଆନନ୍ଦର ଆତିଶଯ୍ୟରେ ସେଦିନ ଭୁବନେଶ୍ୱରରେ ସ୍ମେମିତାର ବାପାଙ୍କ ଘରେ ଏକ ବଫେଟ ଭୋଜିର ଆୟୋଜନ ହୋଇ ଥିଲା । ଉଭୟଙ୍କର ସାଙ୍ଗସାଥୀମାନେ ନିମନ୍ତ୍ରିତ ହୋଇ ଆସିଥିଲେ । ଶୁଭେଂଦୁର ବନ୍ଧୁ ସୌମେନ୍ଦ୍ର ପତ୍ନୀ ମିନାକ୍ଷୀଙ୍କ ସହ ଆସିଥିଲେ । କଥା ଛଳରେ କହୁ କହୁ ଏମିତ ହସି ହସି କହିଦେଇ ଥିଲା—ଭାଇ ତୋର ତ ଲଭ୍ ମ୍ୟାରେଜ—ଉଭୟ ଯେତେ ପୋଡା ସେତେ । ହାନି ଯେତେ ଲଭ ସେତେ । ଜୀବନ ଯନ୍ତ୍ରର ଗ୍ରନ୍ଥିରେ ଆବିଳତା ନରହିଲେ ହେଲା ! ସୌମେନ୍ଦ୍ରର କଥାରେ ହଠାତ୍ କିଛି ବୁଝି ପାରି ନଥିଲା ଶୁଭେନ୍ଦୁ । ଅନ୍ୟ-ମନସ୍କ ଭାବରେ ଗମ୍ଭୀର ହୋଇ ପଚାରିଥିଲା—ମାନେ ?—ନା ସେ କିଛି ନୁହେଁ ମୁଁ ଏମିତ ଗୋଟାଏ କହିଦେଲିନା । କଥା ବଦଳାଇ ସପ୍ରତିଭ ହୋଇ ଉତ୍ତର ଦେଲା ସୌମେନ୍ଦ୍ର । ଭୋଜି ଶେଷରେ ସମସ୍ତେ ବିଦାୟ ନେଲେ । କିନ୍ତୁ ସୌମେନ୍ଦ୍ରର ସେହି ଆକ୍ଷେପ ମୂଳକ କଥାପଦକ ଶୁଭେନ୍ଦୁ ମନରେ ପ୍ରଥମ ଆଘାତ ତଥା ପ୍ରଥମ ଦାଗ ସୃଷ୍ଟି କରିଥିଲା ।

ତା'ରି ସେ ଉକ୍ତି ଆଜି ଅକ୍ଷରେ ଅକ୍ଷରେ ସତ ହୋଇଗଲା । ଆଉ ଭାବି ପାରୁନଥିଲା ଶୁଭେଂଦୁ ।

ସ୍ମେମିତା ବାଣୀ ବିହାରରେ ଏମ୍ ଏସ୍ ସି ପଢ଼ିଲା । ପଢ଼ାରେ ବ୍ୟାଘାତ ସୃଷ୍ଟି ହେବ ବୋଲି ବାପା ମା'ଙ୍କୁ କହି ଭୁବନେଶ୍ୱରରେ ରହିବାର ସୁବ୍ୟବସ୍ଥା କଲା ଶୁଭେଂଦୁ । ଏମ.ଏସି ରେ ଫାଷ୍ଟ କ୍ଲାସ ଫାଷ୍ଟ ହେଲା ସ୍ମେମିତା । ଇତି ମଧ୍ୟରେ ଦୁହିଙ୍କ ପ୍ରେମ ଓ ପ୍ରଣୟର ସ୍ୱୀକୃତ ସ୍ୱରୂପ ଜନ୍ମ ନେଲା ସନ୍ତାନଟିଏ-ଦେବାଶିଷ୍ । ପୁଅ ହେବାର ୬ ମାସ ପରେ ସ୍ମେମିତା ରିସର୍ଚ୍ଚ ପାଇଁ ଆମେରିକା ଯିବାକୁ ସିଦ୍ଧାନ୍ତ କଲା, ଶୁଭେଂଦୁ ବା ବାଧା ଦିଅନ୍ତା କାହିଁକି ? ପିଲାଟିର ଦାୟିତ୍ୱ ପାଇଁ ଧାଇଟିଏ ନିଯୁକ୍ତ ଦେଲା ଶୁଭେଂଦୁ ।

ସ୍ୱେମିତାର ଭଉଣୀ ଆମେରିକାରେ ଥାଆନ୍ତି । ଭଉଣୀଙ୍କ ପରାମର୍ଶ କ୍ରମେ ସ୍ୱେମିତା ଗଲା ଆମେରିକା ।

ଦୀର୍ଘ ତିନିବର୍ଷ ପରେ ପି ଏଚ୍.ଡି କରି ଫେରିଲା ସ୍ୱେମିତା । ଶୁଭେନ୍ଦୁ ମନରେ ଅମାପ ଆନନ୍ଦ । ସ୍ୱେମିତା ଫେରିଲା । ଏଥର ତାଙ୍କର ସୁଖର ଜୀବନ ବନ୍ଧ ଖୋଲିବ ସ୍ୱଚ୍ଛ ସଲୀଳ । ଫଲ୍‌ଗୁ ପରି ।

କିନ୍ତୁ ଏ କ'ଣ ହେଲା । ସ୍ୱେମିତାଙ୍କର ଅନ୍ୟମନା ଭାବ । କେମିତି ଏକ ପ୍ରଚ୍ଛନ୍ନ ଘୃଣାର ଇଙ୍ଗିତ । କେଇଦିନ ପରେ ସ୍ପଷ୍ଟ ମୁହଁ ଖୋଲି କହିଦେଲା ସ୍ୱେମିତା-ନା, ଏଠି ମୁଁ ଆଉ ଚଳିପାରିବି ନାହିଁ । ମୁଁ ପୁଅକୁ ନେଇ ଆମେରିକା ଚାଲି ଯାଉଛି । ତୁମର ଯଦି ମୋ ସଙ୍ଗେ ଯିବାର ଥାଏ ତେବେ ମୋ ସଙ୍ଗରେ ଚାଲ । ନ ହେଲେ ମୁଁ ଆଉ କ'ଣ ବା କରି ପାରିବି ?

ବିସ୍ମୟରେ ଜଳିଗଲା ଶୁଭେନ୍ଦୁ । ବିସ୍ଫାରିତ ଅପଲକ ନେତ୍ର । ପାଟିରୁ ପ୍ରଥମେ ଭାଷା ବାହାରିଲାନି ତା'ର । ତା'ପରେ କୌଣସି ପ୍ରକାରେ ଧୈର୍ଯ୍ୟ ସମ୍ବରଣ କରି ନମ୍ର ତାର ସହ ଆରମ୍ଭ କଲା ଶୁଭେନ୍ଦୁ—ତୁମେ ଏକ'ଣ କହୁଛ ସ୍ୱେମିତା ? ଏଠି ମୋର ଏକା ବାପ ମା' । ତାଙ୍କର ତ ଆଉ କେହି ନାହିଁ । ମୋର ଏଠି ଇଣ୍ଡଷ୍ଟ୍ରି, ଅଥଚ ତୁମେ...

—ମୋର ଆଉ କିଛି ନିଷ୍ପତ୍ତି ପରିବର୍ତ୍ତନ କରିବାର ନାହିଁ । ତୁମେ ଯଦି ମୋ କଥାରେ ଅସମ୍ମତ ତେବେ ତୁମେ ଥାଅ ମୁଁ କିନ୍ତୁ ଏଠି ଚଳିପାରିବିନି । ମୁଁ ଆସନ୍ତା ସୋମବାର ଆମେରିକା ଫେରିଯିବି ବୋଲି ତୁମକୁ ଜଣାଇ ସାରିଛି ।

ସମସ୍ତଙ୍କୁ ଗୁଡ଼ାଏ ନିର୍ବାକ ଭାବରେ ମୁକ୍ତ ହୋଇ ସରଗୁଡ଼ା ଚାଲିଗଲା ସ୍ୱେମିତା । କାହାର ଆବେଦନରେ ଏ ଖେଳ ? ସତରେ କ'ଣ କେଉଁ ପ୍ରଚଣ୍ଡ ଝଡ ପୁରୁଷର ପ୍ରଚ୍ଛନ୍ନ ଭାବାବେଗ ସ୍ୱେମିତାକୁ ଛଡାଇ ନେଇଥିଲା ଶୁଭେନ୍ଦୁର ବକ୍ଷ ଫଳକରୁ ? ଜୀବନର ଏପରି ଏକ ଦୁର୍ଦ୍ଦିନରେ ଶୁଭେନ୍ଦୁ ସତରେ ଯେମିତି ହ୍ରାସ ନିର୍ବାକ୍ ପାଲଟି ଯାଇଛି । ତା'ପରି ଏକ ସରଳ ନିଷ୍କପଟ ଯୁବକ ପକ୍ଷରେ ଏହା ଏକ ପ୍ରବଳ ଝଞ୍ଜା ନୁହେଁ ତ ଆଉ କ'ଣ ? ଏ ଝଡର ଯନ୍ତ୍ରଣାରୁ ତା'ର ନିଷ୍କୃତି ନାହିଁ କି ପଛକୁ ଫେରିବାର ସମୟ ବି ନାହିଁ ।

ପୁଅଟିକୁ ଗୁଡଯାଇଥିଲା ସ୍ୱେମିତା । କିନ୍ତୁ ନେଇଯାଇଥିଲା ତା' ପାସ୍‌ବୁକ୍‌ର ସମସ୍ତ ଗଚ୍ଛିତ ଟଙ୍କା ଓ ସମସ୍ତ ସ୍ୱର୍ଣ୍ଣ ଅଳଙ୍କାର ।

ପାଖରେ ଶୋଇଛି ଚାରି ବର୍ଷର ପୁଅ ଦେବାଶିଷ୍ । ଦେବାଶିଷ୍ ମୁହଁକୁ କରୁଣ ଭାବରେ ଗୁହି କ'ଣ ଯେମିତି ନିରୀକ୍ଷଣ କରି ପକାଉଥିଲା ଶୁଭେନ୍ଦୁ ।

ଆହାଃ କି ବିଚିତ୍ର ଏ ପୃଥିବୀ ! ପରିବେଶର ଅବର୍ତ୍ତିରେ ମଣିଷ ସାମାନ୍ୟ ଟିକିଏ ସୁଯୋଗ ପାଇଲେ ଏମିତି କ'ଣ ଯେ କୌଣସି ସମୟରେ ତା'ର ଜୀବନ, ତାର ସ୍ନେହ, ପ୍ରେମ ଏବଂ ଭଲ ପାଇବାକୁ ପରିବର୍ତ୍ତନ କରିଦେଇ ପାରେ !

ଷବିବୁଲିଥିଲ ଶୁଭେଂଦୁ ।

ଆଖିର ଲୁହ ଧାରରେ ତା ଅଜାଣତରେ ତକିଆ ଭିଜି ଚାଲିଣି, କାହାକୁ ଏ ଦୁଃଖ ଜଣାଇବ ? କେବଳ ଅଦୃଶ୍ୟ ଶକ୍ତିର ଗତିକୁ ଅପେକ୍ଷା କରି ପରିସ୍ଥିତି ସହ ମୁକାବିଲରେ ବଂଚିରହିବା ବ୍ୟତୀତ ତା' ପାଖରେ କି ଶକ୍ତି ବା ଅଛି ?

କୁଆ କୁକୁଡ଼ାଙ୍କ ଡାକରେ ସକାଳର ନୂପୁର ଧ୍ୱନି ଅନୁଭବ କଲ ଶୁଭେଂଦୁ । ଆଖିରେ ଅନିଦ୍ରା ଜନିତ ଅସମ୍ଭବ ଜ୍ୱଳନ । ଆଖି ମଳି ମଳି ଅସମ୍ଭବ ଅନ୍ୟମନସ୍କତା ଭିତରେ ବିଛଣାରୁ ଉଠି ଆସିଲ ଶୁଭେଂଦୁ । ମୁହଁଟା ଧୋଇ ନେଇ ଦରଜା ଫାଟକ ପାଖରୁ ସମ୍ବାଦ ପତ୍ରଟା ଆଣି ଆଖି ବୁଲାଇଲ ଶୁଭେଂଦୁ । ବିଭିନ୍ନ ଚିନ୍ତା, ସମସ୍ୟା ବା ଘଟଣା ଭିତରେ ମୁଣ୍ଡଟା ସତେ ଅବା ହାଲ୍‌କା ହୋଇ ଯାଇପାରେ । ନାନାଦି ବର୍ଦ୍ଧିତ ସମସ୍ୟା ହୁଏତ ଅନ୍ତର୍ଜ୍ୱଳନକୁ କିଛିଟା ଲିଭେଇ ଦେଇପାରେ ।

ଆରେ ଏ କ'ଣ ? ସମ୍ବାଦ ପତ୍ରର ପ୍ରଥମ ପୃଷ୍ଠାରେ ସ୍ନେମିତାର ଛବି । ଉଦ୍‌ବିଗ୍ନତାର ସହ ପଢ଼ିନେଲ ଶୁଭେଂଦୁ ।

## ମହିଳାଙ୍କ ଆକସ୍ମିକ ବିୟୋଗ—

ଗତ ସୋମବାର ରାତି ୧୦ଟା ସମୟରେ ପୁରୀରୁ ହାବଡ଼ାକୁ ଯାଉଥିବା ଏକ୍‌ସପ୍ରେସ୍‌ର ଏକ ପ୍ରଥମ ଶ୍ରେଣୀ କମ୍ପାର୍ଟମେଣ୍ଟରେ ଏକ ନାରକୀୟ ହତ୍ୟାକାଣ୍ଡ ଘଟିଛି । ପୋଲିସର ତଦନ୍ତ ସମୟକୁ ଜଣେ ଭଦ୍ର ମହିଳାଙ୍କ ମୃତ ଶବ ଏବଂ ତାଙ୍କର ଡାଏରୀଟି ବ୍ୟତୀତ ଆଉ କିଛି ନଥିଲ ବୋଲି ବିଶେଷ ସୂତ୍ରରୁ ପ୍ରକାଶ । ଡାଏରୀରୁ ଜଣାଯାଏ ଯେ ମହିଳାଙ୍କ ନାମ ସ୍ନେମିତା ସାସ୍ତ । ସେ ଭୁବନେଶ୍ୱରରୁ ହାବଡ଼ା ଯାଉଥିଲେ । ପେଟରେ ଛୁରୀ ଭୁସା ହୋଇଥିବାର ଜଣାଯାଇଛି ।

ସମ୍ବାଦଟି ପଢ଼ି ସାରିଲ ବେଳକୁ ଶୁଭେଂଦୁକୁ ମନେ ହେଉଥିଲ ସତେ-ଯେମିତି ପୃଥିବୀଟା ଭୀଷଣ ଭାବରେ ଘୂରିଯାଉଛି । ଆଉ ସେହି ଘୂର୍ଣ୍ଣିବାତ୍ୟାର ଭଉଁରି ଭିତରେ ସେ ବି ଘୂରି ବୁଲୁଛି । ଚାରିଆଡ଼େ ଅନ୍ଧାର । ସେ ଯେମିତି କିଛି ଦେଖି ପାରୁନି । କିଛି ଶୁଣି ପାରୁନି ।

ଧପ୍ କରି ସୋଫା ଉପରେ ପଡ଼ିଗଲ ଶୁଭେଂଦୁ ।

କେତୋଟି ମୁହୂର୍ତ୍ତ ପରେ ଦ୍ୱାର ଆଡ଼େଇ ସ୍ନେମିତା···ସ୍ନେମିତା ଡାକିଘର ଭିତରକୁ ପଶି ଆସିଲେ ସ୍ନେମିତାର ବାପା—ରାଧୁମାମୁଁ––ଇଂରାଜୀ ଅଧ୍ୟାପକ ।

—ଆରେ ଶୁଭେଂଦୁ ! ଏମିତି କ'ଣ ବସିଛ ଯେ ଏଠି···ସ୍ନେମିତା କାହିଁ ? ଶୁଣିଛ କାଲି ସନ୍ଧ୍ୟାରେ ମୁଁ ଚିଠି ପାଇଲି ଯେ ସ୍ନେମିତା ପି.ଏଚ୍.ଡି ପାଇଛି । ଏଁ ତୁମେ ଏ ସମ୍ବାଦରେ ଟିକିଏ ଖୁସି ହେଉନ ? କ'ଣ ହୋଇଛି ତୁମର ? ସ୍ନେମିତା କାହିଁ ?

ରାଧା ମାମୁଁଙ୍କର ଏ କଥା ଗୁଡ଼ାକ ଶୁଭେଂଦୁର କର୍ଣ୍ଣ ଭେଦକରି ପାରୁ ନଥିଲ ସତେ ଯେମିତି !